ଅନଳ ଭୃଙ୍ଗ ପିକ ଜାଳ ଅନଳ ଶ୍ୱାନ ଶେନ ଗୃହପାଶେ
ଆଜ ନଶାରେ ରକ୍ଷଣ ଅଭିସାରେ ନ କଲେ ବନ୍ଧନ ପାଶେ ।୧।

—ଗୀତ—

( ଗଢଶ ଗରେଣ ଗୀୟତେ )

ଅତ୍ୟେତ ମଦନ ବାଧା ଶୁଣି ଗୃହୁକେଶୀ
ଅଶ୍ରୁ ନେତ୍ର-ପଦ୍ମ ମକରନ୍ଦ ବରଷି ॥ ଘୋଷା ॥

ଅଟେ ମେରେ ଢଲ ପ୍ୟାର ବନମାଲି
ଅଟେ ମେରେ ଢଲ ପ୍ୟାର
ଆଖଂମେ ଆଓତ ବାଁଶରୀ ବାଓତ କୃଷ୍ଣ ମେରା ଗଲେ ହାର ।୧।

ଅବ ସବ ଦୂରୁ ଭଇଭୋଗ ଖାନା ପିନା
ଆଓତ ରାତି କୈସନେ କୃଷ୍ଣେ ମିଲନା ॥ ୨ ॥

ଅନ୍ଧାଳକା ପର ବୈଠୀ ରାଧା ମନ ଛନ୍ନ
ଆଓ୍ୱ ହର ବନ୍ଧୁଆ ବାଲକ ସାଥେନ ॥ ୩ ॥

---

( ସାତ )

— କୃଷ୍ଣାଭିସାର ବୋଲି —

( ଭୂପାଳ ବାଣୀରେ )

ପ୍ରଭାନ ଏ କାଳେ ଦେଲେ ପୂର୍ଣ୍ଣମାସୀ
ଅଛିରେ ରଞ୍ଜନେ ଦୂର ପାଶେ ବସି ॥ ୧ ॥

ପ୍ରଭୁ ଶେଷେ କୃଷ୍ଣ ବ୍ରଜେ ପରବେଶ
ଅବଲୋକନେ ରାଧିକା × × ×ଷ ॥ ୨ ॥

ଅଞ୍ଜଳି ବନ୍ଧ ବୃନ୍ଦଙ୍କୁ ନମସ୍କାରେ
ଅବଧି ଗମ୍ୟ କ ପକ୍ଷ ମୂର୍ତ୍ତିରେ ॥ ୩ ॥
ଅଣଜ ଧଞ୍ଜେନ୍ତି ଗୋ ଦୋହନ ସାର
ଆର୍ଯ୍ୟ ମେଳରେ ବଳସ୍ତୁ କଲେ ହର ॥ ୪ ॥
ଅଦ୍ଭୁତ ପ୍ରଳମ୍ବ ଭସ୍ମ ଜାତ ଗୋପେ
ଅନ୍ତ ପ୍ରଳମ୍ବ କର କେ ବୋଲେ ଝାମ୍ପେ ॥ ୫ ॥
ଅଛୁ କଂସ ପେଷି ବ୍ରଜ ନାଶ କର
ଅଟଳେ ବ × × ବୋଲେ ସେ ଖବର ॥ ୬ ॥
ଆଖର ନୃପ ସଧ୍ୱାନ୍ତଂ ନଗ୍ରେ ଦେଇ
ଆଜ ରଜନୀ ବାହାର ନୂହ କେହୁ ॥ ୭ ॥
ଅଭସାର ହେତୁ ପୂର୍ଣ୍ଣମାସୀ ପାଣ୍ଠି
ଆଖିରେ ପ୍ରଳମ୍ବ ଭରେ ଘରେ ଲୁଚି ॥ ୮ ॥
ଶ୍ଳେଷ—
ଅକୂପାର ପର ଆକାଶ ଭୂମିରେ
ଆସି ଶୋଭନ ହୋଇଲ ସେ ତମିରେ ॥ ୯ ॥
ଆଲିଙ୍ଗିତ ହୋଇବାରୁ ମାଳାମ୍ବରେ
ଅଟେ ରେବତୀ ରୁଚିର ଆଡ଼ମ୍ବରେ ॥ ୧୦ ॥
ଅସି ବର୍ଣ୍ଣେ ବ୍ୟାପିଲ୍ଲ କ କାମକଳା
ଅଭସାସି ସୁନ୍ଦରୀ ନୟନ କଳା ॥ ୧୧ ॥
ଅସିତ ଅମ୍ବରେ ସ୍ୱେଦ ବର୍ଣ୍ଣବାଳୀ
ଆଣୀ ଧବେ କସ୍ତୁରୀ ପିଚକା ଖେଳି ॥ ୧୨ ॥
ଅର୍କେ ଅସ୍ତେ ସୁଚା ରତେ କ ପ୍ରଳୟ
ଆମ୍ରେଶ୍ୱର ବନା ଲଭେ ଯେ ପ୍ରଳୟ ॥ ୧୩ ॥
ଅଙ୍ଗ ସଙ୍ଗକୁ ନ ପାଇ ମଧୁପର
ଅଶ୍ରୁ ମକରନ୍ଦ ପାତ କୁସୁମର ॥ ୧୪ ॥

---

୧ । ସଧ୍ୱାନ୍ତ (ପୋଥିପାଠ)

ଆନନ୍ଦ ଦେଖି କୁସୁମ ସୁଷମାକୁ
ଆରତେ କୂଜନ୍ତେ କରେ ବେଦନକୁ ॥ ୧୫ ॥

ଅପଲକ ପଲଙ୍କରେ ବନମାଳୀ
ଆଗତ ପଶ୍ଚିମେ ପୁରନ୍ଦର କାଳ ॥ ୧୬ ॥

ଅର୍କଜା ତଟରେ କଳ୍ପ ପାଦପ କୁଞ୍ଜ
ଆପେ ବୃନ୍ଦା ମଣ୍ଡନରେ ଶୋଭେ ପୁଞ୍ଜ ॥ ୧୭ ॥

ଆଗତ ପଥକୁ ସୁମଧୀର ଧ୍ୟାୟି
ଅଧିକ ଉତ୍କଣ୍ଠିତା ପରାୟେ ହୋଇ ॥ ୧୮ ॥

ଆସି ଏ ସମୟେ ବୃନ୍ଦା ଭେଟି ରାଧା
ଅଭିସାର ବେଶେ ରମା ହୋଇ ଶ୍ରଦ୍ଧା ॥ ୧୯ ॥

ଆଣି ନୀଳୋତ୍ପଳ ମାଳ କଲେ ଦତ୍ତ
ଅଙ୍ଗନା ମଣେ ଅଚ୍ୟୁତ ବାଞ୍ଛିତ ॥ ୨୦ ॥

ଅସିତ କୁମ୍ଭା ଲମ୍ବିତ ପୃଷ୍ଠେ ବେଣୀ
ଅଙ୍କ ଧ୍ୱଜ ହେଲା ପୃଷ୍ଠ ଗୃହ ପାଣି ॥ ୨୧ ॥

ଅଙ୍ଗଦ ବଳୟ ତାଟଙ୍କାଦି ଯେତେ
ଆଭରଣ ଶୋଭା ସର୍ବ ମାରକତେ ॥ ୨୨ ॥

ଅଙ୍ଗେ ଲେପି କସ୍ତୁରୀ ଘୋଳ ଚର୍ଚ୍ଚିତ
ଅବଳା କି କାମକଳାରେ ଭୂଷିତ ॥ ୨୩ ॥

ଅମ୍ବର ନୀଳରେ ଏଥୁ ଅନୁମାନ
ଆଚ୍ଛାଦିତ ବିଦ୍ୟୁତ କି ନୀଳ ଘନ ॥ ୨୪ ॥

ଆଦ୍ୟେ ଅଟଇ ଅନଙ୍ଗ କଳାବନ୍ତ
ଆଜ ଅଧିକେ ଦିଶୟେ କଳାବନ୍ତ ॥ ୨୫ ॥

ଆଳସ୍ୟ ଅଙ୍ଗ ମନ୍ଦ ବିକାର ଜାତ
ଅସେ ଜୃମ୍ଭା କମଳିନୀ ମୁକୁଳିତ ॥ ୨୬ ॥

ଅଚେତ ନିଦ୍ରା ପଞ୍ଚ ଭଗିନୀ ମାତ
ଅଚ୍ଛି ଛନ୍ଦେ ଭୁଲସା ରାଧିକା ବତ ॥ ୨୭ ॥

ଅଟେ ମଧୁ କୃଷ୍ଣ ସପତମୀ ନିଶୀ
ଅଭିସାର କୃଷ୍ଣପକ୍ଷେ ଗୁରୁଶ୍ରେଣୀ ॥ ୨୮ ॥

ଆଣି ମନ୍ତ୍ର ପାଦୁକା ସମର୍ପି ପଦ
ଅଗ୍ରେ ବୃନ୍ଦା ଚଳେ ଘେନି ସଖୀବୃନ୍ଦ ॥ ୨୯ ॥

ଅଳ୍ପହାସ ଦନ୍ତ ରୁଚି କୌମୁଦୀରେ
ଆଲୋକ ପଥରେ ଭେଟି ଅର୍କଜା ତୀରେ ॥ ୩୦ ॥

ଅନ୍ଧକାର ଦୁର୍ଗମେ ଆସିବା କଥା
ଅଚ୍ୟୁତ ଶୁଣି ଆଶ୍ୱାସି ଲଭେ ବ୍ୟଥା ॥ ୩୧ ॥

ଆଘ୍ରାଣ ଶିର ଚୁମ୍ବେ ରତ ମମତା
ଅଙ୍କେ ହରଷ ବା ହରେ ସେ କାମତା ॥ ୩୨ ॥

ଅକ୍ଷି ଶେଷେ ଅବଲୋକେ ସୁକୁମାରୀ
ଅଞ୍ଜନ ଲଞ୍ଜି କୃତ କ ମାର ମାର ॥ ୩୩ ॥

ଏତ ଘେଗ କଳନା ତା ନୁହଇ ଆନେ
ଆଲିଙ୍ଗନ ଦୁର୍ବୃଧ ଜଳ ସବଧାନେ ॥ ୩୪ ॥

— ଶ୍ଳୋକ —

ଅଙ୍ଗେ କୃତା ପ୍ରଣୟିନୋ ମୃଗ ଶାବକାକ୍ଷୀ
ଗାତେ ହମେଣ ହଣତ ହନତାନ୍ତ ଗତାହ୍ୱ
ଗାଢୋପଗୂହନ ବଂଶ ନରନ୍ତରଂ ଯତ୍ର
ସଂଶ୍ଳେଷମାତ୍ମହରହ ଗୁରୁଜନାଭିଧାନମ୍ ॥ ୧ ॥

ଉତ୍ପ୍ରେକ୍ଷା —

ଅରୁଣ ଆକାର କଳେଲସ୍ତୁ ଶେଯ
ଅସିତ ପୀତ ଦମ୍ପତି ରୁପ ତେଜ ॥ ୩୫ ॥

ଆଲମ୍ବ ବଦ ସ୍ୱରତ ଆରମ୍ଭରେ
ଅଦ୍ଭୁତ ଇନ୍ଦ୍ରଧନୁ ବନାମ୍ବରେ ॥ ୩୬ ॥

ଅମ୍ଭୋଜନମା ସହଜେ ତରୁ କାମିନୀ
ଅଳ କୂଜନ କି ସେ ନୂପୁର ଧ୍ୱନି ॥ ୩୭ ॥
ଅଙ୍ଗନା ମଧ୍ୟ ବେଷ୍ଟରେ ସଲଜ୍ଜରେ
ଅନାସ୍ୱାଦେ ଚୁମ୍ବେ ଅଧର ଗୋଜନରେ ॥ ୩୮ ॥
ଅଚଳୁ ମିଳ ଅନ୍ତରେ ଚେକ କୃଷ୍ଣ
ଆଗତ ବାର୍ତ୍ତାରେ ସେ ସେ ସଖୀପୁଞ୍ଜ ॥ ୩୯ ॥

— ଗୀତ —

( ଧନାଶ୍ରୀ ରାଗେଣ ଗୀୟତେ )

ଆସନ କଳ୍ପ ପାଦପ ମୂଳେ ରାଧା ହରି
ଆଳ ନେତ୍ର ପ୍ରିୟା ମୁଖ କମଳେ ବନ୍ଧରି । ଘୋଷା ॥
ଅମୃତ ଲାବଣ୍ୟ କୃଷ୍ଣଚନ୍ଦ୍ରର କଣୋର
ଅଶନେ ନେତ୍ର ଚକୋର ସକଳ ପାଶୋର ॥ ୧ ॥

---

( ଆଠ )

## — ଗୋପୀ ସଙ୍ଗ ବୋଲି —

( ଭୂପାଳ ବାଣୀରେ )

ଆଳ ଚଞ୍ଚଳ ସେ ମଞ୍ଜରୀ ବାର
ଅରଣ୍ୟ ଦ୍ୱାଦଶ ଦେଖ ପଞ୍ଚୁଆର ॥ ୧ ॥
ଆପେ ବୃନ୍ଦା ନିଜ ଗଣ ଘେନ ସେବ
ଅଟନ୍ତି ମୂଳ ପ୍ରକୃତି ରାଧା ଦେବୀ ॥ ୨ ॥
ଅସିତ ଉତ୍ଫୁଲ୍ଲ ଗନ୍ଧ ମନ୍ଦ ବାତ
ଆସେ କାମ ଗୃପ୍ତ କି ଆଶୁଗ ବ୍ରାତ ॥ ୩ ॥

ଅମ୍ବୁଜାକ୍ଷ ଅର୍କଜାର ଶୀତ କରେ
ଆସି ନମସ୍କାର ଦମ୍ପତିରେ କରେ ॥ ୪ ॥
ଅନେକ ତୁଳା ଦଉଡ଼ ଚନ୍ଦ୍ରଦୀପ
ଆଲୋକରେ ନନ୍ଦା କରେ ନିଶାଧିପ ॥ ୫ ॥
ଅଗୁରୁ ଧୂପ ଚନ୍ଦନ ପୁଷ୍ପମାଳ
ଅମ୍ବର କର୍ପୂର ରଜ ଯେ ତାମ୍ବୁଳ ॥ ୬ ॥
ଅରଣ୍ୟ ଦେବୀ ସମସ୍ତ ନିଯୋଜଇ
ଆଦ୍ୟରୁ ସମ୍ଭୃତ ରସକେଳି ପାଇଁ ॥ ୭ ॥
ଅରଣ୍ୟ ପକ୍ଷୀ ମୃଗାଦି ନିଦ୍ରା ତେଜି
ଅକ୍ଷି ନିଶ୍ଚଳେ ଦେଖନ୍ତି ଶୋଭାସଜ ॥ ୮ ॥
ଆନନ୍ଦାଶ୍ରୁ ମଧୁଧାର ତରୁ ସ୍ରବେ
ଅମୂଲ୍ୟ ପୁଷ୍ପ ପଲ୍ଲବେ ଲତା ସେବେ ॥ ୯ ॥
ଆମ୍ର ମୁକୁଳ ଭ୍ରମର ଖାଦ ଟଳେ
ଅଶ୍ୱଭୁକ ନାଚେ ପିକ ଗୀତ ତାଳେ ॥ ୧୦ ॥
ଅନେକ ଗୋପୀ ଲୀଳା କମଳ ଧରି
ଆନନ୍ଦେ ଭ୍ରମନ୍ତେ ଅଳି ନାଦ କରି ॥ ୧୧ ॥

ଛଳ—
ଆଗରେ ବସି ଏ ଭାଳେ ଶୁକ ଛଳେ
ଅନଙ୍ଗ ବିଚିତ୍ର କର୍ମ ଦେଖି ଭୋଳେ ॥ ୧୨ ॥
ଅଣି କରି ଭ୍ରମାଉଂଛୁ ନିଜ ଶର
ଅବଳା ପାଣିରେ ହୋଇ ଖଷଚର ॥ ୧୩ ॥
ଅଳି କୂଜନ ଛଳ ଗର୍ଜନ କି ସେ
ଅରଣ ପଣ ସମସ୍ତେ ପୀତବାସେ ॥ ୧୪ ॥

ଛଳ ଶ୍ଳେଷ—
ଅବକାଶ ଜାଣି ଭାଷ ଶାରିକାର
ଆଜ କୃଷ୍ଣଚନ୍ଦ୍ର ଚନ୍ଦ୍ର ଅଧିକାର ॥ ୧୫ ॥

ଅଧିକ ଚନ୍ଦ୍ର ଗୁଣନ୍ତୁ ଜାଣିମାର
ଆଚରେ ମିତ୍ର ଉତ୍ସବ ଜାଣି ମାର ॥ ୧୬ ॥

ଅନୁରାଧା ସ୍ୱଧା ଜ୍ୟେଷ୍ଠା ଧନିଷ୍ଠାନ୍ତ
ଅଛନ୍ତି ବଚନା ବଶାଖା ପ୍ରିୟବାଣୀ ॥ ୧୭ ॥

ଅମୃତ କର ଜନ ଏକେକ ଯୋଗ
ଆଶ୍ଚର୍ଯ୍ୟ ଏକା ରାଧ କ୍ଳେଶ ଉଦ୍ବେଗ ॥ ୧୮ ॥

ଅନନ୍ତ ଭୁଜେ ସର୍ବଦା ପୂର୍ଣ୍ଣତମ
ଅମ୍ଭୋଜନୀ ବରବର୍ଣ୍ଣୀ କାରେ କ୍ଷମ ॥ ୧୯ ॥

ଅଙ୍ଗସ୍ଥାନ ଜନରେ ରୁଚିରତର
ଅଧିକେ କୁଚ ଶଙ୍କର ପ୍ରିୟ କର ॥ ୨୦ ॥

ଅଛନ୍ତି ନଶାବରଜନମାନେ ସେବ
ଅତି ସ୍ଫୁଟ କୁମୁଦ ହାସରେ ଭୁବ ॥ ୨୧ ॥

ଆଲୋକ ଚନ୍ଦ୍ର ଉଦ୍ଧଆ କରଣ ଏ
ଅନ୍ଧାର ରଜନୀ ନିଜେ ଘୁଞ୍ଚିଯାଏ ॥ ୨୨ ॥

ଅନଙ୍ଗ ସୁହୃଦ ଘଣ କଲା ଦୂର
ଅଭିମାନେ ନ ଆସଇଁ ଭ୍ରମ କର ॥ ୨୩ ॥

ଅତ୍ୟୁଚ ରାଧିକା ଶୁଣି ହାସମୁଖ
ଅପାଙ୍ଗେ ଚାହିଁ ଉଲ୍ଲସୁ ଜାତ ସୁଖ ॥ ୨୪ ॥

ଅଛନ୍ତି ଦମ୍ପତି ମଣି ସିଂହାସନେ
ଆଳି ଭାଷେ ବନ୍ଦମୁଖ ପରସନେ ॥ ୨୫ ॥

ଆଶ୍ରେରୀ ସେଉଁ ଚନ୍ଦ୍ରମା କୁମୁଦିନୀ
ଆଜ ଅମ୍ଭୋଜନୀ ଭେଟନ୍ତେ ପ୍ରମୋଦିନୀ ॥ ୨୬ ॥

ଆନ କେ ଉତ୍ତର କଲା ଏଥନ୍ତରେ
ଅନୋପମ ମକରନ୍ଦ ମାଳତିରେ ॥ ୨୭ ॥

---

୧। ଲୁଆସର (ପୋଷପାଠ)

ଅଳି ଯେ କାସଙ୍କି ସଙ୍ଗୀ ଆସି ରମେ
ଅତ୍ୟାଜ୍ୟ ପ୍ରେଣିକ ପବ ମନୋରମେ ॥ ୨୮ ॥
ଆନ ବୋଲେ ଗୁଣଯୋଗ୍ୟ ଗୁଣିକରେ
ଅଗୁଣି ବଜ୍ର ବୈହାନ୍ତ ସମକରେ ॥ ୨୯ ॥
ଆମ୍ର ମୁକୁଳରେ ରସେ ପିକଦ୍ୱିଜ
ଅନ୍ତକେ ରହ୍ମ ନରମେ ଭରଦ୍ୱାଜ ॥ ୩୦ ॥
ଆଳିଙ୍କ ବଚ ଇଙ୍ଗିତ ବୃନ୍ଦା ଶୁଣି
ଆଲାପ ଉଭୟ ସମାଧାନ ପୁଣି ॥ ୩୧ ॥
ଅମୃତ ସ୍ୱାଦୁ ଯାବତ ଜଣା ନୋହେ
ଅଙ୍ଗନରେ ତାବତ ରସଭ ସ୍ନେହେ ॥ ୩୨ ॥
ଅମ୍ବର ରୂପ ସାମ୍ୟରୁ ମାଳ ପ୍ରୀତ
ଅମ୍ବରତ ଅଙ୍ଗେ କେନ ଆଲିଙ୍ଗିତ ॥ ୩୩ ॥
ଅନୁରାଗୀ ମଧ୍ୟେ ସାର ଏ ଦମ୍ପତି
ଅମର ପାଦପ ମୂଳେ ଯାଇ ସ୍ଥିତି ॥ ୩୪ ॥
ଆଦର ଏ ଚନ୍ଦ୍ରଦ୍ରୁମେ ନୋହେ ତାର
ଆନନ୍ଦ ଶୁଣି ରାଧିକା ଅଚ୍ୟୁତର ॥ ୩୫ ॥
ଅନାଅନ ନେତ୍ରକୋଣେ ପରସ୍ପର
ଅପହୃତ ଧୈର୍ଯ୍ୟ ଧନେ ତତପର ॥୩୬॥

—ଗୀତ—

( ବସନ୍ତ ରାଗେଣ ଗୀୟତେ )

ଅଚ୍ୟୁତ ଏ କଲେ ଯେକ ସେ ରାସ ରଙ୍ଗିଣୀ
ଆସି ରଙ୍ଗସ୍ଥଳେ ବଜେ କ ସେ ତରଙ୍ଗିଣୀ ଯେ ॥ ୧ ॥
ଅମ୍ବୁଜ ଚରଣରେ ଦୋଇଛି ରାଗିଣୀ
ଅଧିକ ଶ୍ୟାମ ରସରେ ସାଧାନୁବର୍ତ୍ତିଣୀ ଯେ ॥ ୨ ॥

( ଝିଅ )

— କୃଷ୍ଣ ରାସ ବୋଲି —

— ଉଦ୍ଧବ ଗୀତା —

( କଂସ ସଂହାର ହେବ ମୁରାରି ଉଦ୍ଧବ ଗଲେ ପାଶ ଏ ବାଣୀରେ )

ଉଦ୍ଦ୍ୟୋତ ରସେ ଆପଣେ ରସେ କରନ୍ତା ରତ୍ନ ପ୍ରାସ୍ୱେକ
ଆଣ୍ଣିଗ ଯୋଗ ଗୁଳଇ ବେଗ ନଦ୍ଭେ କଳା କଳାନ୍ଦକ ॥ ୧ ॥
ଅଟେ କାମିନୀ ସଭ୍ରତୋମିନୀ ମଣ୍ଡଳରେ ସେ ଧ୍ୟାପେ କ
ଆନନ୍ଦ ଶିଖୀ ଚୂଳକୁ ଦେଖି ଚୋଷେ ଗୋପୀକା ଗୃହଙ୍କ ॥ ୨ ॥
ଆନଙ୍ଗ ନାଦ ଧ୍ୱନ ଅମୃତ ନୂପୁର ଉଠଇ ଭେଳ
ଆଲୋକ ମୋତି ହାର ଚଳନ୍ତ ପନ୍ତି ପଣ୍ଡକ ବଳାକ ॥ ୩ ॥
ଅଙ୍ଗ ସରସେ ସ୍ୱେଦ ବରଷେ ହଂସ ମାଳତୀ ଚନ୍ଦ୍ରକ
ଆନନ୍ଦ ନଦୀ ଚଳନେ ସ୍ତବ୍ଧ ମକର କୁଣ୍ଡଳ ଟେକ ॥ ୪ ॥
ଆଲୋକ ଘନ କେଶୀ ଯତନ କ ଶିଖୀ ନୃତ୍ୟ ରଚକ
ଆପଣା ନାସି ମଣ୍ଡଳୀ କରି ଟେକ ଚୂଳ ଶିଖଣ୍ଡକ ॥ ୫ ॥
ଅନଙ୍ଗେ ସ୍ତୁତ୍ତ ଚଂମାଳ ଚନ୍ଦ୍ର ଚଳବା ଶୋଭା ଧ୍ୟାପକ
ଆଦୃତ ରମା ଏ ମନୋରମା ଖଦ୍ୟୋତ ଗ୍ରାତ ବେଷ୍ଟକ ॥ ୬ ॥
ଅମୂଲ୍ୟ ମୋତି ନାକେ ଚଳନ୍ତି ଚନ୍ଦ୍ର କମ୍ପାଉଛି ବକ
ଆକାଂକ୍ଷା ମତ୍ତ ଭଜ ଭ୍ରମନ ଗତ ଉଦୟ ତାନ ଅନେକ ॥ ୭ ॥

—ଗୀତ—

( ଶ୍ରୀ ଗୁରେଣ ଗୀୟତେ )

ଅଙ୍ଗର ତବ ହୋଇ ମରନ୍ଦ ସ୍ୱେକ ହର
ଅନେକ କମଳ ଯେ ଶାମ୍ଭରେଖ ବହର ॥ ଘୋଷା ॥

୧ । ଅନନ୍ତ (ଘୋଷପାଠ)

ଅଚ୍ୟୁତ ସେ ଦକ୍ଷିଣ ନାୟକ
ଆନନ୍ଦ ହୃଦେ ସକଳେ ସେବକ । କଣ୍ଠରେ ମାଇ ॥ ୧ ॥

---

( ଦଶ )

## — ଗୋପୀ ରାସ ବୋଲି —

( କଂସ ସହାର ବାଣୀରେ )

ଆନନ୍ଦ ଚନ୍ଦ୍ର ଉଦୟୀ ଚନ୍ଦ୍ର ଉଦୟ ସଦୃଶ ରାଜେ
ଭ୍ରମର ପ୍ରିୟ ଗୀତ ଉଦୟ ଭୃଙ୍ଗ ରବ ସ୍ୱର ବାଜେ ॥ ୧ ॥
ଅବଲାକୁଳ ତାଳ ମଣ୍ଡଳ ବଲ୍ଲକୀ ସ୍ୱର ଉଦୟ
ଅଚ୍ୟୁତ ଅନ୍ତ ମଧ୍ୟରେ ନୃତ୍ୟ କର ଗୋ ରାସ ହୃଦୟ ॥ ୨ ॥
ଅଙ୍ଗନା ମଧ୍ୟ ରସେ ପ୍ରବିଷ୍ଟ ସଙ୍ଗତେ ବାଜେ କିଙ୍କିଣୀ
ଅପାଙ୍ଗ ଦୃଷ୍ଟି ହାସ ଜନ୍ମାଇ କୃଷ୍ଣ ମାନସକୁ କିଣି ॥ ୩ ॥
ଆରମ୍ଭି ନାଟ ନାଟକ ବାଟ ସ୍ୱଦେଶୁଁ ସବେ ରସେ
ଅଚ୍ୟୁତ ଗୀତେ ଭଜେ ସଙ୍ଗୀତେ ହସ୍ତକ ହସ୍ତ ସାରସେ ॥ ୪ ॥
ଆପେ ଗାନ୍ଧର୍ବ୍ବ କା ସେତୁ ଦେଖ ଗାନ୍ଧର୍ବୀ ରସରେ ଭସେ
ଅନ୍ତ ସଙ୍ଗୀତ ସାତ୍ୱିକୀ ମତ ହର୍ଷିତ ହୃଦୟ ତୋଷେ ॥ ୫ ॥
ଅଙ୍ଗ ଭଙ୍ଗୀରେ ଗତାଗତରେ ତାଳମାନଙ୍କୁ ବଞ୍ଚାଇ
ଅନିମିଷରେ ଉପମା ସାର କୃଷ୍ଣ ନୟନେ ସଞ୍ଚାଇ ॥ ୬ ॥
ଅନ୍ତଃପାତନ ସରସ ଧ୍ୟାନ ଅନଙ୍ଗ କୃତ ପରାସ୍ତେ
ଅର୍ଦ୍ଧ ମୂର୍ଚ୍ଛନ ହେମ ମଞ୍ଜୁଳ କ୍ଷଣକେ ଯାତେ ଫେରାଏ ॥ ୭ ॥
ଅନୁଜ୍ଞା ଦେଇ ଛନ୍ଦ ନଚାଇ ସଙ୍କେତ ଅମ୍ଭୋଜମୀନ
ଅକ୍ଷି ପଦ୍ମର ଆନନ୍ଦ କର ତଳେ ଆନ ଲୀଳା ଭଙ୍ଗୀ ॥ ୮ ॥

ଅଧିକ ବଳେ  ନିତମ୍ବ ଲେଲେ  କିଙ୍କିଣୀ ବାଦ୍ୟରୁ ମଣି
ଅଟ୍ଟ କି ପୃଷ୍ଠ-  ଷାଇତ ଗୃଷ୍ଠ  ନାଟେ ବେଣୀ ନାସାମଣି  । ୯ ॥
ଅଚ୍ୟୁତ ଏକ  ନାଶ ଅନେକ  ମଧ୍ୟେ ସ୍ୱରୂପ ସମାନ
ଆରମ୍ଭି ଲାସ୍ୟ  ଅତି ଉଲ୍ଲାସ  ଗତ ତାଳ ସନ୍ଧାନ  ॥ ୧୦ ॥
ଆଲମ୍ବ ବେଣୀ  ପୃଷ୍ଠରେ ପୁଣି  ବନ୍ଧ ଗଣ୍ଡରେ ଖେଳଇ
ଅଂଶୁମତର  ହେମ ପଟର  ଅଗ୍ରୁ ଶ୍ରେଣୀ ଖେଳଇ  ॥ ୧୧ ।
ଅନଙ୍ଗ ରଥ  ଙ୍କ ମନୋରଥ  ମଣ୍ଡା ଧ୍ୱଜରେ ସାଜଇ
ଅସି କି ଧର  ସାଜେ କି ଫର  ବେଣୀ ଚରମ ଗଜଇ  ॥ ୧୨ ॥
ଅତସୀ ଧନୁ  ଭ୍ରୂରୁ ଅତନୁ  ଅଞ୍ଜନ ଗୁଣ ଅଳରେ
ଅପାଙ୍ଗ ବାଣ  ଆମଞ୍ଜ ଠାଣ  ହନେ ତରୁଣ କୁଳରେ  ॥ ୧୩ ।
ଅର୍ଜୁନ ସବ୍ୟ-  ସାଚୀର ଦିବ୍ୟ  ଟଦ ଜାମ କାମନାରେ
ଅଦ୍ଭୁତ ବାମ  ଦକ୍ଷିଣ ବାମ-  ନେତୀ ଗୃଷ୍ଟଁ ପ୍ରସନାରେ  ॥ ୧୪ ॥
ଆସ୍ୟ ଚନ୍ଦ୍ରମା  ହଲାଇ ଗମ୍ୟାଁ  ହସ୍ତ କି କର ଯାଉଛି
ଅମୃତ କର  କାମ ବକାର  ବଳେ କି କର୍ମ ପାଉଛି  । ୧୫ ॥
ଅବଳା ନାସା  ବେଶର ଭୂଷା  ନଥ ସନ୍ତ୍ୱତେ ନାଚୁଛି
ଅମୃତ ଧାମେ  ଗୋତ୍ୱଣୀ ପ୍ରେମେ  ରତ୍ତି ଜଲଟ ରଞ୍ଜୁଛି  । ୧୬ ।
ଅଧିକେ ବାଳୀ  ଝଲକା ବାଳ  ତାଟଙ୍କ ଟୁର୍ମି ନାଚନ୍ତି
ଅନଙ୍ଗ ପାଶ  ବନ୍ଦୀ ଆବାସ  ପଳାପୁନ କି ପାଞ୍ଚନ୍ତି  । ୧୭ ।
ଅମର ଧର  କୁଚ ସୁନ୍ଦର  ଉପରେ ହାର ଖେଳୁଛି
ଆସି ବକ୍ଷୁର  ଚରଣ ମାର-  ଧାର ତରଙ୍ଗ ମିଳୁଛି  ॥ ୧୮ ॥
ଅଙ୍ଘ୍ରି ନୂପୁର  ହୋଇ ମୁଖର  କାମ ଡେଙ୍ଗୁରା ବାଜୁଛି
ଅଙ୍ଗୁଳି ହସ୍ତ  କରେ ପ୍ରଶସ୍ତ  କବା ଯୁବାଙ୍କୁ ଚୟୁଛି  ॥ ୧୯ ॥
ଅତନୁ ରସ  ବୃଦ୍ଧି ସରସ  ସଙ୍ଗତ ବଢ଼ି ଯାଉଛି
ଅବଳା ଲାସ୍ୟେ  ଗତି ବିଳାସେ  ଭଙ୍ଗିମା ଶୋଭା ପାଉଛି  ॥ ୨୦ ॥
ଅଳପ ହାସେ  ଦନ୍ତ ପ୍ରକାଶେ  ପୀୟୂଷ ଧାର ବହଇ
ଅଧର କୋଷ  କି ଚନ୍ଦ୍ରହାସ  ମାର ମାରଣେ କାଢଇ  ॥ ୨୧ ॥

ଆଲୋକ ଚନ୍ଦ୍ର   ଉଦଗ୍ରା ଚନ୍ଦ୍ର   ମୁଖରେ ଆସି ପଡ଼ଇ
ଅନ୍ଧକାରିତ   ବଧୂ କୁହରିତ   ଉଜ୍ଜ୍ୱଳ ଜଣି ଲେଉଡ଼ଇ   ।। ୨୨ ।।
" ନମ୍ର ଶ୍ରମ   ସ୍ୱେଦ ଜନମ   ଏହା ଉପମା ସ୍ଫୁରଇ
ଅ-ଙ୍ଗ ପାଣି   ନଯାଇ ଆଣି   ମାରେ ପିଚକା ମାରଇ   ।। ୨୩ ।।
ଆନନ ସ୍ୱେଦ   ବଧମରନ୍ଦ   ଅରବିନ୍ଦରୁ ଚଳଇ
ଅଧିକ ଶ୍ୱାସ   ନାସିକା ବଂଶ   ଖାଟକ ସ୍ୱୋଭ ବୋଲଇ   ।। ୨୪ ।।

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଅଚଳା କୁଚ ମଣ୍ଡଳ   କମ୍ପିତ ପ୍ରହାର ତଳେ
ନଟମ୍ବ ବଳ୍କିଆ ବାଜେ   କିରଜେ
ଅଙ୍ଗଶପ୍ସ ରାଗ ଜାତ   କଣ୍ଠେ ଅଧରେ ବ୍ୟକତ
କାନ୍ତ ମନସିଜ ନାଟ ସଭଜେ । ଘୋଷା ।
କଂଥରେ ରମା,
ଅଟେ ଯେ ତ୍ରିପୁ କୋଦଣ୍ଡ   ସୁବଧାସ ଭୁସଦଣ୍ଡ
ବେଣୀ ନାଟକୁ କଙ୍କିଣୀ ବାଜେ । ୧ ।।

---

( ଏଗାର )

— ଯୁଗଳ ରାସ ବୋଲି —

( କଂସ ସଂହାର ବାଣୀରେ )

ଅଚ୍ୟୁତ ନାଷ୍ଟ   ମଣ୍ଡଳୀ କରି   ଭ୍ରମି କରନ୍ତ ନର୍ତ୍ତନ
[illegible]   ଇଚ୍ଛା କାମର   ବୁଲଇ କାମୀ ପତନ   ।। ୧ ।।
[illegible]   ରସନା ସାର   ମାରକତ ପାପଦଣ୍ଡ
ଅସି ମସଣ-   [illegible] ମିଳ   ଭ୍ରମିବା ଶୋଭାକୁ ଦଣ୍ଡି   । ୨ ।।

ଅନ୍ତ ହଂସକ  ନାଦ ବ୍ୟାପକ  ଲେଖୁଛ ଓଷ୍ଠ ପଦଲେ
ଅଞ୍ଚଳ ଉଡ଼ୁ  ଯିବାକୁ ଉଡ଼ି  ଚକ୍ଷେ କମ୍ପଇ ଝଟପଟେ ॥ ୩ ॥

ଆଣ୍ଠୁରେ ହସ୍ତ  କଟପୋଣ୍ଡି ନ୍ୟସ୍ତ  ନୃତ୍ୟେ ନିତମ୍ବ କମ୍ପାଇ
ଆଜ ନ ରତ  ଜଲଟେ ପ୍ରୀତି  ଶିଖେ ଆଚରିବା ପାଇଁ ॥ ୪ ॥

ଅଚ୍ୟୁତ ସୁଧା  ନୃତ୍ୟେ ଶରଧା  ଛନ୍ଦାଛନ୍ଦ ବେନି କର
ଆଶ୍ଳେଷ ପ୍ରେମେ  ତମାଳ ଦ୍ରୁମେ  × × ଲତା ଚମ୍ପକର ॥ ୫ ॥

ଅବସ୍ଥା ଚର  ଆଦ ଖେଚର  ଭୁବନ ଚର ଉଲ୍ଲାସ
ଅଚଳ ଚଳ  ନାଚେ ସକଳ  ପାଦପେ ବୃନ୍ତ ପଲ୍ଲାସ ॥ ୬ ॥

ଆସ୍ୟ ଅନାଇଁ  ଅଚ୍ୟୁତ ଧାଇଁ  ଚୁମ୍ବନେ ଚୁମ୍ବ ବରଚିତ
ଅମ୍ବୁଜ ବାତ  କରେ କମ୍ପିତ  ହରେ କାମ ସାର ଚିତ୍ତ ॥ ୭ ॥

ଅଧରୁ ସୁଧା  ନ ଦେଇ ମୁଗ୍ଧା  କେ ମୁଖଚନ୍ଦ୍ର କମ୍ପାଏ
ଅଯୋଗେ ରମ  ସୁଧାରେ ପ୍ରେମ  କର କଞ୍ଚିତ ନ ପାଏ ॥ ୮ ॥

ଅଚ୍ୟୁତ ଧର  କେ ବମ୍ବାଧର  ଓଷ୍ଠ ପାନ କଲ ବଳେ
ଅବଶେଷରେ  ଦନ୍ତ ମୁଦ୍ରାରେ  ଛୁଡ଼ି ସେନେହ ନ ବଳେ ॥ ୯ ॥

ଅବଳା ହସି  ଆନନ ଶଶୀ  ପଳାଇ ଯାଇ ଛଡ଼ାଇ
ଅଧରୁ ଦନ୍ତେ  ଭେଦ ଭୃଶତେ  ରଖିଲ ନିଜ ବଡ଼ାଇ ॥ ୧୦ ॥

ଅଜ୍ଞାନ କାମେ  ହୃଦରେ ପ୍ରେମେ  ମଣ୍ଡିଇ କୁଚ କଳଶ
ଅଚ୍ୟୁତ ପୀଡ଼ା  କରନ୍ତେ ବ୍ରୀଡ଼ା-  ବକ୍ଷ ଘଞ୍ଚଇ ଅଙ୍କସ ॥ ୧୧ ॥

ଆଣ୍ଠୁ ଉରଜ  ଘର୍ଷ କରଜ  ଘାତରେ କ୍ଷତି ଘଷଇ
ଅମର ଧର  ଦନ୍ତୀ ଦନ୍ତର  ଚିହ୍ନ ଶୋଭା ପ୍ରକାଶଇ ॥ ୧୨ ॥

ଆଶ୍ଳେଷ ଅନ୍ତେ  ଉରଜ ମୋକ୍ତି-  ହାର ସେ କାଳେ ଛୁଡ଼ଇ
ଆସେ କି ଗଙ୍ଗ  ଉଜ ତରଙ୍ଗ  ଅବନୀ ତଳେ ପଡ଼ଇ ॥ ୧୩ ॥

ଅଳପ ଶୁଣ  ବୋଲି ଶ୍ରବଣ  ପାଖକୁ ମୁଖ ନଅଇ
ଅଣିମା ଆଦି  ସୁଖ ସମ୍ପାଦ  ସବୁ ଚୁମ୍ବନ ହରଇ ॥ ୧୪ ॥

ଅଚ୍ୟୁତ ଭଡ଼  ନ ଦେଲେ ଗୁଡ଼  ଛଡ଼ାଇ ଯିବା ପାଞ୍ଚଇ
ଅଙ୍ଗ ଭଙ୍ଗୀରେ  କକ୍ଷ ଗଳରେ  ନଖ ଚଳାଇ ବଞ୍ଚଇ ॥ ୧୫ ॥

ଅଧିକ ଦାସ    କର ପ୍ରକାଶ    ଚଳାଇ କୁଞ୍ଜେ ଲୁଚଇ
ଆଣାନ୍ତ ହର    କ ଝଲ୍ପ ଧର    ଅପାଙ୍ଗେ ସୁଧା ସିଞ୍ଚଇ    ॥ ୧୬ ॥

ଅଙ୍ଗ ସ୍ପର୍ଶେ    ନୃତ୍ୟର ବଶେ    ସ୍ୱେଦ ଭୂଷଣେ ଢଟଇ
ଅନ୍ତରୁ ଘନ    ହସ ଜଘନ    ଶୋଭୁ କବା ବରଷଇ    ॥ ୧୭ ॥

ଅଟଇ ପେଣୁ    ଭୋଗିଙ୍କ ତେଣୁ    କଞ୍ଚୁକ କାଢ଼ି ଗ୍ଲପଇ
ଅମ୍ବରହୀନ    କୁଚ ଈଶାନ    କର୍ପୂର ଭସ୍ମ ଲେପଇ    ॥ ୧୮ ॥

ଆପଣ ପଣ    କର କ ପଣ-    ନ୍ତରେ ଶ୍ରମକୁ ହାଞ୍ଚଇ
ଆସ୍ୟକୁ ପୋଛେ    ରଭ ସ୍ୱ ଇଛେ    ଆଦରଣକୁ ମାଜଇ    ॥ ୧୯ ॥

ଆସନେ ରାଧା    ହର ଶରଧା    ଉର ପରେ ଆଉଜାଇ
ଆପଣେ ବସ୍ତ୍ର    ସେନେହ ସସ୍ତ୍ର    ଭାବ ସରିତେ ମଜ୍ଜାଇ    ॥ ୨୦ ॥

—ଗାହା—

( ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ — ଅନବନ୍ଧ )

ଆସି ଏତ୍ତୁ କାଳେ ବୃନ୍ଦା ବାଣୀ କହେ ଧୀର
ଅବଲୋକ ମଧୁକାଳ କାମେ ଅଧୀର
ଅଳି ମଧୁପାନେ ରମେ ଅଧିକ ସୁମନ
ଆଜ ମଧୁ ପାନେ ହର କାମିନୀ ମନ ॥ ୧ ॥

—ଗୀତ—

( ଗୌରୀ ରାଗେଣ ଗୀୟତେ )

ଅଦ୍ଭୁମର୍ଦ୍ଦ ମଦନେ    ହେବ ନଖ ରଦନେ
ଆୟୁଧ ବେନି କ ଆଜ ପୂନ
ଅତି ମୂନ କରଜ    ତାମ୍ବୁଳେ ଦନ୍ତମାଜ
ଆହେ ବସି କର ସୀର ପାନ ॥ ଘୋଷା ॥
ଅଜିତ ହେବ ସମରେ ଆଜ
ଆସବ ପାନରେ ରାଧା ମାଧବ ରାଜ ॥ ୧ ॥

( ଢାଳ )

## — ମଧୁପାନ ବୋଲି —

( କଂସ ସଂହାର ବାଣୀରେ )

ଆଣିଲେ ବୃନ୍ଦା ମଧୁ ଅନନ୍ଦା ଭରି କନକ[1] ପାତ୍ରରେ
ଅଚ୍ୟୁତ ହସି ଛଳରେ ଘସି ଢଳଢ ପାତ୍ର ମିତ୍ରରେ ॥ ୧ ॥
ଆସବ ମଧୁ ଫୁଲରେ ସାଧୁ ଯତନେ ବୃନ୍ଦା ସଞ୍ଚିତ
ଆପଣ ପିଇ ସଖାରେ ଦେଇ ସେ ପାନ[2] କଲେ କଞ୍ଚିତ ॥ ୨ ॥
ଅବଶେଷରେ ମନ୍ତ ତୋଷରେ ବାଣ୍ଟି ଗୋପୀକା ଭଟଣ
ଅଞ୍ଜଳି ପୋଷ ପାନ ବିଶେଷ ପାନ କରି ଲଭେ କ୍ଷଣ ॥ ୩ ॥
ଆଗ କେ ହୋଇ କରୁ ବଢ଼ାଇ ପି ପି ବୋଲି ଆରମ୍ଭରେ
ଅନଙ୍ଗ ରସ ବୃଦ୍ଧି ସରସ ଜାଣିବା ଲାଳସା କରେ ॥ ୪ ॥
ଆପାନ ସ୍ଥାନ କି ଉପବନ ସୁମନ ଜନନ ମଧୁ
ଅନୁତର୍ଷଣ କାମିନୀଗଣ କରି ପ୍ରଶଂସିଲେ ମଧୁ ॥ ୫ ॥
ଆନନ୍ଦ ମନେ ହାସ ରଚନେ ପିଇ ସକଳେ ବାରୁଣୀ
ଅକ୍ଷି ଅସିତ, ସମସ୍ତ ଦତ୍ତ କରି ହୋଇଲା ଅରୁଣୀ ॥ ୬ ॥
ଅବଳା ରତ୍ତ ସମସ୍ତ ଚ୍ୟୁତ କାଳେ ନସ୍ତନ ଯେମନ୍ତ
ଅଳ୍ପ ଘୂର୍ଣ୍ଣିତ ପୂନ କମ୍ପିତ ମୁକୁଳ କରେ ହେମନ୍ତ ॥ ୭ ॥

—ଶ୍ଳୋକ—

ମୂର୍ଚ୍ଛାନିମୀଳନଂଗୃହ୍ଣୋଃଚ୍ୟୁତକାଜସ୍ୟ ଲକ୍ଷଣମିତ୍ତ ଗ୍ରନ୍ଥାନ୍ତରେ ।

ଆଜ ତରୁଣ ବଧି କି ବାଣ ଶୋଣେପୁ ପାଞ୍ଚ ଶର
ଅମ୍ବୁଜ ଇନ୍ଦୀ- ବର କି ନନ୍ଦ କଲ୍ପ କୋକନଦ ଶର ॥ ୮

---

୧ । 'ଧୂସ୍ତର ଭଜନା ଦ୍ରବ୍ୟ ଇତ୍ୟମରଃ' (ପୋଥିଟୀକା)

୨ । ଏଠାରେ 'ଆପାନଂ ପାନ ଗୋଷ୍ଠୀ କା ଇତ୍ୟମରଃ' (ପୋଥିଟୀକା)

ଇତି ବଚନ    ପଦ ସ୍ଖଳନ    ମଧୁ କର୍ଦ୍ଦମ ଯୋଗରେ
ଅଟ୍ଟହାସକୁ    କରି ଜାତକୁ    ଲୋଟଇ ମହୀଭାଗରେ ॥ ୯ ॥

ଅସ୍ଥିର ପାଦ    ଆଗରେ ବାଦ    କଳ କୁଣ୍ଠାଇ ଗମନେ
ଆଦ୍ୟ ଯୌବନ    ମଦିରା ପାନ    ମାଦକତ ଥିଲା ମନେ ॥ ୧୦ ॥

ଅଧିକେ ପୁନ    ମଧୁ ଅଶନ    ବନେ ସଙ୍ଗ ମଧୁପର
ଅଟଇ କାଳ    ମଧୁ ପ୍ରବଳ    କାମେ ଧ୍ୟାନ ମଧୁପର ॥ ୧୧ ॥

ଅଜ୍ଞାନ ଏକ    ବିଷୟେ ଲୋକ    ଏତ ନୋହିଲା କଳନା
ଆଲୋକ ଚକ୍ଷୁ    ପୁରୁଷ ଗୃଚ୍ଛୁ    ବିଚାର କଲେ ଲଳନା ॥ ୧୨ ॥

ଅନେକ ରତି    ବନ୍ଧ ପିରତି    ଦିଶେ ମନ ଆଦରଣେ
ଅଳପ ନାମ    ବିଶେଷ ତମ    କଲେ ରତି ଆଦର ସେ ॥ ୧୩ ॥

ଅନଳ ଧୀର    କରେ ଅଧୀର    ହରିବାସକୁ ସ୍ମର
ଅନେକ ପୁଷ୍ପେ    ରମିଣ ବୁଲେ    ମଧୁରେ ମତ୍ତ ଭ୍ରମର ॥ ୧୪ ॥

ଅବଲୋକନେ    ଉଦ୍ଧବ ମନେ    ରମିଲେ ରାମା ସକଳ
ଅନଙ୍ଗ ପାଠ    ନ କରି ମଠ    ଶିଖାଇ କୋକିଳ କଳ ॥ ୧୫ ॥

ଅଧୀର ଘଟେ    ବିମ୍ବ ପ୍ରକଟେ    ବୃନ୍ଦାବନଚନ୍ଦ୍ର ହରି
ଅନେକ ରୂପେ    ପ୍ରକାଶ ଆପେ    କୁଞ୍ଜ କୁଞ୍ଜକେ ବିହରି ॥ ୧୬ ॥

### — ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଅଙ୍ଗନା ପୁରୁଷ ଲଜ୍ଜ    ଦେଖାଇଲା ମନସିଜ
ଶର ପେଷି କହଇ ଉଦ୍ଧବ ଗୋ
ଅଟୁଟ ସେ ସମ୍ବାଦ ବଧୂ    ଅଧରେ ମାଦକ ମଧୁ
ପାନେ କହେ ବନ ଜାଣେ ଚିତ୍ତ ଗୋ ॥ଘୋଷା॥
ଅଣ୍ଡ କେ ମଦନେ ହୋଇ    ସ୍ୱକରେ କୁଚ ପୀଡ଼ଇ
ଚୁମ୍ବକୁ କହେ ଅଧର ଗୋଳ ଗୋ

ଅଭିବାଞ୍ଛିତ ଶୃଙ୍ଗାର          ଯେ ନାୟକେ ଅଗ୍ରଗାର
ଲଭେ ବଲ୍ଲଭୀର ହରି ଲାଜ ଗୋ ॥ ୧ ॥
ଅମନ୍ଦାକ୍ଷ ସନ୍ତ୍ରଂ ମୁଗ୍ଧା          ଚିହ୍ନ କ ହେବାର ମଧ୍ୟା
ପ୍ରଗଲ୍‌ଭା ଚେଷ୍ଟା ସୁରତେ ଦେବ ଗୋ
ଆଖଣ୍ଡଳ ଭୂତରଣୀ          ଚୁମ୍ବ ଦେଲେ ପଦ୍ମେ କ୍ଷଣୀ
ଭଣଇ ଶ୍ୟାମସୁନ୍ଦର ଦେବ ଗୋ ॥ ୨ ॥

---

( ତେର )

## — ମଧୁପାନ ସୁରତ ବୋଲି —

( କଂସ ସଂହାର ବାଣୀରେ )

ଅଚ୍ୟୁତ କର          ଧରି ରାଧାର          ସୁରତ କୁଞ୍ଜ ପ୍ରବେଶ
ଅବଲୋକନ          ସୁରତ ସ୍ଥାନ          ଅଧିକେ କାମେ ଆବେଶ ॥ ୧ ॥
ଆକାଂକ୍ଷା ଏବ୍ବ          ପୁଂସର ଥାଇ          ନବୀନା ହତ ଲଜ୍ଜରେ
ଅନଙ୍ଗେ ମତ୍ତ          ହୋଇ ସେ ମତ୍ତ-          କାଶିନୀ ଭଡ଼େ ଭୁଜରେ ॥ ୨ ॥
ଅଯାଚତରେ          ପ୍ରେମ ଚିତ୍ତରେ          ନାୟକ ମୁଖ ଚୁମ୍ବଇ
ଆପଣା ମୁଖ          ସେ ଶିଳୀମୁଖ          ଫୁଲ ଚୁମ୍ବକୁ ଲଭଇ ॥ ୩ ॥
ଆମ୍ରେଶ୍ବରର          ପୀଡ଼ି ଅଧର          ରଦନ ଚିହ୍ନ ରଖଇ
ଅଧର ମଧୁ          ପାନରେ ବଧୂ          ସୁଧା ଭୁଞ୍ଜରେ ଲେଖଇ ॥ ୪ ॥
ଅରଣ୍ୟ ପ୍ରିୟ          ପକ୍ଷୀ ନଚୟ          ଧ୍ୱନିତ କଣ୍ଠେ ଶିଖଇ
ଅକ୍ଷି ମୁଦ୍ରିତ          ମୁକୁଳିକୃତ          ଅପାଙ୍ଗେ ଡୋଳା ରଖଇ ॥ ୫ ॥

—ଶ୍ଳୋକ—

ଦାତ୍ୟୂହ ଲାବକମୟୂରକପୋତ ହଂସାଃ ।
ପାରାବତାଦ ଋତକଂ ଧ୍ୱନିତଂରତେଷୁ ।
(ଇତି ରତ୍ନାନ୍ତରେ ଆଦ୍ୟ ଶବ୍ଦାମୃତିକଂ ଗ୍ରନ୍ଥମ୍)

ଆପେ କି ଦେଖାଇ    କି କି କରଇ    କିଛି ଜାଣି ନ ପାରଇ
ଅଧରକ ଧ୍ୱନ    କଲେ ମର୍ଦ୍ଦନ    ସୁଖେ ଚେତନା ହାରଇ ॥ ୬ ॥

ଆଂଗ ନାୟକ    ବେନି ଚୁଚୁକ    କରେ ଘଷି ମରଦଇ
ଆଣ୍ଟରେ ବାଳା    ବଲ୍ଲଭ ଗଳା    ଧରି ଲପନ ଲଦଇ ॥ ୭ ॥

ଆପେ କଦଳୀ    ଜଘନ ବାଳୀ    ମଧ୍ୟସିଂହକୁ ଛନ୍ଦଇ
ଅଳ୍ପ ମର୍ଦ୍ଦନ    କାମ ସଦନ    କଲେ ସେ ଶବ୍ଦ ବନ୍ଦଇ ॥ ୮ ॥

ଅତନୁ ମତ୍ତେ    ପୁରୁଷାଇତେ    ଆପେ କେ ବସି ଝୁଲଇ
ଅବଶ ପୀନ    ଘନ ଜଘନ    ଝଟକତରେ ନ ଚଳଇ ॥ ୯ ॥

ଅଙ୍ଗନା କଟୀ    କିଙ୍କିଣୀ ରଟି    ସୁରତ ଜୟ ଘୋଷାଇ
ଅଶେଷ ଘନ-    ରସ ଜନନ    ସ୍ୱେଦ ଛଳେ ବରଷଇ ॥ ୧୦ ॥

ଅଟଇ ଇଭ    ଉରଜ କୁମ୍ଭ    ସ୍ୱେଦ ମଦ କି ଗଳଇ
ଅଭିଷେକରେ    ଯୁବା ନକରେ    ମାର କଳଶ ଢାଳଇ ॥ ୧୧ ॥

ଅଷ୍ଟାପଦର    ଲତା ସୁନ୍ଦର    ବାତ ଯୋଗେ ଦୋହଲଇ
ଆଲମ୍ବ ବେଣୀ    ବରହ୍ମ ଜାଣି    ନାଟରେ ଗତ ବୋଲଇ ॥ ୧୨ ॥

ଅବଳା ମଧ୍ୟ-    ସିଂହ ପ୍ରସିଦ୍ଧ    ହସ୍ତୀ ଶୁଣ୍ଢ କି ଧରଇ
ଆମୁକ୍ତ କୁମ୍ଭ    ମୁକ୍ତା ଆରମ୍ଭ    ତୋଳେ ଯାଇ ନ ପାରଇ ॥ ୧୩ ॥

ଅକ୍ଷି ଉତ୍ପଳେ    ରତି ବଚନେ    ଷଟ୍‌ପଦ ଭଗ ଭ୍ରମାଇ
ଅମୃତ ପାନ    ନଖ ରଦନ    ଘାତେ ସୁଖ ଜନମାଇ ॥ ୧୪ ॥

ଆରମ୍ଭ ରତେ    କଣ୍ଠ ଧରନ୍ତେ    ହୁଂ ହୁଂ ଶଙ୍ଖ କି ବାଜଇ
ଅତନୁ ହେମ    ଘଟ ସୁଷମ    କୁଚ ପାଣିରେ ମଜ୍ଜଇ ॥ ୧୫ ॥

ଆକରଷଣେ    କେଶ ଧାରଣେ    ପିଠି ଶଯ୍ୟନ ମଣ୍ଡଇ
ଅମ୍ବୁଜ କର    ଯମୁନା ନୀର    ଧାରେ ଏ ଶୋଭା ଖଣ୍ଡଇ ॥ ୧୬ ॥

ଶ୍ଳୋକ— ଗ୍ରହଣମଅ ବଦଧ୍ୟାତ୍ର କଣ୍ଠଦେଶସ୍ତ୍ରନାନ୍ଦ—ଇତି ଗ୍ରନ୍ଥାନ୍ତରେ ।

ଅମ୍ବର ଦୁର    କଣ୍ଠ ଉଦୁର    ମଧ୍ୟ ଉତ୍ସବେ ଶୁଅଇ
ଅତନୁ ଗେହ    ଶୋଭା ସନ୍ଦୋହ    ବଲ୍ଲଭ ନେତ୍ରେ ଦଅଇ ॥ ୧୭ ॥

| | | | |
|---|---|---|---|
| ଅଚ୍ୟୁତ କର | ପ୍ରଫୁଲ୍ଲିତର | କଦମ୍ବ ଭୂତ କରଇ | |
| ଆତପତ୍ର କ | ତ୍ରକୋଣେ ଟେକ | ପ୍ରେମାଳ ଦଣ୍ଡେ ଧରଇ | ॥ ୧୮ ॥ |
| ଅଧିକେ ସ୍ତନ | ଦର୍ଶନେ ମନ | କେଉଁ ଅଙ୍ଗନା ରସଇ | |
| ଆଣି ଗଳରେ | ପାଣି ବଳରେ | ପୟୋଧରେ ନବେଶଇ | ॥ ୧୯ ॥ |
| ଅନ୍ତ ଜଙ୍ଘରେ | ମଦନ ମତ୍ତେ | ରତିରେ ତୃପ୍ତି ଲୁହଇ | |
| ଅଙ୍ଗ କମ୍ପାଇ | ସୁରତ ପାଇଁ | ମୁକୁଳ ଜଂଘେ ରହଇ | ॥ ୨୦ ॥ |
| ଅନ୍ୟେ କେ ଭିଡ଼ | ପ୍ରିୟ ନ ଛାଡ଼ | ସ୍ତନ ଜଘନ ସଲଇ | |
| ଅନର୍ଥ ବାଣୀ | ଆପେ ରମଣୀ | ମଦବ ମତ୍ତେ ବୋଲଇ | ॥ ୨୧ ॥ |
| ଆଦର କର | ନବ କଣୋଷ୍ଠ | କାନ୍ତ ଯାହା ନ ଶୁଣଇ | |
| ଆସ୍ୱାଦ•ବନା | କହେ ନଗନା | ପ୍ରିୟ ତା ହୃଦେ ଗୁଣଇ | ॥ ୨୨ ॥ |
| ଅଧିକେ ଗୁଚ୍ଛ | ବଚନ୍ତୁ ଗୁଚ୍ଛ | କାମମତ୍ତେ ଯା ଭାଷଇ | |
| ଅଟଇ ପ୍ରତି- | ଚକ୍ଷୁ ସେ ପ୍ରୀତି | ରସ ସୁବର୍ଣ୍ଣ ବରଷଇ | ॥ ୨୩ ॥ |

—ଗାହା—

( କେଦାର ରାଗେଣ ଗୀୟତେ—ଅନବନ୍ଧ)

ଅନ୍ତ ସୁରତେ ଗୋପୀକାମାନେ ଉଭା ହୋନ୍ତି ଟଳଟଳରେ
ଅସ୍ତବ୍ୟସ୍ତରେ ବାସ ପିନ୍ଧନ୍ତି ବାନ୍ଧନ୍ତି ମାଳ ବାଳରେ ॥ ୧ ॥

—ଗୀତ—

( ଶ୍ରୀ ରାଗେଣ ଗୀୟତେ )

ଅବ ଦେଖୋ ମାଇ      ମଦନ ନଡ଼ାଇ
ଖୋଲା ବେଣୀ ଉଡ଼ତ ନଶାନ
ଆସେ ଭାଷି ସକଲ      କୁଚ ଢ଼ାଲ ବଗଲ
ରୋମାବଳୀ ଚଳୁଆର ଆନ ॥ ୧ ॥

ଆଙ୍ଗମେ ନଖ ଘାଉ    ପଥ ଦୁଡ଼ଇ ଯାଉ
କଟି ସିଂହେ କଙ୍କିଣୀ ନାଗର
ଅଙ୍ଗୁ ଖସେକ ଚଢ଼ି    ଫିଙ୍ଗି ଆସେ ପଗଡ଼
ବଚ୍ଛେଦ ଉଡ଼େ ମଦନ ପଗ ॥ ୨ ॥

---

## ( ଚଉଦ )

## — ମଧୁପାନ ରତାନ୍ତ ବୋଲି —

( କଂସ ସଂହାର ବାଣୀରେ )

ଅନଙ୍ଗ ରଙ୍ଗେ    ବେଶ ବଭଙ୍ଗେ    ଗୋପୀକା ଦ୍ୱାର ଗମନ୍ତ
ଅଧୀର ମତ୍ତ    ମାଦକ ମତ୍ତ    ପନ୍ତ ପନ୍ତରେ ଭ୍ରମନ୍ତ    ॥ ୧ ॥

ଅମ୍ଭୋଜ ମାର    କେ ହସ୍ତି ମାର    ଉପମା ଶୋଭା ପାଇଛୁ
ଅଚ୍ୟୁତ ଧ୍ୱଂସ    ଇଭ ବଶେଷ    ମନ୍ଥି ରମି କ ଯାଇଛୁ    ॥ ୨ ॥

ଅନଙ୍ଗ ବାସ    ପତାକା ବାସ    ଖୋଷିଲେ ମାଦ ଫିଟଇ
ଅନ୍ତର ରତ୍ତ    କାଳରେ ଚିନ୍ତ    ପଣନ୍ତ ମହୀ ଲୋଟଇ    ॥ ୩ ॥

ଆଦର କର    କେଉଁ ସୁନ୍ଦରୀ    ପ୍ରବୋଧି ପୁନ ଖୋଷଇ
ଅବଲୋକନ    କୁଚ ଈଶାନ    ଚନ୍ଦ୍ର ଦେଖି କେ ହସଇ    ॥ ୪ ॥

ଅଳପ ଦୂର    କର ଅମ୍ବର    ପୁଣ ଯୋଡ଼ାଇ ଦେଖଇ
ଆଣ୍ଠୁ ଜଘନ    ସନ୍ଧି ବସନ    କାଢ଼ି ଚିହ୍ନ ନରଖଇ    ॥ ୫ ॥

ଆନ୍ଦୋଳ କରୁ    କା ଉରୁ ଗରୁ    ଚଳି ନ ପାରି ବସଇଁ
ଅଧିକ ଶ୍ୱାସ    କାମ ହୁତାଶ    ପୁନ ଜ୍ୱଳନେ ରସଇ    ॥ ୬ ॥

ଅସିତ କେଶ    ପତ୍ତ ମାନସ    ଧରି ଭରି କେ ବାନ୍ଧଇ
ଅତସୀ ଧନୁ    ଗୁଣେ ଅତନୁ    ଚମ୍ପାବାଣ କି ସନ୍ଧଇ    ॥ ୭ ॥

ଅର୍କଜା ତୀରେ    ଧୀର ସମୀରେ    ପୁଷ୍ପିତ ବନେ ବସନ୍ତ
ଅତନୁ ରସ    ମନେ ପ୍ରକାଶ    ଅବଶ୍ୟ ଲୋଟି ହସନ୍ତ    ॥ ୮ ॥

—ଗୀତ—

( ଗଉଡ଼ ଘଗେଣ ଗୀୟତେ )

ଆଜ ମୋର ଜ୍ଞାନ ନାହିଁ ଏ ବାରୁଣି ଭୋଗେ
ଅବଲୋକ ହେମ ଘଟ ତସ୍କର ଜାଗେ ॥ ଘୋଷା ॥
ଆଓଟରେ ମାଇ ଝାଡ଼ରେ ଛପଇ
ଆଓଟରେ ମାଇ ଝାଡ଼
ଅବ କୈସା ହୋୟେ ଜଗି ଆଓ ଛପି
ବେଗେ ବେଗି ଦେଖି ଲାଗେ ଡର ବଡ଼ ॥୧॥

---

( ପନ୍ଦର )

— ମଧୁପାନ ବହ୍ୱଳ ବୋଲି —

( କଂସ ସଂହାର ବାଣୀରେ )

| | | | |
|---|---|---|---|
| ଅଜ୍ଞାନ ହୋଇ | କେ ଗୋପୀ କହୁ | ଚନ୍ଦ୍ରର କଳଙ୍କ ରତ | |
| ଅନଙ୍ଗ ଯାଇ | ଆଣି ଟେକଇ | ତା ସଙ୍ଗେ ଆରମ୍ଭେ ରତ | ॥ ୧ ॥ |
| ଅମାବାସ୍ୟାରେ | ଚନ୍ଦ୍ର ଧ୍ୱଂସାରେ | ତା ସଙ୍ଗେ କଲା ସମର | |
| ଅନଳ ନେଇ | ଗୃହାନ୍ତେ[୧] ଗାଇ | ଭସ୍ମ ହୋଇଲା ଅମର | ॥ ୨ ॥ |
| ଆକାଶେ ତାର | ଭସ୍ମ ନକର | ପୂର୍ବ ଦେବ ଗୁରୁ ଯିବ | |
| ଅଧରୁ ତାର | ରମଣୀ ତାର | ସୁଧା ଦେଇ ଦେଲା ଜୀବ | ॥ ୩ ॥ |
| ଅଙ୍କୁର କଳା | ସକାରେ ହେଲା | ବୋଲଇ ସେ ରତ ମତ | |
| ଅମୃତ ଧାମ | ସେ ତନୁ ନାମ | ସୁଖେ ବନ୍ଧରେ ଦମ୍ପତ | ॥ ୪ ॥ |
| ଆନ କେ କହୁ | ବହ୍ୱଳ ହୋଇ | ସିନ୍ଧୁ ମନ୍ଥି ଗଲେ ହର | |
| ଆଣ୍ଠୁକ ପାଣି | ବୁଡ଼ଣା ପୁଣି | ଭସି ଭରେ ଥରହର | ॥ ୫ ॥ |

---

୧ । ଗୃହନ୍ତେ (ପୋଥିପାଠ)

ଅନଙ୍ଗ ଯାଇ    ମୀନେ ବସାଇ    ଉଦ୍ଧବ କୃପା ମନରେ
ଆନନ୍ଦ ଶିବ    ଲଭିଣ ଶବ    ସେ ଦିନୁ ବସେ ମାନରେ ॥ ୬ ॥
ଆମ୍ବନା ଶଚୀ    ସେନେହ ସଞ୍ଚ    କାମକୁ କଲ ପ୍ରଦାନ
ଈଷ୍ଟ ସମ୍ଭାର    ବଭୂତ ଘର    ରସେ ଯୌତୁକ ନଦାନ ॥ ୭ ॥
ଅନର୍ଥ ବାଣୀ    ଭିମଣୀ ମଣି    ବଷ ଭକ୍ଷିଲେ ଈଶାନ
ଅରୁଣ ସୁଧା    ଦେଇଣ ବାଧା    ହରିଲ ନୃହରି ସାନ ॥ ୮ ॥
ଆୟୁଧ ଅନ୍ଧ    ସଙ୍ଗରେ ଯୁଦ୍ଧ    ହେବାକୁ ତା ରୂପ ଶିବ
ଅ.ଙ୍ଗରେ ହାର    ପଳାଇ ଡର    ଚନ୍ଦ୍ର ପାଦେ ରହେ ଶିବ ॥ ୯ ॥
ଅନ୍ଧକାରର    ପ୍ରବଳତର    ଦେଖି ଚନ୍ଦ୍ର ଘଉଡ଼ାଇ
ଅସ୍ଥିର ହୋଇ    ପଳାନ୍ତେ ସେନ୍ଧୁ    ସମୁଦ୍ରେ ମାରେ ବୁଡ଼ାଇ ॥ ୧୦ ॥
ଅନଳ ତାର    ଶ୍ୟାମସୁନ୍ଦର    ଦେବର ସଂଖ୍ୟା ବିଶେଷ
ଅଷ୍ଟାଧିକରେ    ପଞ୍ଚାଶତରେ    ଭ୍ରମ ଶବ୍ଦପଦେ ଶେଷ ॥ ୧୧ ॥*



* ମୋଟ ପଦ ସଂଖ୍ୟା ୩୫୮ ।

## — ଚତୁର୍ଥ କୁସୁମ —

### ॥ ପ୍ରଥମ ଛାନ୍ଦ ଲେଖନ ॥

# ମନ୍ମଥ ବେଶ

( ରାଗ—କଲ୍ୟାଣ ଆହାରି )

ଅନୁପ୍ରାସ—

ଅଟବୀ ଦେବୀ ନିର୍ମାଣି ଆଣି କଳ କୁଟ୍ଟଣି ଯନ୍ତ୍ରରେ ମକର
ଅଙ୍ଗ ସ୍ୱର୍ଣ୍ଣ କର୍ଣ୍ଣ ମାଳ ରତ୍ନ ଶୁଣ୍ଡ ପ୍ରବାଳ ଦନ୍ତ ହୀରକର
ଅଦ୍ଭୁତ, ଅକ୍ଷି ନିର୍ମିତ ମାଣିକ୍ୟର
ଆନନ ରସନା ପୁଷ୍ପରାଗ ଗୁଚ୍ଛ ଚରଣ ମଳନ ନକର ॥ ୧ ॥

ଅଳ୍ପ ଅଳକ ଉଦ୍‌ଗାର × × ଶୋଭା ନଖରାଜେ ଗୁଚ୍ଛ ମୋତିରେ
ଆସନ ଚରମ ମନୋରମ ହେମ ମଣ୍ଡପ ସେ ମଣି ଜ୍ୟୋତିରେ
ଅଦ୍ଭୁତ, ଆମଣ୍ଡନ ପୁଷ୍ପଛତ୍ରରେ
ଅଣ୍ଡଜ କେତନ ଘଟ ଚନ୍ଦେ ଉଡ଼େ ସ୍ତମ୍ଭ ଚନ୍ଦ୍ର କାନ୍ତ କାନ୍ତରେ ॥୨॥

ଅଟନ୍ତ ସାକ୍ଷାତ ମନ୍ମଥ ମନ୍ମଥ ମନମଥ ଗୋପ ରମାର
ଆରୋହଣ ସେ ମକରେ କରେ କରେ ଫୁଲ କୋଦଣ୍ଡ ପର ମାରୁ
ଆଶୁଗ, ଆ କଳନା ଲଳନା ମାର
ଅକ୍ଷୟ ଉପାସଙ୍ଗ ସଙ୍ଗ କେତକୀ ଛୁରି ଖେଷି କଟୀ ସୀମାର ॥ ୩ ॥

ଅସି କିଂଶୁକ ଅଂଶୁକ ପରେ ଶୋଭେ କୁସୁମ ମେଖଳା ବନ୍ଧନ
ଅଙ୍ଗୁଳିରେ ପୁଷ୍ପ କଙ୍କଣି ଗୁଟଣି ବଞ୍ଜୁଳ ଚନ୍ଦ ଆରୋପନ
ଆସନ, ଅଙ୍କେ ପ୍ରିୟା ଶୋଭା ବର୍ଦ୍ଧନ
ଅଭିନବ ରତି ରତି ବଲ୍ଲଭରେ ଜାତ ଉଭୟ ପ୍ରେମ ଧନ ॥ ୪ ॥

ଆମନ୍ତ୍ରନ ହାର କେୟୂର କୁଣ୍ଡଳ ପୁଷ୍ପ ଗନ୍ଧ ବସ୍ତ୍ର ବେଶରେ
ଅଳି ଗୁଣ ଧନୁ ଝଙ୍କାର ଝଙ୍କାର ଝୁମ୍ପା ବାନା ପଦ୍ମକେଶରେ
ଅଚ୍ୟୁତ, ଅନକୁଳ ନାଗ୍ରୀ ନାଶରେ
ଅଟବୀ ଦେବୀ ଯେ କାମଦେବଙ୍କେ ପୂଜେ ଆଗନ୍ତ ବନ୍ଦାଇ ତୋଷରେ ।୬।

ଅନିଳ ମନ୍ଦ ମନ୍ଦ ସ୍ଵରେ କଳ କଳ ଯନ୍ତ୍ରେ ଯାନ ଚଳଇ
ଅନଙ୍ଗ ସୁରସ ଅକୂପାର ପାର ନ ପାଇ ଜ ମଧ୍ୟେ ଖେଳଇ
ଆଳୋକ, ଅବଳା ଆବଳୀ ଢାଳଇ
ଅତନୁ ବକାର ଆକାର ଗୃପ୍ତିରେ ଜୃମ୍ଭା ରଚି ଅଗ୍ରେ ମିଳଇ ।୭।

ଅମରଷରେ ବଶେଷରେ ଉରଜ ଶମ୍ଭୁ ପରେ ଶର ପଡ଼ିଲା
ଅଧିକେ ଚମକ ଚମସ୍ତି ନୟନା ମୋହେ ଅବମାରେ ପଡ଼ିଲା
ଅବଳା, ଆବନ୍ଧ କଞ୍ଚୁକ ଛୁଡ଼ିଲା
ଅନ୍ୟ ବାଣ ବୃନ୍ଦେ ଗଣ୍ଡେ ଚୁମ୍ବଦେଲେ ଚେତି ପୁନ ବାସ ଭିଡ଼ିଲା ।୭।

ଅମ୍ବୁଜକର ପୁଲଶର ନକର ପଡ଼ିବା କାକେ କେ ଆଡ଼ିଲା
ଅଞ୍ଜନ ଗୁଣ ଯୋଗ ଭ୍ରୂରୁ କୋଦଣ୍ଡ ଅପାଙ୍ଗ ନାରାଚ ଛୁଡ଼ିଲା
ଅଚ୍ୟୁତ, ଅଗ୍ନି କଂଶୁକୁ ଫେଡ଼ିଲା
ଅଙ୍ଗନା ଚନ୍ଦ୍ରହାସ ହାସ ଦେଖାଇ ଅଧରେ ରଦନ ଭିଡ଼ିଲା ।। ୮ ।।

ଅସ୍ତବ୍ୟସ୍ତ କେ ହସ୍ତ ନ୍ୟସ୍ତ ଉରଜେ ବାଣ ପଡ଼ନ୍ତେ ଘନ ଘନ
ଅସମ୍ଭାଳ ବାଳୀ ଚରମ ଦେଖାଇ ମୁକୁଳ କୁନ୍ତଳ ସଘନ
ଆଲୋକ, ଆଶୁଗ ନ କରେ ଲଂଘନ
ଅନ୍ତରେ ଚନ୍ଦ୍ର ଚନ୍ଦ୍ରଣୀ କେ ଲୁଚଇ ବକାରେ କମ୍ପେ ଅପଘନ । ୯ ।।

ଅସକତେ କେ ନାସ୍ତି ମଧ୍ୟେ ଲୁଚନ୍ତେ ବାଣ ମନଭେଦ ଭେଦଇ
ଅମ୍ବୁଜ କଳିକା ମୁଦ୍‌ଗରେ ବାଳକା ଛଣ୍ଡି ଭଣ୍ଡି ନେଇ ମୁଦଇ
ଅଚ୍ୟୁତ, ଆଗେ କେଳି ସମରଜଇ
ଆଶୁଗ ଆଶୁଗତି କରି ବଦ୍ଧାବ ରଚିଲେ ହେ ପୃଷ୍ଠେ ଖେଦଇ । ୧୦ ।

ଅବିର ଅବିରତ ମୁଷ୍ଟିବନ୍ଧରେ କୁଚ ଶମ୍ଭୁ ପରେ ମାରନ୍ତି।
ଅଜନ୍ତୁର ଘାତ ଅଙ୍ଗରେ ହେବାରୁ କରୁ ଧାରଧାର ଝରନ୍ତି
ଅଧିକ, ଅନୁରାଗ କସେ ଧରନ୍ତି
ଆକାଶ ଅରୁଣ ବିତାନ ବନ୍ଧନ ପରି ମାନସକୁ ହରନ୍ତି ।। ୧୧ ।।

ଆପଦନ୍ତ ଘାର ପନର ପିଚକା ଗୃହଦଗରେ ବଉଷଇ
ଆନନ୍ଦ ସୁଧା କରୁ ସୁଧା ଜନ ନପ ଚଳେ ଶୋଭନ ଦଶଇ
ଅଙ୍ଗନା, ଅଙ୍ଗେ ଏକ୍ଷ ଲକ୍ଷ ଆସଇ
ଆଜ କ ଘନ ଜଘନ। ଘନରସ ବରଷାରେ ମନ ତୋଷଇ ॥ ୧୨ ॥

ଆଲୋକ ଚନ୍ଦ୍ର ଘାପ ତୁଳା ବର୍ତ୍ତୁଳା ମନ ସର୍ବ ଯାନ ପ୍ରବେଶ
ଆଖଣ୍ଡଳ ଦଗେ ମିଳନ୍ତେ ଲଜ୍ଜିତା ତାମ୍ବୁଳ ସେବାରେ ଆବେଶ
ଆଲୋକ, ଅଚ୍ୟୁତ ମନମଥ ବେଶ
ଆଘ୍ରାପ ରମଣୀ ଫୁଲ ବାଣେ ଭେଦ ମଣି କୁଚ ଉମା ଗ୍ରାବେଶ ॥ ୧୩ ॥

ଅର୍ଦ୍ଧ ଚନ୍ଦ୍ର ଭ୍ରମ କରଜ ଚିହ୍ନରେ କସ୍ତୁରୀ ମକର ଗରଳ
ଅମୃତ କର ରଜ ଭ୍ରମ ଦଭୂତ ଅନ୍ଧବର ହାର ତରଳ
ଆମଧ୍ୟ, ଅଚ୍ଛୁ ରୋମାବଳୀ ସରଳ
ଆଲୋଚନା କରି ଉମ୍ଭରୁ ତ୍ରିଶୂଳ କୁଳାଙ୍ଗନା କର ତରଳ ॥ ୧୪ ॥

ଅନ୍ତର ଏମନ୍ତ ରସଗର୍ଭେ ଶୁଣି ଐଶାନ୍ୟେ ବଶାଖା ପାଶରେ
ଆନନ୍ଦ ସମ୍ପତ୍ତି ଦମ୍ପତ୍ତି ଦୃଢେ ସେ ଗନ୍ଧ ଚନ୍ଦନ ବଶେଷରେ
ଅବଳା, ଅଗ୍ରେ କଲେ ବସ୍ତ୍ର ଭୂଷଣରେ
ଆଜ ବୃନ୍ଦାରକ ବୃନ୍ଦାବନ ଚନ୍ଦ୍ରେ ଦୃଷ୍ଟି ରାଧା ଭୋଗ ତୋଷରେ ॥ ୧୫ ॥

ଅମ୍ଭୋଜନମ କୁଳ ବ୍ୟାକୁଳ କରଅ କର ଶରେ ବନ ଉପ୍ସନେ
ଅନୋଚତ ଚିତ୍ତ ଅନ୍ଧକାର ଆଣି ଘୋଟାଅ ଅବଳା ନୟନେ
ଆଲୋକେ, ଆପେ କୁମୁଦ ବିଶପୃନେ
ଅମର ସରସ ଜଳେ କୁଚ କୋକ ଯୁଗ ସଂସ୍ଥିତ ବିଚୟନେ ॥ ୧୬ ॥

ଆପୀଡ଼ିତ କର ପାଣି ପ୍ରବଳରେ ବିହାର ମକର ଅଚ୍ଛୁ ତ
ଅନଙ୍ଗ ବାଣ ସଂଘାତ ବଘାତରେ ଅଧରେ ଆମ୍ଭେ ମୁହୂର୍ଚ୍ଛିତ
ଅଚ୍ୟୁତ, ଆଶୁଗ ମାରଣ କୁହିତ
ଆପ୍ୟାୟିତ ଚନ୍ତ ଅମୃତ ନକର ଓଷ୍ଠ ଦେଇ ଅଭିବାଞ୍ଛିତ ॥ ୧ ॥

ଆଳାପ ଆଶ୍ଳେଷ ଶ୍ଳେଷ ଶୁଣି ଚମ୍ପାଲତା ପାଶେ ମିଳି ଉତ୍ତରେ
ଆଲୋକ ଭ୍ରମର ବିଗ୍ରହ ଗୃମର ସେବ କହେ କାମ କାତରେ
ଅଚ୍ୟୁତ, ଆଖଣ୍ଡଳ ବନ ଭିତରେ
ଅଭ୍ର ଦନ୍ତ ବ୍ୟାଜ (?) ମକର ନୂତନ ଶତ ଅଙ୍କେ ପ୍ରେମ ଜାତରେ ॥ ୧୮ ॥

ଅଶନ ବାଣ ପ୍ରହାର ଏଣୁ କୁଚ ଗିରି ବକ୍ଷେ ବଳ ଉଦଟରେ
ଅପଘନ ଘନ ଘନରସ ଯୋଗ କାମଚାପ ନାଶ ବାଦରେ
ଅଚ୍ୟୁତ, ଅଙ୍ଗ ବୁଡ଼େ ମାର ନାଦରେ
ଅବଲମ୍ବ ତବ କୋଇଲ ପିକ କଳ ବାଣୀ ରୁନ୍ଧଇ କଣ୍ଠ ଦରେ । ୧୯ ।

ଅନଳ ଦଗେ ସୁଦେବୀ ପାଶେ ମିତ୍ରଂ ସେବଲେ ସେ ଜଳ ସୁବାସେ
ଅର୍ଚ୍ଚନ ସୁମନ ଅଞ୍ଜଳି ବଚନ ରଚନ ଇନ ପୀତବାସେ
ଆଟୋପ୍ତ, ଅଛ ମକର ସୂତ ବାସେ
ଆମ୍ବୁଭୂ କ୍ଷେତ୍ର ପ୍ରାପ୍ତେ ତନୁ ମଜ୍ଜନ କରି କର୍ମେ ରଞ୍ଜଭ ବ ସେ । ୨୦ ।

ଅଟ ବୃନ୍ଦାବନ ଦ୍ୱିଜରାଜ ଯେନ ହେମ କୁମ୍ଭ ପାଣି ବହିତ
ଅବସ୍ଥେ ଭଳ ଚନ୍ଦ୍ରଳ ଦାନକୁ ଦେବୁଂ ଯେନ କୋଳ ସହିତ
ଅଚ୍ୟୁତ, ଆମଜ୍ଜନ ଦାନ ଯେ ହିତ
ଆଚରଣ କରି ଯଥୋକ୍ତ ଫଳଦ ନ ପୀଡ଼ିବ ହରି ଅହିତ ।। ୨୧ ।।

ଅରୂପ ତ ଦଣେ ରଙ୍ଗଦେବୀ ପାଶେ ମିତ୍ରଂ ସେବେ ରାଗରଙ୍ଗରେ
ଆପଣେ ଦଗ × × ଚଢ଼ି ମକର କୋଳେ ଗର୍ଭୀ ତରଙ୍ଗରେ
ଆପଗା, ଅଙ୍ଗନା ସେବନ୍ତି ସଙ୍ଗରେ
ଅଟେ କୃଷ୍ଣବେଣୀ ଶୋଭନା କେ ପୁଣି ସ୍ଥିତ ଚନ୍ଦ୍ରଭାଗା ଅଙ୍ଗରେ ।୨୨।

ଆନନ ପୁଷ୍କର ଭାସ୍କରଜା କଚ ବକଚ କୁମୁଦ ପ୍ରଭାସେ
ଉଚ୍ଛନ୍ତି ନର୍ମଦା ପ୍ରମଦା କେ ପୁନ ରଙ୍ଗେ ସରସ୍ୱତୀ ପ୍ରଭାସେ
ଅଚ୍ୟୁତ, ଅମ୍ଭ ମନକୁ ଏ ଆଭାସେ
ଆପୀଡ଼ିତ ଶର ଶରବ୍ୟ ଏ କୁଚ କଳଶ କ ହେତୁ ନ ଭାଷେ । ୨୩ ।

ଅସ୍ରୁପ ଦଗରେ ତସାର ଆଗରେ ପରବେଶ ପୁନ ହୋଇଲେ
ଅମ୍ବର ନଉଚ୍ଛଳ ବାଳ କରଣ ବାସ ସେବା ସେବ ବୋଇଲେ
ଆପଣେ, ଅତନୁଜତ କ ଅଇଲେ
ଅଙ୍କେ ଅଭିନବ ଗଉର ଧରଣ ମାରଯାନେ ଶୋଭା ପାଇଲେ ।। ୨୪ ।।

ବ୍ୟାଖ୍ୟାନୋପମେୟଂ — ଯଦୁକ୍ତଂ—

ଶ୍ଳୋକ — ନ ପଦ୍ମମୁଖମେବେଦଂ ନ ଭୃଙ୍ଗୋ ଚକ୍ଷୁଷି ଇମେ
ଇତି ବଶିଷ୍ଟ୍ୟାଦୁତ୍ତରୁ ବ୍ୟାଖ୍ୟାନୋପମା ଯଥା ।

ଅନଙ୍ଗ ଆଶ୍ରିତ କୃତ ଭ୍ରମେ ପ୍ରହାର କୁସୁମ ସାୟକ
ଅଶୋକ ଅଙ୍ଗୁଳି ସପ୍ରଭା କଳକ ନଖ ମଣ ବାଣ ପ୍ରାୟେକ
ଅଚ୍ୟୁତ, ଆମ୍ର ସଉରଭ କାମୁକ
ଅକ୍ଷି ଉତ୍ପଳ କମଳ ମୁଖ ମଣ ବାଣ ରଖେ ରତ ନାୟକ ॥ ୨୫ ॥

ଅତସୀ ଧନୁ ଭ୍ରୂରୁ ନୋହେ ଭ୍ରମର ଗୁଣ ନୋହେ ଲଞ୍ଜି ଅଞ୍ଜନ
ଅରଣ୍ୟ ପ୍ରସୂ ବାଣୀ ନୋହେ ଶ୍ୱାସ ଏ ନୋହେ ମଳୟ ପ୍ରଭଞ୍ଜନ
ଅଚ୍ୟୁତ, ଅଙ୍ଗ ସୁକେତକୀ ରଞ୍ଜନ
ଅନେକ କୁସୁମ ସୁଷମ ଘଜଇ ନୁହଇ ଏ ରତ୍ନ ଘଜନ ॥ ୨୬ ॥

ଅଳକ ହଶରେ ପାଶରେ ମିଳନ୍ତେ ଗୃହିଁ ଭୃଙ୍ଗବଦ୍ୟା ହରଷ
ଅମ୍ବୁଜ କୁମୁଦ ମାଳ ଦେଇ ମୁଦ କଳ୍ପିକା ବାଦନ ସରସ
ଅଙ୍କରେ, ଅଛନ୍ତି ଯା ବାସ ସାରସ
ଅବଳା ଶୋଭା ସରସ୍ୱାନ ଆନ୍ଦୋଳକ ମନ୍ଥନରେ ଜାତ ତରସ ॥ ୨୭ ॥

ଅନ୍ଧବର ପର ମଣିଲେ କ ବେଣୀ ଉରଜ ମଣିଲେ ମନ୍ଦର
ଅଭ୍ରମୁଂ ବଲ୍ଲଭ ଗତ ଦେଖି ଲୋଭ ଲଭରେ ହେବ ପୁରନ୍ଦର
ଅଚ୍ୟୁତ, ଅଧର ଅମୃତେ ସାଦର
ଅପାଙ୍ଗ ଷଷମ ଷପ ମନେକର ସନ୍ଧି ହୋଇବ କ ବ୍ଭତର ॥ ୨୮ ॥

ଅନୁକ୍ରୋଶ କରି ଅକ୍ରୋଶ ବଧିରେ ନ ମନ୍ଥ ଏ ନବ ଅବଳା
ଅଧିକେ ମରମେ ନସରମେ ପଶେ ତବ ନେତ୍ରପାତ ସବଳା
ଅଚ୍ୟୁତ, ଆମ୍ଭେ ନୋହୁଂ ରଣ ପ୍ରବଳା
ଆଲୋଚନା ସୁଲୋଚନା ଠାରୁଂ ତେଜ ଅଳତା ବ ନା ବନ୍ଧା ବଳା ॥ ୨୯ ॥

ଅଗ୍ନି ହଗରେ ବେଗରେ ପରବେଶ ଇନ୍ଦୁଲେଖା କଲେ ଅର୍ଚ୍ଚନ
ଆଦର ଆଦେଶ ସେବା ଆଚରି କହନ୍ତି ସରସ ବଚନ
ଅଚ୍ୟୁତ, ଆଗମ ମଧୁର ରଞ୍ଜନ
ଅଧାହାର ରତ ନାହାର ବସନ୍ତ ବାସ ଆମନ୍ତ୍ରନ କାଞ୍ଚନ ॥ ୩୦ ॥

ଅତ ସୁହୃଦ ପଣ ହେବ ଅପଣ ବାହାରଛ ମିନ ଛବରେ
ଅଶେଷ କୁସୁମ କାଣ୍ଡ ଦଣ୍ଡ ହଅ ପରାଗ କପଟ ଅବରେ
ଅଚ୍ୟୁତ, ଅଯୋଗୀ ଲେଖା ନୋହୁଂ ଯାରେ
ଅସହ ମାନ ମାନବନ୍ତ ହବିର ସହିବେ କ ରହି ହବରେ ॥ ୩୧ ॥

ଅର୍ଦ୍ଧାଙ୍ଗେ ମାରଜିତ ଉମା ରଖିଲେ ସ୍ମରହରେ ମୁଖ ଧାତାର
ଅକ୍ଷି ସହସ୍ରେ ଆଖଣ୍ଡଳ ଆଲୋକେ ବହୋଗେ ଭସ୍ମେ ବନିତାର
ଅଚ୍ୟୁତ, ଅମୃତ କର ରମା ତାର
ଅମରବନ୍ତ ହୋଇ ଭୁବ ବହୁବେ ସେ ହିମବନ୍ତ ଜାମାତାର ।୩୨ ॥

ଅସ୍ତୁ ପରମ ଶ୍ରେଷ୍ଠ ସଖୀ ଏ ପରଶ୍ଳେଷ ଛଳ ବନ୍ଧ ଭାରତୀ
ଅଧ ଊର୍ଦ୍ଧ୍ୱ ଯାନ ଭ୍ରମଣ ରମଣ ମଦନ ପ୍ରିୟା ଶୋଭା ରତି
ଅଚ୍ୟୁତ, ଧର ଧନୁଷ୍ଟାରେ ପୀରତି
ଆନ କେ ବୋଲେ ଉଚିତ ଏ ମକରଧ୍ୱଜ ଧନୁଷ୍ଟାରେ ମୁରତି ।୩୩।

ଅନୋଚିତ କାଞ୍ଚୁବଳୀର ହରଣ ଅତନୁର ବେଶ ପ୍ରସଙ୍ଗ
ଆହ୍ୱର ଦକ୍ଷିଣ ମୁଖ ହେଲେ ଦୁଃଖ ଏ ହେତୁ ଛେଜନ୍ତୁ ପ୍ରସଙ୍ଗ
ଅବଳା, ଆନ ବୋଲେ ରଙ୍ଗ ପିଶଙ୍ଗ
ଅହୁତ ବହୁତ କଲୁ ଯେଣେ ମାଭ ଶୂନ୍ୟ କରବ ଉପାସଙ୍ଗ ।୩୪।

ଆସି ଜ୍ୟେଷ୍ଠା ପାଶେ ମିତ୍ରଂ ବୋଲେ କ୍ଷମ ଦୋଷ ନୋହେ ଶଠ ରମଣ
ଅଭ୍ର ଇଭ କୁଚ କୁମ୍ଭର ଆରମ୍ଭ ମଧ୍ୟକୁ ଅଶନ ନ ମଣ
ଅରଣ୍ୟେ, ଆସେ ଇନ୍ଦୁ ହୋଇ ଭ୍ରମଣ
ଅପସର ଶଶିକଳା ଚନ୍ଦ୍ରଲେଖା ଗୋପିକା ନାମ ସାର ମଣ ॥ ୩୫ ॥

ଆନ କେ ବୋଲେ କନିଷ୍ଠା ଭୋଗୀ ହୋଇ ଜ୍ୟେଷ୍ଠା ନ କର ପରିଗ୍ରହ
ଅତନୁ ବାସ ପିପ୍ପଳ ମନ୍ଦ ବଦନ ବନା ଅଷ୍ଟରଣ ବଗ୍ରହ
ଆଶ୍ଳେଷ, ଆଲୋକ ରୂପ ଅବଗ୍ରହ
ଆଜ୍ଞୁଁ ମଦନ ଗୋପାଳ ନାମପାଳ ଗୋପୀଙ୍କି ନ କର ବିଗ୍ରହ । ୩୬ ।

ଆସି ମଞ୍ଜରୀଗଣେ ମଧ୍ୟେ ମିଳନ୍ତେ ପୂଜିଲେ ଯୁଗଳ ଚରଣ
ଅତନୁ ବସନ୍ତ ବାସ ହୋଇ କର ଆମ୍ରର ବୃଦ୍ଧ ଆଚରଣ
ଅଚ୍ୟୁତ, ଆମ୍ର କୁଚ କୁମ୍ଭ ବାରଣ
ଆଲୋକ ଖଣ୍ଡ ନଖାଙ୍କୁଶ କମ୍ପାଇ ଗ୍ରେଲେ ହୋଇ ଅପବାରଣ ।୩୭।

ଅକ୍ଷୟ ତୃଣ ଲକ୍ଷ ଲକ୍ଷ ନ,ଗତ ବୃଷ୍ଟି ଦେଖି କେନ୍ତୁ କହଇ
ଆଶୁରେ ମଞ୍ଜରୀ କମ୍ପିବା କ ଚନ୍ଦ କୁଚ ଗିରି କମ୍ପ ବହଇ
ଅଚ୍ୟୁତ, ଆମ୍ଭ ମନ ବୋଧ ନୁହଇ
ଅଟ ହରି ହରିଣାକ୍ଷୀ ବକ୍ଷ ଚିର ନଖ କଂଶୁକ ଏ ଶୋହଇ ॥ ୩୮ ॥

ଅକ୍ଷି ବାଣ ଘାତୁଂ ଏ କୁସୁମ ବାଣ ଅଧିକ ନକ କେ ଘଟିଲା
ଅଙ୍ଗ ସ୍ୱେଦ ସାତ୍ତ୍ୱିକରେ କୃଷ୍ଣଚନ୍ଦ୍ର ଦେଣୁ ଦ୍ରବୀଅ ଚୋଭଟୀଲା
ଅନଙ୍ଗ, ଅକୂପାରେ ତନୁ ଭାସିଲା
ଅକୋଳବନ୍ତ ହେଲେ କୋଳ ଦେ଼ଇକ ନ ତାରିବାରୁ ଆଭାସିଲା ।୩୯।

ଅର୍କଜା କୂଳରେ ସକଳ ଦୁକୂଳ ଶୋଧି କୂଳ ଘେନ ହରର
ଆଲୋକ ଧବୃଡ଼ ଚନ୍ଦ୍ରାପ ଜ୍ୟୋତି ଜଳମଧ୍ୟେ ଆସେ ଲହର
ଆଳ କେ, ଆଲୋକ ବୋଲେ ଦେଖ ହର
ଅସି ଧରି କାମ ଝମକାଇ ଏହା ମଧ୍ୟରେ ଲୁଚି ନ ଓହର ॥ ୪୦ ॥

ଅନ୍ତର ଲବେ ଜାଣିଲେ ଅବଲମ୍ବେ ଏହି ଶସ୍ତ୍ରେ ତନୁ ଭେଦବ
ଅଙ୍ଗୀକାର ଅଙ୍ଗୀକାର ପଟେରି ସିନ୍ଧିଲେ କେ ଜଡ଼ ଛେଦବ
ଅନଙ୍ଗ, ଅ × × ବେ଼ଲେ ଥିଲା ଜୀବ
ଅନୁକମ୍ପା ସ୍ଥାନେ ହୃଦ ସଂସୃଷ୍ଟକେ ଭରି ଏହୁ ଅର୍ଗ୍ ମୁଦବ ॥ ୪୧ ॥

ଆନ କେ ବୋଲେ ଆନ ନୋହେ ମଦନ ବହ୍ନି ଏହା ହୃଦେ ଜ୍ୱଳତ
ଅଶ୍ରୁ ଉତ୍ପଳ ମକରନ୍ଦ ବରଷି ନିଶ୍ଚଳ ନୟନ ଲଳତ
ଅଙ୍ଗରେ, ଅମ୍ବୁ କଣ ସ୍ୱେଦ କଳତ
ଆଲୋକେ ସ୍ତମ୍ଭ ଅମ୍ବୁରୁହ ରୋମାଞ୍ଚ ନାଦସ୍ୱର ଭଙ୍ଗ ମିଳତ ॥ ୪୨ ॥

ଅଧିକ ତରଙ୍ଗେ ବେପଥୁ ବୈବର୍ଣ୍ଣ ଅସିତ ପ୍ରଳୟ ରୂପରେ
ଆନ ବୋଲେ ଆମ୍ଭ ସପତ୍ନୀ ଏ ହ୍ରଦ ଜଳେ ମାନ ଜାତ ରୂପରେ
ଆନ କେ, ଆଣ ଦୃଷ୍ଟି ଏହି ରୂପରେ
ଅମ୍ବୁଦ କୋଟିଂ ଅଭ୍ରମାନେ ବଜୁଲି ଆସି ଲୁଚନ୍ତି ଏ ଆଗରେ । ୪୩ ।

ଆହତ୍ୟ କେ ବୋଲେ ସୂତା ଗର୍ଭେ ଲୁଚି ଦେଖେ ରାଧାକୃଷ୍ଣ ଲୀଳାକୁ
ଅମୃତ କର ଶଙ୍କର ସେବ ଦେଖେ ସୁରତେ ରତି କୁଶଳାଙ୍କୁ
ଅଧିକ, ଅଭାଗ୍ୟ ବଶରୁଁ ବାଳାଙ୍କୁ
ଆଲିଙ୍ଗନ ରତେ କେହି ମୋ ପୁରତେ ନାଚହନ୍ତି କାମ କଳାକୁ ।୪୪।

ଅନୁରାଗ ଲତା ବଶେ ମଞ୍ଜୁଳତା କେ ବୋଲେ ଯମୁନା ହ୍ରଦରେ
ଆରକ୍ତକରେ ବୃନ୍ଦା ବୋଲେ ଏ ପକ୍ଷୀ ରୁତ ହୁଳହୁଳି ସାଦରେ
ଆଳି ଯେ, ଅନୁରୂପେ ବାଣୀ ବାଦରେ
ଅତ୍ୟନ୍ତ ପ଼ରେ ରାଧା ରୂପେ ଅନେକ ମଜ୍ଜନ ମାଧୁର୍ଯ୍ୟ ମୁଦରେ । ୪୫ ।

ଅବରୋଧ୍ୱ ଏଷ୍ଣ କାଳରେ ମକର ଯାନ୍ତି କୃଷ୍ଣପ୍ରିୟା ସହରେ
ଅକ୍ଷୟ ତୂଣ ପୃଷ୍ଠ ବାଣ କମାଣ ଵୀରବେଶ ଯେତେ ଦେହରେ
ଆପଣେ, ଅଟବୀ ଦେବୀ ତା ସଂହରେ
ଆଭରଣ ଲଳିତାଦ କାନ୍ତ ଶୂନ୍ୟ ଦେହେ ରାଧା ନେଇ ବହରେ ।୯୭।

ଅଶନ ଦ୍ରୁତ ପକ୍ୱ ଯାହା ଯାକଷ୍ଟିଂ ଆଣିଥିଲେ ଘୃତ ବକାରେ
ଅମୃତକୁ ବାଦ ଆମ୍ର ଫଳ ଆଦ ବୃନ୍ଦା ଦେଲେ ବହୁ ପ୍ରକାରେ
ଅଚ୍ୟୁତ, ଅଧରାମୃତ ରାଧିକାରେ
ଅବଶେଷ ବେନ ଆଚମନ ଅନ୍ତେ ବାଣ୍ଟିଲେ ସବୁ ଗୋପୀକାରେ ।୯୨।

ଆଭରଣ ପୂତ ଅବାରଣ ଆଚରଣ ରଣ ରଣ ହକାରେ
ଆମନ୍ତ୍ରନ କର କବରୀ କୁସୁମେ ବେଶର ମଣ୍ଡି ନାସିକାରେ
ଆଳାପ, ଅଲକ୍ଷ ଏତ ଲସିକାରେ
ଆଦର ଶ୍ରୀ ଶ୍ୟାମସୁନ୍ଦର ଦେବର ହରପଦ ଭବ ଶଙ୍କାରେ ।। ୯୮ ।।



## — ଚତୁର୍ଥ କୁସୁମ —

॥ ଦ୍ୱିତୀୟ ଛାନ୍ଦ ॥

# ବିହାର ସୁରତ

( ରାଗ — ଦେଶାକ୍ଷ )

( ସଜନୀ ଚଉତିଶା ବାଣୀରେ )

ଅଚ୍ୟୁତ ପ୍ରିୟା ବସାଇ ଅଙ୍କରେ    ଅଙ୍ଗୁଳି ମଣ୍ଡି ଗୃହ୍ନ ଚିବୁକରେ
ଅଭିନବ ବାଣୀ ଆକାଂକ୍ଷା କରେ    ଆମ୍ର ଆଗମ ଯେମନ୍ତ ପିକରେ
ଅଙ୍ଗନା, ଆଜ ନବ ବାଣୀକି
ଅଳ୍ପ କହିବ ଭଙ୍ଗ ବୀଣା ଆଣିକ ॥ ୧ ॥

ଅଧର ପ୍ରବାଳ ଶୋଭେ ରାଗରେ    ଅଚ୍ଛୁ କୁଚ ତୁମ୍ଭି ବକ୍ଷଭାଗରେ
ଅଳି ଗୁଣାକର କଣ୍ଠ ରାଗରେ    ଆଶ୍ରୟ ତ ସରସ୍ୱଣ୍ଣ ବାଗରେ
ଅବଳା, ଅଦେହର ସଙ୍ଗୀତେ
ଅଭିଳାଷ ମାଦ ବିଳାସ ଗୀତେ ॥ ୨ ॥

ଅଙ୍ଗନା ମଧ୍ୟ ଭାବକୁ ରଖାଇ    ଅମୃତ ହାସ ନେତ୍ରକୁ ଚଖାଇ
ଅରଣ୍ଡି କୋରକ ଭ୍ରୂମେ ଦେଖାଇ    ଆପେ କର୍ଣ୍ଣ କାହା ରୂପ ଯୋଖାଇ
ଅଚ୍ୟୁତ, ଅବଲୋକି ଭାଷନ୍ତି
ଆବଳି ଚନ୍ଦ୍ରକଳା ଏ ଦଶନ୍ତି ॥ ୩ ॥

ଅଳପ ଆଳାପରେ ଛିଦ୍ର ପାଇ    ଅଙ୍ଗନା ବସେ କହେ ଭ୍ରୂ କମ୍ପାଇ
ଆଳସ୍ୟ ହୃଦେ ବିଚ୍ଛେଦ ନ ପାଇ    ରାଧିକେ ଲକ୍ଷ ନୋହିବ କମ୍ପାଇ
ଅଚ୍ୟୁତ, ଆଜ୍ଞା ଦେଲ ବିସ୍ତର
ଅନ୍ତେ ଚନ୍ଦ୍ରାବଳୀ ରୂପ ସଂହାର ॥ ୪ ॥

ଆଭାଷ ଶୁଣି ବଲ୍ଲଭ କାତରେ  ଆଶ୍ଳେଷ ଦେଇ ଅଶାନ୍ତ ରତରେ
ଅଙ୍କିତ ସ୍ୱାଦୁ ଗଙ୍ଗା ଅମୃତରେ  ଅମ୍ବୁଧି ସାର ଲେଖେ ରସୋତ୍ତରେ
ଅବଳା, ଅଷ୍ଟାପଦକୁ ଲଭ
ଆଉକୁ ଟେକ ସେ ନେବ ବଲ୍ଲଭ ॥ ୫ ॥

ଆଲସ୍ୟ ଯେଉଁ ମରାଳ ମାନସ  ଆନ ସରସୀର ସେବ ମାନସ
ଅମୃତ ଭୋଗୀ ଯେଉଁ ସୁମନସ  ଅତି ସ୍ୱାଦୁରେ ଲେଖେ କି ପନସ
ଅବଳା, ଅଳି ଦେଖାଇ ବନ୍ଧ
ଅଟେ ଏ କୃଜନ ପୁରୁଷ ବନ୍ଦୀ ॥ ୬ ॥

ଅତି ସୁଶାନ୍ତ ଦେଖି ଚାତକର  ଆପଗା ଅଛନ୍ତି ପଦ୍ମ ଆକର
ଆତପ ତୃଷା ଦାତା ତାପକର  ଆକାଶ ସାର ତା ସୁଖ ନକର
ଅଚ୍ୟୁତ, ଆପେ କହେ ମଧୁରେ
ଅଳି ଲାଳସୀ ଅଟଇ ମଧୁରେ ॥ ୭ ॥

ଅନ୍ୟାଙ୍ଗନା ବିଯୋଗ ସମାଧାନ  ଆନ ସୁମନ ନ କରେ ବିଧାନ
ଅମ୍ବୁଦ ଚାତକ ଅନୁସନ୍ଧାନ  ଆକାଶ ସ୍ଥାନ ନସ ଚୈନ୍ୟ ଆଧାନ
ଅବଲା, ଅଳି ପ୍ରାପ୍ତେ ଭ୍ରମଇ
ଆଜନ୍ମୁ ନ ଜାଣଇ ନ ରମଇ ॥ ୮ ॥

ଆଳାପ ଏପରି ପରିଭାଷଣେ  ଅତନୁ ସାୟକେ ଲଭେ କଷଣ
ଅଙ୍ଗ ଷଣ ସ୍ପୃଷ୍ଟ କରେ ଦୂଷଣେ  ଅମଣ୍ଡନ ହୋଇ ଗୃହ ଭୂଷଣେ
ଅବଳା, ଆଚ୍ଛାଦଲେ ତାରେ
ଅତି ମୁକ୍ତ ଶେଯ ମଞ୍ଜୁଳତାରେ । ୯ ।

ଧୀର ଲଳିତ ନାୟକୋ ଯଥା — ଉକ୍ତଂ ଚ

ଶ୍ଳୋକ — ବିଦଗ୍ଧନବତାରୁଣ୍ୟପରିହାସବିଶାରଦଃ
ନିଶ୍ଚିନ୍ତୋ ଧୀର ଲଳିତଃ ସ୍ୟାତ୍ ପ୍ରାୟଃ ପ୍ରେୟସୀ ବଶଃ ।୧।

ଅନନ୍ତ ନାୟକ ଧୀର ଲଳିତ  ଅପାର ପ୍ରେମ ନୋହେ କଳିତ
ଅଞ୍ଜନରେ ହରିତାଳ ଦଳିତ  ଅଙ୍ଗେ ଅଙ୍ଗେ ଏହି ଶୋଭା ମିଳିତ
ଅଚ୍ୟୁତ, ଆରମ୍ଭିଲେ ରତିକି
ଆପୀଡ଼ନ ସ୍ତନ ହରେ ମସ୍ତକ ॥ ୧୦ ॥

ଆନମିତ କତ ଆକର୍ଷଣ        ଅଦ୍ଭୁତ ସୁଖ ହୋଏ ବରଷଣ
ଅଧିକ ନଖଘାତେ ଘର୍ଷଣ        ଅତନୁ ରସେ ଜାତ ହରଷଣ
ଅଚ୍ୟୁତ, ଆପେ ବନ୍ଧ ମୂରତି
ଆଶ୍ରୟ କାରେ ଆରମ୍ଭି ସୁରତି ॥ ୧୧ ॥

ଆନନ୍ଦେ ରସିଲେ କାମରସରେ        ଅମୃତକର ଉଦେ ଆକାଶରେ
ଅଙ୍ଗନା ଆରତ ନଥା ବାସରେ        ଅମୂର୍ଚ୍ଛିତ ନେହ ତାମରସରେ
ଅବଳା, ଅମ୍ବରକୁ ଲୋଡ଼ଇ
ଆମ୍ରେଶ୍ୱର ଜାଣି ଗାଢେ ଭିଡ଼ଇ ॥ ୧୨ ॥

ଅଧିକ ବାରେ ହୁଅ ପରସନ        ଆକାଂକ୍ଷା କାମ ଗୃହରେ ଶୟନ
ଆଶ୍ଳେଷ ରସନାରେ ଦଂଶି ଦଶନ        ଆଶ୍ଳେଷ ଜଂଘେ ଛନ୍ଦ କରେ ବସନ
ଅବଳା, ଅଙ୍ଗ ସଉଦାମିନୀ
ଅତି କମ୍ପାଇ ଅର୍ଜୁନ ଯାମିନୀ ॥ ୧୩ ॥

ଆଣି କରେ ଧରି କର୍ପୂର ରଜ        ଆକ୍ଷିପ୍ତ ନାୟକ ଅକ୍ଷି ନୀରଜ
ଆଲିଙ୍ଗନେ ପତି ଧରେ ଉରଜ        ଅତି ବନିତାରେ ବୋଲେ ବରଜ
ଅଚ୍ୟୁତ, ଆଜ ଏ ନିଶୀଥରେ
ଆସିବ ନାହିଁ ଜାଣିଥାଅ ଥରେ ॥ ୧୪ ॥

ଆମ୍ରେଶ୍ୱର ବେଗେ କରି ଚରମ        ଅମ୍ବର ପିନ୍ଧେ ହୋଇ ସଭ୍ରମ
ଆମୁକ୍ତ କୁନ୍ତଳ କ ମନୋରମ        ଅମ୍ବୁଦ ଘୋଡ଼ାଇ ଦେଲା ଚରମ
ଅବଳା, ଅକ୍ଷି ସଂକୋଚିତରେ
ଅନାଇବା ଭଙ୍ଗୀ ରହେ ଚିତ୍ତରେ ॥ ୧୫ ॥

ଅଟବୀ ଦେବୀ ଶୀତ ଉପଚାରରେ        ଅଙ୍ଗ ଶ୍ରମ ସ୍ୱେଦ ଶାନ୍ତ ପଚାରରେ
ଆପଣାଗଣ ସ୍ନେହ ସମାଚାରରେ        ଅଷ୍ଟସଖୀ ନିଜ ସେବା ପଚାରରେ
ଅଚ୍ୟୁତ ଅଙ୍ଗେ ସେବା ତତପରେ
ଅତ୍ୟନ୍ତ ମଞ୍ଜୁଷା ଏ ସମୀପରେ ॥ ୧୬ ॥

ଅରଣ୍ୟ ମଧ୍ୟେ ଏ କାଳେ ଭ୍ରମଣି        ଆଳି ସଙ୍ଗେ ଘେନ ବର ରମଣୀ
ଅର୍କଜା ଜଘନ ପୁଳିନ ମଣି        ଆସେବିଲେ ଗୋପ ରଜନୀ ମଣି
ଅଚ୍ୟୁତ, ଅବଲୋକିଲେ କୂଳ
ଅଟେ କେବଳ ବଟପୀ ସଂକୁଳ ॥ ୧୭ ॥

ଅଜସ୍ର ନବଢ଼ ଗଡ କାମର ଅପସରନ୍ତ ଦୂରନ୍ତୁ ଅମର
ଅଟେ ସାଳ ସାଳ ଶୋଭା ଧାମର ଆସ୍ରବ ପ୍ରତିହାର ଏ ଭ୍ରମର
ଅର୍କଜା, ଅଟେ ପରଖା ଧାର
ଅଚଳ ଚଳ ନାହିଁ ବସୁଧାର ।। ୧୮ ।।

ଅଟେ ବସନ୍ତ କାମ ସେନାପତି ଅଶ୍ୱ ମାତଙ୍ଗ ସ୍ୟନ୍ଦନ ସମ୍ପତ୍ତି
ଅଛନ୍ତି ଶକୁନ୍ତ ନଶାଦ ପନ୍ତି ଅଜନ ଯୋନ ଆଦ୍ଧ ସଙ୍ଗେ ପତ୍ତି
ଆନକ, ଅଶୋକାଦ୍ଧ ସ୍ତବକ
ଆସ୍ରବ ରଚତ ପକ୍ଷୀ ସେବକ ।। ୧୯ ।।

ଅଗସ୍ତି କଳ କଳ ଶରାସନ ଅଟେ ପାଟଳ ତୂଣ ପରସନ
ଆମ୍ର ଆଦ ବାଣେ ଦେବ ଶାସନ ଅର ବଞ୍ଜୁଳ ଏ ଅର ନାଶନ
ଆଡ଼େଣି, ଅଟେ ଗୃନ୍ଥ ଚରାଟ
ଅସି କଂଶୁକ ଧରେ କାମରାଟ । ୨୦ ।

ଅଧିକ କୁନ୍ତ କେତକୀ ସ୍ରଜତ ଆୟୁଧ ଚମ୍ପକ ଶଳେ ବଜତ
ଆର୍ତ୍ତିଗଳ ଗଦା ଯୋଟଗ ଅର୍ଜିତ ଅଛୁ ସେବନ୍ତୀ ମୁଦ୍‌ଗର ଊର୍ଜିତ
ଆଲୋକ, ଅଛୁ ପରଘ କୁନ୍ଦ
ଅଳ ପୁଙ୍ଖେ କାହାଳ ମୁଚକୁନ୍ଦ । ୨୧ ।

ଅଦ୍ଭୁକ ଏ ଅଟେ ନଟକାର ଅରଣ୍ୟ ପ୍ରିୟ ଗାୟକ ଆକାର
ଅଛୁ ଶୁକ ପୌରାଣିକ ସ୍ୱୀକାର ଅମାତ୍ୟ ପାରାବତ ଅଧିକାର
ଅଧିକେ, ଅଟେ ଶାରୀ ପଣ୍ଡିତ
ଅନ୍ୟ ପକ୍ଷୀ ଭୃତ୍ୟରୂପ ମଣ୍ଡିତ ।। ୨୨ ।।

ଅଛୁ ଟିଟ୍ଟିଭ କୋଟପାଳ ପଣ ଅଟେ ଡାହୁକ ଡାକୁଆ ଆପଣ
ଆସିବ ବଟର ବାର୍ତ୍ତା ଅପିଣ ଅଧିକାର ହଂସାଦ ପଣ ପଣ
ଅନଳ, ଅଧିକାର ବଗୁରେ
ଅମୃତାଂଶୁ ମିତ ସ୍ୱତୋପଗୁରେ । ୨୩ ।।

ଅନଙ୍ଗ ଦୁର୍ଗେ ଏପରି ଖଟନ୍ତି ଅବଲୋକ ଯୁବା ଧୀର ଭୁଟନ୍ତି
ଅଧିକେ ସର୍ବ ସୁମନ ଫୁଟନ୍ତି ଆଶବ ମତ୍ତେ ମଧୁପ ରଟନ୍ତି
ଅଚ୍ୟୁତ, ଅଭିନବ ମଦନ
ଅଜା ଦୁର୍ଗ କ ଜଣି ସଦନ ।। ୨୪ ।

ଆସି ପକ୍ଷୀ ମୃଗ ସେବେ ସେବାରେ    ଆସବ ଶୁଭ୍ର ସ୍ୱଚ୍ଛ ପିବାରେ .
ଅଗ ନମି ତୋଷ ଫଳ ଦେବାରେ    ଅଶେଷ ପୁଷ୍ପଲବ୍ଧ ଲତା ବାରେ
ଅଚ୍ୟୁତ, ଆସି ପୁଷ୍ପ ତଳ୍ପରେ
ଆସେବ୍ଧ ପୁଣ୍ଡରୀକ ମଣ୍ଡପରେ ॥ ୨୫ ॥

ଅଷ୍ଟସଖୀ ନିଜ ସେବା ସେବନ୍ତ    ଅଧିକେ ବଳ୍ଲଖି ଶୋଭା ସ୍ତବନ୍ତ
ଅକ୍ଷି ଲାବଣ୍ୟ ପୀୟୂଷ ପିବନ୍ତ    ଆନ ପାନରେ କ୍ଷଣେ ନ ଜିବନ୍ତ
ଅଙ୍ଗନା, ଅଧୀନରେ ଆବେଶ
ଅଙ୍ଗେ ବସାଇ କରନ୍ତି ସୁବେଶ । ୨୬ ।

ଆଣି ପ୍ରସାଧିକ ଗୁରୁ କେଶରେ    ଅଳ୍ପ ଗୃଳ ଜୁଡ଼ା ରଞ୍ଜି ତୋଷରେ
ଆମନ୍ତ୍ରନ ପୁଷ୍ପମାଳ ବଂଶରେ    ଅତି ଶୋଭନ ଝିଗ ତସିସରେ
ଅବଳା, ଅର୍ଦ୍ଧଚନ୍ଦ୍ର ଭାଲରେ
ଆପେ ତିଳକ ଲେଖି ମଞ୍ଜୁଳରେ । ୨୭ ।

ଆମନ୍ତ୍ରନ ନାକ ନଥ ବେଶରେ    ଅଳକା ଆଦ୍ଧ ଖଞ୍ଜି ହରଷରେ
ଅର୍ପିତେ ତାଟଙ୍କ କର୍ଣ୍ଣ ପାଶରେ    ଆଲମ୍ବିତ ହାର ଉରଦେଶରେ
ଅଚ୍ୟୁତ, ଅଙ୍ଘ୍ରି ମଣ୍ଡୁ ହରଷେ
ଅଙ୍ଗନା ନିଷେଧ କର ସାରସେ ॥ ୨୮ ।

ଆଣି କସ୍ତୁରୀ ଦଳ ମକରୀକ    ଅମର ନିବାସ କୁଚ ଗିରି କ
ଅଧିକାର ଚନେ ମାଗୁଂ ଗୋରକ    ଆନନ କମ୍ପାଇ ପାଇ ହରକ
ଅଙ୍ଗନା, ଆଣ୍ଟେ ଟେଳି ଭିଡ଼ଇ
ଅଚ୍ୟୁତ କରଜ ଚିପି ଫେଡ଼ଇ ॥ ୨୯ ।

ଅଳ୍ପ ନଖ କଣ୍ଠ କକ୍ଷ ଦେଶରେ    ଅବଳା ମକ୍ଷିଲ୍ଲ ଅତି ହାସରେ
ଅବକାଶ ପାଇ ଏ ଅପସରେ    ଆଣି ରଖି ଶମ୍ଭୁ ଢଗବାସରେ
ଅଙ୍ଗନା, ଅବଲୋକଇ ନାହିଁ
ଅନ୍ୟେ ଦୋଷ ବ୍ୟାଜେ କରଇ ନାହିଁ । ୩୦ ।

ଆନନ ଶୋଭା ଚୁମ୍ବି ଉସ୍ରୁକରେ    ଅତି ପଦ୍ମମା ତ୍ରିବଧାନ କରେ
ଅଙ୍ଗୁଳି ଦେଇ ଗୁରୁ ଚିବୁକରେ    ଅନୁରାଗେ ବୋଧି ଗୃଣ୍ଠୁ ସ୍ତବକରେ
ଅଙ୍ଗନା, ଅନଙ୍ଗର ଏ ଦୃଶ
ଅଜସ୍ର ଜସ୍ର କଲ୍ପ ତବ ଦୃଶ । ୩୧ ।

ଅନୁସରି ଅଛୁ ଏ ଆଶୟରେ      ଅନୁଗ୍ରହ ଥିବ ତୋ ବିଷୟରେ
ଅମୃତ କରି ନଖି ଆଶ୍ରୟରେ      ଅତୁଳ ମଞ୍ଜୁଳ ନିଃସଂଶୟରେ
ଅଙ୍ଗନା, ଅନ୍ତ ହେଲେ ଯାମିନୀ
ଅହରେ କି ହୋଇବୁ କୁହ କାମିନୀ । ୩୨ ।

ଆଭାସ ଏହିପରି ସରସରେ      ଆବେଷ୍ଟିତ କରି କଣ୍ଠଦେଶରେ
ଅନାବୃତ ହୋଇ କୁସୁମ ଶରେ      ଆସି ପରବେଶ କୁଞ୍ଜବାସରେ
ଅଧିକ, ଅକଥନ ଯେ ଶେଷେ
ଅଛନ୍ତି ମଣ୍ଡି ଶ୍ରୀ କୁଞ୍ଜ ବିଶେଷେ ।। ୩୩ ।

ଅଷ୍ଟସଖୀ ଅଷ୍ଟଦଳ କୁଞ୍ଜରେ      ଅଖଣ୍ଡଳ କୁଞ୍ଜେ ଚିତା ସଜରେ
ଅନଳେ ଚନ୍ଦ୍ରରେଖା ବିରାଜରେ      ଅନ୍ତକେ ଚମ୍ପକଲତା ଉଜରେ
ଅସ୍ତ୍ରପ, ଆଗ୍ନେ ରଙ୍ଗେ ଦେବୀ ଯେ
ଅମ୍ବୁପତିରେ ତୁଙ୍ଗବିଦ୍ୟା ବିଜେ । ୩୪ ।

ଅନଳ ବିଗେ ସୁଦେବୀ ଶୋହନ୍ତି      ଆନ ଲଳିତା ଉତ୍ତରେ ରହନ୍ତି
ଅନଙ୍ଗଜିତ ବିଶାଖା ମୋହନ୍ତି      ଆଗ୍ନେୟ ଅସଖ୍ୟ ଗୁଣା ନୁହନ୍ତି
ଅଦ୍ଭୁତ, ଅନେକ ରୂପ ହରି
ଅନଙ୍ଗ ପରି ନାଗରେ ବିହରି ।। ୩୫ ।

ଆନ ନ ଜାଣେ ଏ କରି ସୁରତି      ଅନ୍ତେ ପାଞ୍ଚ କୃଷ୍ଣ ମୋରେ ପିରତିଁ
ଅଳ୍ପ ପ୍ରକାଶେ କି ଯିବ ବିରତି      ଆଜ ହେବ ପରିହାସେ କିରତି
ଅବଳା, ଅତିଶୟ ଲୁବ୍ଧଇ
ଅଧର ଉରଜ କ୍ଷତ ବଞ୍ଚାଇ । ୩୬ ।

ଅଚ୍ୟୁତ ଅଙ୍ଗ କେ ମଣ୍ଡି କ୍ଷତରେ      ଆପେ ବୋଧେ ପରିହାସ ଛଳରେ
ଆନ ଦେଖିଲେ ଯେ ମାର କାତରେ      ଅଙ୍ଘ୍ରି ଧସ୍ତଇବ କ୍ଷଣ ଭିତରେ
ଅଚ୍ୟୁତ, ଅଳକା କପୋଳରେ
ଅରୁଣ ପଦ୍ମ ସଜବ ବଳରେ ।। ୩୭ ।।

ଅଚ୍ୟୁତ ରାଧା ବିଜେ ଶ୍ରୀକୁଞ୍ଜରେ      ଅଧିକ ମଣ୍ଡଣି ଶୋଭା ପୁଞ୍ଜରେ
ଅବରଣ ଚନ୍ଦ୍ରାତପ କଞ୍ଜରେ      ଅମୂଲ୍ୟ ପଲଙ୍କ ପୁଷ୍ପ ଶେଯରେ
ଅଚ୍ୟୁତ, ଅଙ୍କେ ଧରି ବଲ୍ଲଭି
ଆନନେ ଚୁମ୍ବ ଦେଇ ସୁଖ ଲଭି । ୩୮ ।

ଅନିଳ ମନ୍ଦ ପୁଷ୍ପ ଗବାକ୍ଷରେ ଆଗ୍ରତ ଭିନ୍ନ ଜ୍ୟୋତ୍ସ୍ନା, ବଳକ୍ଷରେ
ଆଉଜାଇ ପଟ ଧରେ ବକ୍ଷରେ ଆଶ୍ଲେଷ କରାଇ ମନ୍ଦ ଅକ୍ଷରେ
ଆଲୋକେ, ଅଳ୍ପ ଚନ୍ଦ୍ରାତପରେ
ଆପଣ ବର୍ଣ୍ଣଇ କାନ୍ତ ଉପରେ । ୩୯ ।।

ଅନା ବୋଲୁଁ ନ ଅନାଇ ରମଣୀ ଅଭ୍ୟାସେ ନତ କୁମୁଦ ଦ୍ୟୁମଣି
ଆଜ ନସ୍ଥ ବୋଲୁଁ ନାସିକାମଣି ଅଙ୍ଗ କମ୍ପାଇ ମୁଖ ନଶାମଣି
ଅଚ୍ୟୁତ, ଆପେ ବନ୍ଧ ଠାଣିରେ
ଆଣି ରଖିଲେ ଶୁଆଇ ଅଙ୍କରେ ।। ୪୦ ।

ଅଚ୍ୟୁତ ବୋଲେ ଗୋ ଷୋଷ୍ୱ ଭବନ ଅଭିଳାଷ ଦଅଂ[୧] ସନ୍ତୁ ଚୁମ୍ବନ
ଅମ୍ବୁଜ ରକ୍ଷଣ ଯଥା ଜୀବନ ଅନୁବନ୍ଧ ତଥା ମମ ଜୀବନ
ଅବଳା, ଅକ୍ଲେ ପ୍ରୀତି ଜନନ
ଅଧର ନବେଦଶେ ତ୍ରପୁ ଆନନ । ୪୧ ।

ଅକପ ଦେଲା ନ ଦେଲା ପରରେ ଆମଞ୍ଜନ ହୋଇ ହଣ ବାରରେ
ଆଶ୍ଲେଷ ମାଧବ ବିମ୍ବାଧରରେ ଅଣିମାଦ ଭୋଗ କି ଶରୀରରେ
ଅଚ୍ୟୁତ, ଅତନୁ ରସେ ରସି
ଅସୀଷ୍ଟେ ହଂସକ ମାନ ସରସୀ । ୪୨ ।

ଆସି ମହାନଶା ପରବେଶରେ ଅଚ୍ୟୁତ ରାଧା ନଦ୍ରା ଆବେଶରେ
ଅକ୍ଷି ଘୂର୍ଣ୍ଣିତ ତନୁ ଅବଶରେ ଆଉଜ ବକ୍ଷ କୁଚ ଅପସରେ
ଅଚ୍ୟୁତ, ଆଚମ୍ଭିଲେ ଶପ୍ନନ
ଆଲିଙ୍ଗନ ପ୍ରିୟା ମୁଦ୍ର ନୟନ ।। ୪୩ ।

ଅଞ୍ଜନ କି ହରିତାଳେ ମିଶିଲେ ଅସିତ ଘନେ ବିଜୁଳି ଦିଶିଲେ
ଅଷ୍ଟାପଦ ରାଜ ପଟ୍ଟେ କହିଲେ ଆଖଣ୍ଡଳ ମାଣ୍ଡୁ ହେମେ ବସିଲେ
ଅଙ୍ଗନା, ଆନନରେ ଆନନ
ଅଧିକ ପ୍ରେମରେ ସମ ଆନନ ।। ୪୪ ।

---

୧ । ଦଅଇ (ପୋଥିପାଠ)

ଅରଣ୍ୟ ଦେଖି ପ୍ରାତ ଆଗତରେ ଆରମ୍ଭେ ଶୁକଶାରୀ ଜାଗ୍ରତରେ
ଅଚ୍ୟୁତ ନାମ ଧରି ତରତରେ ଆଳସ୍ୟ ତେଜ ପଡେ଼ ନିରନ୍ତରେ
ଆଲୋକ, ଆସି ବନି ବିରାମ
ଆମୁଞ୍ଚ ପ୍ରିୟା ସଙ୍ଗ ଅଭିରାମ ॥ ୪୫ ॥

ଛାନ୍ଦ— ଆହେ କୃଷ୍ଣଚନ୍ଦ୍ର ପାଦ ସଗ୍ଗର ଆରୋରଗ ରାଧା ଡେକବା ବଗ୍ଗର
ଆଶା ନୋଦ୍ଧଂ ଅନୁରାଗୀ ପ୍ରବର ଆଳସ୍ୟ ଗୁରୁ ରତ୍ନତୋପଚର
ଅକାର, ଅପହତ ଜ୍ୟୋତ୍ସ୍ନାରେ
ଆଦ୍ୟେ ସମ୍ଭିଳନୀ ଚର ନିଷ୍ଠାରେ ॥ ୪୬ ॥

ଅକ୍ଷି କରେ ମର୍ଦ୍ଦି ଉଠି ଦମ୍ପତି ଅଳ୍ପକେ ନଶିଲା ଇନ୍ଦ୍ର ସମ୍ପତି
ଅଙ୍ଗ ସଙ୍ଗ ଭଙ୍ଗ ଭୟେ କମ୍ପନ୍ତି ଆଶ୍ଳେଷ ଆନନେ ଚୁମ୍ବନ ପନ୍ତି
ଅଙ୍ଗନା, ଅନ୍ତରିତ ସଙ୍ଗରୁ
ଅଧିକ କି ଯିବ ଯିବା ଅଙ୍ଗରୁ ॥ ୪୭ ॥

ଅରଣ୍ୟେ ଦେଖି ଜନମାଇ ଦର ଅତି କଷ୍ଟେ ସେ ସୁନ୍ଦରୀ ସୁନ୍ଦର
ଆଗ ପଦ କରି ପଛେ ଆଦର ଆସି ପରବେଶ ମନ୍ଦିରେ ଦର
ଅଚ୍ୟୁତ, ଅଙ୍ଘ୍ରି ନାବ ଭବର
ଆଶ୍ରୟ ଶ୍ୟାମସୁନ୍ଦର ଦେବର ॥ ୪୮ ॥

ଇତି ଶ୍ରୀ ଅନୁରାଗ କଳ୍ପଲତା ପଞ୍ଚମ ସ୍ତବକ ଚତୁର୍ଥ କୁସୁମ ଦ୍ୱିତୀୟ ଛାନ୍ଦ ସମାପ୍ତ ।



— ପଞ୍ଚମ କୁସୁମ —

# ଆଠ ଚଉପଦୀ

( ଏକ )

## — ମୁଗ୍ଧା ଲକ୍ଷଣ-ରଢୌବାମା —

॥ ରାଗ—ଭୈରବ ॥

( ଛାଳ—ଷଣ୍ଣମାନ )

ଆହେ ପ୍ରିୟ ସଖା ନବ ରାମା ଶାନ୍ତ ମନ ହରେ ।
ଆଜି ଯେ ଦେହଳି          ବଳାଇଲେ ବାଳୀ
ନ ବଢ଼ାଇ ପାଦ ସନ୍ଦେହରେ । ପଦ ।

ଅତି କଷ୍ଟେ କେଳି ପୁରେ          କଲେ ନ ରହିଲା ପୁରେ
ଗମେ ପୁନ ସଖୀଙ୍କ ସହରେ
ଆଣ୍ଟରେ ପୃଷ୍ଠ କବାଟ          ଦେଉ ନ ପାଇଲା ବାଟ
ଉଭା ପୃଷ୍ଠ କରି ମୋ ମୂର୍ଦ୍ଧରେ । ୧ ।

ଆଣି ବସାଉଂ ଅଙ୍କରେ          ଆଳିଙ୍ଗନ ନିଃଶଙ୍କରେ
ବନ୍ଧିଥିଲା କମ୍ପକୁ ଦେହରେ
ଆଦରଣ ଖଣ୍ଡେ ଦଣ୍ଡ          ଦେଉଥିଲା ଝୁଲ ଗଣ୍ଡ
ଢୁଙ୍କାଇଲା ଚୁମ୍ବ ସମୁଦ୍ରରେ । ୨ ।

ଅବୁଝ ପରାଏ ହୋଇ          ଗୃହ୍ଣୁ କର୍ଣ୍ଣେ ନ ଶୁଣଇ
ବିକାରି ବଢ଼ାଇ ବିଦେହରେ
ଆତୁରେ କାମ କାତରେ          ମାଡ଼ି ଫେଡ଼ୁଂ ଚିରତରେ
ନିଷେଧିଲା କରରେ ପ୍ରହାରେ । ୩ ।

ଅବସ୍ଥବ ସ୍ତକଣ୍ଠରେ ନ ଚଳ ହାର କାଚରେ
ପ୍ରତିବନ୍ଧ ବନ୍ଧ ନର୍ବାହରେ
ଅପାଙ୍ଗ ରଖିଲ୍ଲି ଡୋଳା ଚଳି ନ ହେବାରୁ କଳା
ମୁଖ ନରସେ କାମ ଦାହରେ । ୪ ॥

ଅଙ୍ଗ ମଧ୍ୟକୁ କମ୍ପାଇ ନଖ କ୍ଷତାଙ୍କ ପାଇ
ସ୍ୱରପୁରେ ରଙ୍ଗେ ନ ବହରେ
ଅରଣ ଶ୍ୟାମସୁନ୍ଦର ଦେବର ଶ୍ୟାମସୁନ୍ଦର
କ୍ରୀଡ଼ଇ ମୋ ହୃଦସ୍ଥ ଗେହରେ । ୫ ।

---

( ଦୁଇ )

— ଅଜ୍ଞାନ ସୁରତା —

॥ ରାଗ — ସିନ୍ଧୁ ଦେଶାକ୍ଷ ॥

॥ ତାଳ — ପହପଠ ॥

ଆଜ ମୁଁ ଅଭିନବ ନଧୁ ବନେ ଗୋ ।
ଅତନୁ ମାଦକ ଅନାସ୍ୱତ ପ୍ରିୟ ମୁଖ ମଣ୍ଡିଳ ଚୁମ୍ବନେ ଗୋ । ପଦ ।

ଅଜଣା ଯେଣୁ ବଣା ହେଲ ପନ୍ଥା ମୁଁ ପଡ଼ ରତି ମହା ବନେ
ଅଚଳ ଲାଜ ଚଳଦଳ ଚଞ୍ଚଳ ଉଡ଼େ ଅଧୈର୍ଯ୍ୟ ପବନେ ଗୋ । ୧ ।

ଅମ୍ବରହୀନ କପଟ ହେଲା କାମ ନଦୀରେ ଚେତା ପ୍ଲବନେ
ଅସମ୍ଭବ କାନ୍ତ ନେହ ପଡ଼ିଥିବ ପଗ ମଦନ ଉଦବନେ ଗୋ । ୨ ।

ଅଧରୁ ଅମୃତ ହର ନେଲେ ହର ମନସିଜ ସଞ୍ଜୀବନେ
ଅପହୃତ ଜ୍ଞାନ କି କଲି କି ହେଲା ମୀନକେତନ ସେ ବନେ ଗୋ । ୩ ।

ଅପସର ଧୈର୍ଯ୍ୟ ଅବସ୍ଥା କାଳରେ ଦେଲି ମୁଁ ଅଛୁ ଜୀବନେ,
ଅଧିକେ ଶ୍ୟାମସୁନ୍ଦର ଦେବ ବୋଲେ ମଜ୍ଜିଲି ଭାବ ଭୁବନେ ଗୋ । ୪ ।



( ଓଡିଶୀ )

## — ମାନେ ମୃଦୁ —

॥ ରାଗ — ଧନାଶ୍ରୀ ॥

ଅସୂୟା ସପତ୍ନୀ ବସେ ଏକ ବଦନେ
ଅପରାଧ ହେଜ ମୋ ବସିଲୁ ମାନେ ॥ ୧ ॥

ଅଶ୍ରୁଜାତ ପରି ନେଣ ପୋଛେ ବାସେ
ଅନ୍ତେ ପ୍ରେମ ଜରଜର ଏ ଆଭାସେ ॥ ୨ ॥

ଆଳି ଅତି କହନ୍ତେ ପରୁଷ ବାଣୀ
ଆରକ୍ତ ଚକ୍ଷୁ ହୋଇଲୁ ବାଣାପାଣି ॥ ୩ ॥

ଅଳ୍ପ ପ୍ରକାଶନ୍ତେ ଗୃଢ଼ ଭାନୁକର
ଅମ୍ବୁଜ ମୁଖ ମୁକୁଳ ଶୋଭାକର ॥ ୪ ॥

ଅଙ୍ଗୁଳି କ ପ୍ରେମେ ଦେଇ ଚିବୁକରେ
ଅପସରି ଗଲୁ ମାନ ଲକ୍ଷ ଦୂରେ ॥ ୫ ॥

ଅଞ୍ଚଳ ଧରୁ ଜଟିଳା ସମାଗତ
ଆଳସ୍ୟକୁ ଗମିଲେ ସେ ବରସୁତ ॥ ୬ ॥

ଅମୃତ ଉତ୍ସୁକ ନ ପାଇ ତାପ ସହେ
ଅଳପ ଶ୍ୟାମସୁନ୍ଦର ଦେବ କହେ ॥ ୭ ॥



( ଗ )

— ମଧ୍ୟା ଲକ୍ଷଣ —

## ପ୍ରରୂଢ଼ ଯୌବନା

।। ରାଗ — କାଫି ଝିଞ୍ଜିଆର ।।

( ତାଳ— ଝୁଲତାଳ )

ଅମୃତ କର କରଣେ ଘନେ ବ୍ରତ ଆଚରଣେ
କୁସୁମ ଚଳଚ୍ଚେ ମନୋରମା
ଅର୍ଜୁନ ସବେ ଉଦ୍ଯତ ପର ଅଙ୍ଗ ଦ୍ୟୁତ ଦ୍ୟୋତ
କାମେ କମ୍ପୁଥିଲ୍ କେତେ ବରଷ ସେ ।।ଘୋଷା।।
ଅକ୍ଷି ଯୁଗଳ ଅଣିମାଦ୍ଧ ଲାଭ ଲଭୁଥିଲ୍ କେବଳ
ଅଭିମତ ସିଦ୍ଧ ହେଲ୍ କାମ ସଫଳ ।। ୧ ।।

ଅନଙ୍ଗ ମଙ୍ଗଳ ହେମ କୁମ୍ଭ ଉରଜ ସୁଷମ
ପାଣି ପୃଷ୍ଠେ କଲ୍ ଭାଗ୍ୟବଳେ
ଅର୍ଦ୍ଧଚନ୍ଦ୍ର ମୁଦ୍ରା ତକ୍ଷ ନଖ ଲେଖରେ ଅଲେଖ
କେଉଁ ସୁଖ ଜାତ ନୋହିଲ୍ ସେ କାଳେ ସେ ।୨।

ଆକରଷଣେ କୁନ୍ତଳ ଫିଙ୍ଗି ଲେଟିଥିଲ୍ ତଳ
ଚଳପ ନ ଚେଜ ଶ୍ୟାମଘନ
ଅରୁଣ ଜୀମୂତ ପର ଉଗ୍ରାନ କର କଣେ।ଙ୍କ
ବଢ ବଢ ଶଙ୍ଖ ଧନୁର ଶୋଭନ ସେ । ୩ ।

ଅମ୍ବର ବହ୍ନେ ସୁର ଅଗାର ନୋହେ ବନ୍ଧୁର
ରାଜେ ମାରକତ ମୀନାଲତା
ଆଖଣ୍ଡଳ ମଳ ହେମ ପଦକେ ବସାଇ କାମ
ବସ୍ତି ରୋମାଳ ଗୁନ୍ଥିଛୁ କଳାସୃତା ସେ । ୪ ।

ଅପସବ୍ୟ ସବ୍ୟେଶର ବନ୍ଧ ଶିଖେ ପଞ୍ଚଶଙ୍କ
ହେନ ଢଙ୍ଗେ ଖେଳାଇ ନୟନ

ଅମୃତ ମୟୂଖ ସୁଧା ଦେଉଥିଲା କରି ଶ୍ରଦ୍ଧା
ତଥା ମନ୍ଦହାସେ ପ୍ରସନ୍ନ ଆନନ ସେ । ୫ ।
ଅଧିକ ମଧୁରେ ନାହିଁ ନାହିଁ ଘଟିବାର ସନ୍ଧି
ଇଚ୍ଛା ବାଣୀ ବୀଣା ଜଣିମାରେ
ଅନ୍ତରେ ଶ୍ୟାମସୁନ୍ଦର ଦେବ କରଇ ବର୍ବର
ମଧ୍ୟା ପ୍ରରୂଢ଼ ଯୌବନା ଗୀତ ବାରେ । ୬ ।

---

( ପାଞ୍ଚ )

— ବ୍ରୀଡ଼ିତା —

।। ରାଗ — ଜସନ ପୁରିଆ ଚୋଡ଼ି ।।

( ଦ୍ରୁତ ଝଡ଼ତାଳ )

ଆଳିମାନଙ୍କୁ ଯେ ଅବଳା ପର୍ଯ୍ୟରେ ହସି
ଅବିରତ ରତି କାନ୍ତ ସେ କେମନ୍ତେ ବିପରୀତ ମାଗେ ହସି ।। ପଦ ।।
ଆନର୍ତ୍ତିତ ପୁଣି ବେଣୀ ସେ ଶ୍ୟାମା କଣ୍ଠ କମ୍ପାଇ ଲପନ
ଆରଦନ କାର କ ରଭସେ ପୁନ ପୁନ କରଇ ଜଳ୍ପନ ସେ ।। ୧ ।।
ଅତି ଝଟିତରେ ଶୁଣି ସେ ଶ୍ୟାମା ଲଜ୍ଜାପଦ୍ମ ଦେଲା ମୁଖେ
ଅହ ଶେଷେ ହନେ ପ୍ରଥିକା କୁସୁମ ମାଳ ମଣ୍ଡି ହୋଏ ସୁଖେ ସେ । ୨ ।
ଆସେ ନଶୀ ସଙ୍କେତରେ ସେ ଶ୍ୟାମାର × × ହଲା ବଚନ
ଅଙ୍ଗନା ରଣି ଜା ଭୂଷଣ ଶୁଣି ସେ ମୋ ଉରେ କଲା ମଣ୍ଡନ ଯେ । ୩ ।
ଅହ ପ୍ରମୁଖରେ ହନେ ସେ ଶ୍ୟାମା ମୋ ପାଶୁଁ ଯିବା ବେଳରେ
ଅଳତା କଂପାଳେ ଦେଖି ଚଞ୍ଚଳରେ ପୋଛିଦେଲା ଅଞ୍ଚଳରେ ସେ । ୪ ।
ଅରୁଣ୍ୟେ ଭ୍ରମନ୍ତେ ହନେ ସେ ଶ୍ୟାମା ବଧି ବଣେ ପୃଷ୍ଠବସ୍ତ
ଆଶ୍ଳେଷେ ଆତୁର ଦେଖି ମୋର ବାସେ ସିନ୍ଦୂର ପୋଛେ ପ୍ରବସ୍ତ ସେ । ୫ ।

ଆକାଂକ୍ଷା ମୋ ଅନ୍ତ ନନ୍ତ ସେ ରମା ଶୁଣି ଅଧୋମୁଖେ ରହୁ
ଅତେ ସେ ମଧୁପ ଶ୍ରୀ ଶ୍ୟାମସୁନ୍ଦର ଦେବ ବୋଲେ ଏତେ କହୁ ଯେ ।୭॥

---

( ଛଅ )

— ପ୍ରରୂଢ଼ ସ୍ମର —

॥ ରାଗ — ମୁଖାରି ॥

( ଏକତାଳି )

ଅଙ୍ଗନା ଯେଉଁ ଭାବ ବହିଲା
ଅନ୍ତେ ଅନ୍ତର ହଣେ ନୋହି ରହିଲା ।ପଦ।

ଅଣି ମୋ ତନୟଷ୍ଟ ହୋଇ ପ୍ରେମ ଲମ୍ପଟ
ରହେ ଚୁମ୍ବନ ଯାତେ ମହିଳା ॥ ୧ ।

ଅମ୍ବର କରି ଦୂର ଦେଖେ କୁଚ ଶଙ୍କର
ଅର୍ଦ୍ଧଚନ୍ଦ୍ର ନୟନ ମୋହିଲା । ୨ ।

ଅଳୋକ ଲତାନ୍ତରେ ମିଳଇ ପୁରତରେ
× × ନ ଗ୍ରନ୍ଥି ମଧ୍ୟ ଗ୍ରନ୍ଥିଲ । ୩ ।

ଆଲମ୍ବ ଝୁମ୍ପା ବେଣୀ ନାସେ ନାସିକା ମଣି
କହିଲ ନାଚବାର ନୋହିଲା । ୪ ।

ଆନ ମୋର ତରୁଣୀ ଚୁମ୍ବି ସ୍ମର ତରୁଣୀ
ହେବୁ କ ବୋଲି ହୃଦେ ଲାଜିଲା । ୫ ।

ଆଳଙ୍କି ପରୁରଇ ସେ ମାନ କେ ଜାଣଇ
ଅଧିକ କୁ କାଳ ନ ସହିଲା ॥ ୬ ।

ଅଟଇ ଏ ପ୍ରରୂଢ- ସ୍ମର ଚରିତ ଗାଢ
ଶ୍ୟାମସୁନ୍ଦର ଦେବ କହିଲା । ୭ ।

## ( ସାତ )

### — ବିଚିତ୍ର ସୁରତା —

॥ ରାଗ — ସିନ୍ଧୁଡ଼ା ॥

॥ ତାଳ — ରୂପକ ॥

ଅଙ୍ଗନା ବଚନ ସୁରତେ ଧରାଇ ରଙ୍ଗେ ଚିତ୍ରଲେଖା ସ୍ତନ
ଆପଣ କଳାବନ୍ତୀ ବେଗ କରାଇ ହରଇ ମୋହର ମନ ସେ ॥ ଘୋଷା ॥

ଆପେ ରତି କ × × ଦେଇ ଅଭିନବ ମଦନ କରଇ ସେ
ଅତି ଚୁମ୍ବ ଶ୍ରୀମୁଖେ ଦିଆଇ ସେ, ଅଙ୍ଗେ ଗଜଗ୍ରା ଜଙ୍ଘ ରହଇ ସେ ॥ ୧ ॥

ଅଧିକେ ଚନ୍ଦ୍ରକଳା ଭିଷ ନଖରେ ସୁଖ ଲଭେ ଏ ଦୁର୍ଲ୍ଲଭ
ଅଶ୍ୱରଣ ପର ରମ୍ଭା ଚରଣକୁ ଧରାଇ ଏ ବଡ଼ ଲାଭ ସେ ॥ ୨ ॥

ଆମ୍ଭେଇ ମୋତି ନାଟ × × ମୋ ନାକରେ ହୋଇପ୍ତୁ ଆଲୋକ
ଅଶେଷେ ମଦାଳସା ବେଗେ ଲାଳସା ପୂର୍ଣ୍ଣେ ଭୁଞ୍ଜ ସ୍ୱର୍ଗଲୋକ ସେ ॥ ୩ ॥

ଅଳତା କୁଙ୍କୁମ ଅଞ୍ଜନ ଅଙ୍କରେ ମୋ ଅଙ୍ଗେ କରେ ଜର୍ଜ୍ଜର
ଅଙ୍ଗରାଗ ପାନ ପିକା ଦୃଢ଼ ବନ୍ଧରେ ଶ୍ୟାମସୁନ୍ଦର ଦେବ ସେର ॥ ୪ ॥

---

## ( ଆଠ )

### — ରତାନ୍ତ —

॥ ରାଗ — ପୁର ॥

( ତାଳ — ଝଡ଼ତାଳ )

ଅଣି ଦେଖ ଆଦରଣ । ପଦ ।
ଆନନ ଶୋଭା ନରମ,
ଏତ ରାସ କର ବଧୂ ବଧୂନୁଦ ରଖିନାହୁଁ ସୁଧା ରସ ॥ ୧ ॥

ଅରୁଣ ନବ ତରସ,
ଆଶୁଗ ଘାତ ହରଣ ପର ନେତ୍ର ଯୁଗଳ ଲୋଳ ସରସ ॥ ୨ ॥
ଅଧରର ମଧୁ ରସ,
ଅନୁତର୍ପଣେ ସିଠା ଚନ୍ଦ୍ରି ରଖିଛୁ ପୂର୍ଣ୍ଣି କର ତା ତରଷ ॥ ୩ ॥
ଆଳସ ଗତ ସାରସ,
ଅନଙ୍ଗ ଜର ଟୋପିରେ ସୁଚ ଚନ୍ଦ୍ର ସ୍ତନ ଏ ଛବ ସ୍ମରଣ ॥ ୪ ॥
ଆଣ୍ଠ କର ଆକରଷ,
ଆମୁକ୍ତ ବଚନରୁ କେଶ ପଳାନ୍ତ ଖ୍ୟାତଂ ଭୟାନକ ରସ ॥ ୫ ॥
ଅଙ୍ଘ୍ରି ଯୁଗଳ ତାମରସ,
ଅଳ୍ପ ଝୁମୁ ଝୁମୁ ନୂପୁର ଏ ପଦ ଜୟବାଦ୍ୟ ବୀର ରସ ॥ ୬ ॥
ଅମ୍ବର ଚେଳ ହରଷ,
ଅବନ ଲୋଟେ ବୋଲେ ଶ୍ୟାମସୁନ୍ଦର ଦେବ ଚେଳଦେଲୁ ରସ ॥ ୭ ॥



୧। ଘାତ (ପୋଥିପାଠ)

## — ଷଷ୍ଠ କୁସୁମ —

# ଚଉତିଶା

॥ ରାଗ—କୌଶିକ ॥

## — ଶୁକ୍ଳାଭିସାର —

ଶ୍ଳୋକ—

ଦୁର୍ବାରଦାରୁଣମନୋଭବବହ୍ନିତପ୍ତାଃ
ପର୍ଯ୍ୟାକୁଳାକୁଳତମାନନମୁଦ୍‌ବହନ୍ତି
ନିଃଶଙ୍କିନୀ ବ୍ରଜତି ଯା ପ୍ରିୟସଙ୍ଗମାର୍ଥଂ
ସା ନାୟିକା ଖଳୁ ଭବେଦଭିସାରିକେତି ॥୧॥
(ଇତି ନାୟିକା ଲକ୍ଷଣେ)

ରୂପକ ଶ୍ଳେଷ—

ଆଗତ ପ୍ରଦୋଷ ମଳନ ହସନ୍ତ ପ୍ରୋଷିତା ଯୋଷିତା ପ୍ରାୟେକ
ଅଦୃଶ୍ୟ ହେବାରୁ ବଳପଦ୍ମ ମୁଦେ ନାକ ମଣ୍ଡଳେ କଉଶୀକ
ଆସି ଏ କାଳେ, ଆକାଶେ ଉଦେ ହରିଣାଙ୍କ
ଅବଦାତ କରେ ଶିହ୍ଳାଇ ହସ କ ମୁର୍ଦ୍ଧ କୁମୁଦନୀ ନାୟକ ॥ ୧ ॥

ଉତ୍ପ୍ରେକ୍ଷା—

ଯଦୁକ୍ତଂ କାବ୍ୟାଦର୍ଶେ—

ଶ୍ଳୋକ— ଅନ୍ୟଥୈବ ସ୍ଥିତାବୃତ୍ତିଶ୍ଚେତନସ୍ୟେତରସ୍ୟ ବା
ଅନ୍ୟଥୋତ୍ପ୍ରେକ୍ଷତେ ଯତ୍ର ତାମୁତ୍ପ୍ରେକ୍ଷାଂ ବିଦୁର୍ଯଥା ॥୧॥*

---

* ଅନ୍ୟୈ ଥୈବ ସ୍ଥିତ ବୃତ୍ତିଂଶ୍ଚ ନେତରସ୍ୟ କଦାଚନ
ଅନ୍ୟଥୋ ତ୍ପ୍ରେକ୍ଷତେ ଯତ୍ର ତାମୁତ୍ପ୍ରେକ୍ଷା ବଦନ୍ତିବୁଧାଃ । (ପୋଥିପାଠ)

ଅବଣୀରେ କି ଉଜ୍ଜ୍ୱଳ ରସ ଯଶ ପ୍ରକାଶିଲା ସିତ ମୟୂଖ
ଅଳି ଭ୍ରମଇ ନ ଚନ୍ଦ୍ର କୁମୁଦନୀ କୂଜନ ଶୁଣି ହାସମୁଖ
ଅଭ୍ର ଶୁଭ୍ରରେ, ଅସଂଶୟ ଏ ଦୃଷ୍ଟମୁଖ
ଅମର ନଦୀ କର ବ୍ୟୋମକେଶର ତାରାବଳୀ ବଧୂ ଫେନ ଯୋଷ ।୨।

ଅଳକ ପର ଅଚଳର ମଞ୍ଜୁଳ ହର ଆଣିଲେ ସର୍ବ ନଗ
ଅବନୀ ରଜନୀକରକୁ ରଜ ନକର ରଜନକର ଯୋଗ
ଆଜ କି ବର୍ଣ୍ଣ, ଅଙ୍ଗନା ହାସରେ ସରାଗ
ଅଟେ ଦନମଣି କରେ କରେ ପୁଣି ରଜାର ଏ ପ୍ରସନ୍ନ ଭଙ୍ଗ ॥୩॥

ଅଭିସାରକୁ ବେଢ଼ି ସାତ୍ତ୍ୱସାକ୍ଷୀକ ବେଶ କରନ୍ତ ଆଳି ଓଘ
ଅପଘନ ଘନସାର ଚନ୍ଦନରେ ଲେପନ କି ଶରଦ ମେଘ
ଆଜ ସୁତରେ, ଆମନ୍ତ୍ରନ ବେଶ ଅର୍ଘ୍ୟ
ଆଚ୍ଛାଦିଲେ ମଞ୍ଜୁ ମାଳରେ କବରୀ ଅତନୁର ଜୟ ପରଘ ॥୪॥

ଅଳକା ସୀମନ୍ତ ତାଟଙ୍କାଦି ଚୂପସରି ହାର ମୁକ୍ତା ମଣ୍ଡନ
ଅଙ୍ଗଦ ବଳୟ ଚୂଡ଼ ନୂପୁରାଦି ମୁଦ୍ରିକା ହୀରକ ରଞ୍ଜନ
ଆଣି କର୍ପୂର, ଅକ୍ଷିରେ ରଞ୍ଜିତ ଅଞ୍ଜନ
ଅବଦାତ ଚେଳ ନଚେଳ ମଞ୍ଜୁଳ ଭାଲ ଶୋଭେ ବନ୍ଧୁ ଚନ୍ଦନ ।୫।

ଆଣି ସିତପଦ୍ମ ପଦ୍ମ କରେ ବୃନ୍ଦା ଦେଇ ଅଗ୍ରେ ଗମେ ଦବତ
ଅନଙ୍ଗ ଦୂତର ପିପାସିତ ନାୟକ ଓଷ୍ଠ ଅମୃତ ପାନ ପାଞ୍ଚ
ଅଂଶୁ ଚନ୍ଦ୍ରର, ଅଂଶୁକେ ନବାଇ ଉଚ
ଆସି ଯମୁନା ପୁଳନ କୁଞ୍ଜୋଦରେ ଆନନ ନଳନ ବଳତ ॥୬॥

ଆଳି ଜାଣି କଳ୍ପ ପାଦପ ବେଦୀରେ କୁସୁମ ତଳ୍ପ ରଚ୍ଚ ସ୍ୱଚ୍ଛ,
ଅନାଗତ କାନ୍ତ କି କାରଣେ ଚନ୍ତ୍ର ଚିତ୍ତ ତଡ଼ିତ ସମକକ୍ଷ
ଅମୃତ କର, ଆଲୋକେ ନଭେ ନେତ୍ରମଚ୍ଛ
ଅଚ୍ୟୁତ ଗତ ମତେ ଆସି ଗୁପତେ ଭୁଜେ ଭିଡ଼ିଲେ ରଚ୍ଚ ପଛ ।୭॥

ଅଙ୍ଗନା ଚମକ ବଲେକଳା କୁଚ ମୂଳେ ନିପିବାରୁଂ କରଜ
ଅ.ସ୍ୟ ହାସେ ନିଣ୍ଡି କସଗୋ ଏ ବୋଲୁଂ ଚୁମ୍ବିଲେ ଶ୍ରୀମୁଖ ନୀରଜ
ଆଜ ପ୍ରମାଦ, ଆସି ଚୈର ପରି ବରଜ
ଅଳପ ହାସରେ କନ୍ଧ ଜଣୁଥିଲା ଅମୃତଙ୍କ ସ୍ୱାଦୁ ସମାଜ ॥୮॥

ଅଣି କେତକୀ ଦଳ ଦଳ କସ୍ତୁରୀ ଲେଖିଲେ ବର୍ଣ୍ଣ ତହିଁ ମାହିଁ
ଅଛ ବଡ଼ × × ବେନ ବେନ ବର୍ଣ୍ଣେ ଆଦ୍ୟ ବର୍ଣ୍ଣକୁ ପଢ଼ି ବୁଝି
ଅବଲମ୍ବରେ, ଆଚରି ସେହ୍ନ ରସେ ରହି
ଅମ୍ବୁଜ ମୂଦ କେ କରେ ହତ ଦକ୍ଷ ବଚାନ କେ ଯଥା ଅବୁଝି ॥ ୯ ॥
ଆଚରନ୍ତି ରଚିମାନେ କସ ଗୃହ ଅମ୍ଳ ଲବଣେ କ ବର୍ଦ୍ଧନ
(ତପ, କଫ)
ଅର୍ଭକ ନାସ୍ତ ଗର୍ଭରେ କେ କରଇ ବୈ × କ କରଇ ରଚନ
(ରେଚ, ରସ, ଆପଗାବୋଧ)
ଅଟେ କ ନାମ, ଦେଜ ମନ ଖର × × ×
ଅରଣ୍ୟ କେ ଅନଳେ ଦାହ ଦୁଅର କେ ସୁର ସରଣୀ ପ୍ରଧାନ
(ଦାବ, ନଭ) ॥ ୧୦ ॥
ଅବମାଣକୁ କୃଷି କର୍କଶ ଏଏ ଗ୍ରୀଷ୍ମେ ମଧ୍ୟରେ କ ପ୍ରକଟ (କର, ରଜ)
ଅଙ୍ଗନା ପ୍ରଗଲ୍ଭା ଖବକୁ ଆଚରି ମଣ୍ଡି ପ୍ରକାଶ ହାସ ଅଛି
ଅତ ଆନନ୍ଦେ, ଅଙ୍ଗୁ ହରଲେ ହଟପଟ
ଅଚରେ ବଚରେ ଉତ୍ତାନ ଶପ୍ନନେ କ ଶୋଭ୍ର ସ୍ତନ ହେମଘଟ ॥ ୧୧ ॥
ଅନଙ୍ଗ ବାସ ମୁଖରସ ଜଳେ କ ପ୍ରକାଶେ ଜଘନ କମଠ
ଅସିତ ଲୋମ ଜଳ କ ସେ ଶୈବାଳ ଲାଗି ମଞ୍ଜୁଳ ଆସ୍ୟପୃଷ୍ଟ
ଅଚନୁ ବାସ, ଅଛୁ ରୋମାଳ ଦଣ୍ଡକାଷ୍ଠ
ଅବଳା ବଳା ଅବରତେ ଘୋଷିଲେ ଯୁବତୀ ପୁଂସ ରତିପାଠ ॥ ୧୨ ॥
ଅଙ୍କ ମୃଗ ମୃଗରାଜ କୋଳେ ଖେଳେ ତଥା ନୟନ ଲୋଳ ଖେଳ
ଆସିବା ମତ ରେବତୀର ଚଞ୍ଚଳ ପାଦ ଭୁଜ ଭଙ୍ଗା ନବଢ଼
ଆକାଶ ବଟ, ଆସ୍ୟକୁ ଗୃହ୍ଣ ଲଜ୍ୟା ଜଡ଼
ଆଲୋକ ଉଭୟର ବାଦ ପଡ଼ଲା ରସିକେ ଭୁଲ କେହୁ ବଡ଼ ॥ ୧୩ ॥
ଆକରଷଣେ ଗୋବନ୍ଦ ଅରବନ୍ଦ କରକେଶ ଭଙ୍ଗେ ଆରୂଢ଼
ଅକ୍ଷିରେ ଚୁମ୍ବ କଦମ୍ବ ସରଜନ୍ତେ ମୁଦେ କମଳ ଯଥା କଢ଼
ଅଗ୍ର କୁଚଦ୍ୱୟରେ, ଅଣି ରମନା ଭ୍ରମ ବେଢ଼
ଅଦ୍ଭୁତ କୁଚ ଅଚଳ କରପଦ୍ମେ ପୀଡ଼ା ଲଭଲା ମହାଗାଢ଼ ॥ ୧୪ ॥

ଅନ୍ତ ହୋଇନ୍ତେ ରତି ଉଠିଲ ଯୁବତୀ ସ୍ୱପ୍ନ ଶେଯରୁ ସେହିକ୍ଷଣ
ଅମ୍ବର ଅ × × × × ସମ୍ଭ୍ରମେ ଭ୍ରମାଇ ଖଞ୍ଜନ ଈକ୍ଷଣ
ଆଲୋକ ପନ୍ଥ, ଅଧିକ ହାସ ବିଚକ୍ଷଣ
ଆଚ୍ଛାଦ ସ୍ତନେ କର ସ୍ମର ସଦନ ଜଂଘେ ଛନ୍ଦ କରେ ବୀକ୍ଷଣ ।୧୫।

ଆସ୍ୟରେ ହେମଜର ନେତ୍ରାନ୍ତରୁ ଚନ୍ଦ୍ର ବସନ ପିନ୍ଧିଲ ତ୍ୱରିତ
ଅଦ୍ଭୁତ ହାସ ଜନ୍ମାଇ × × × × × ହାସ ଚରିତ
ଅଟେ ଅମ୍ବର, ଆପଣଙ୍କର ସେଣୁ ପୀତ
ଅବଶ୍ୟ ଭ୍ରମ ସମୟରେ ଦେଖିବା ନେକାଳ ଚରିତ କେମନ୍ତ ।୧୬।

ଅଙ୍କେ ବସାଇ ପ୍ରିୟାକୁ ରକ୍ଷପାଇଂ ଅଙ୍କ ବିଲୋକ ସ୍ମରପଥ
ଅପରାଧ କ୍ଷମା କ୍ଷମା ମଞ୍ଜିମା ମୋ କରିବୁ କହେ ବୋଧିନାଥ
ଅସମ ସୋମ, ଆସ୍ୟକୁ ଭୂଳ ଅଯଥାର୍ଥ
ଅଧର ଅମୃତ ନ ପାଇ ସେ ମୃତ ଅମାବାସ୍ୟାରେ ହୋଇ ବ୍ୟର୍ଥ ।୧୭।

ଆନନ୍ଦାନ୍ତିତସ୍ତୁ କୁଟେଶତସ୍ତୁଦୃଗୀ ବଲ୍ଲଭର ପ୍ରେମ ସମ୍ବାଦ
ଆବେଷ୍ଟିତ ଗଳେ ଭୁଜ କେତେବେଳେ ବନ ଭ୍ରମଣ ଲଭି ମୁଦ
ଅର୍କଜା ମଧ୍ୟେ, ଜଳ ତୁମ୍ଭେ ସ୍ଫୁଟ କୁମୁଦ
ଅନ୍ୟେ ସୁମନେ ପୂଜନ ବନେ ଚୁମ୍ବେ ଦେଖି ସୁମୁଖୀ ହସି ମନ୍ଦ ।୧୮।

ଅଧର ଗୋଳ କରନ୍ତେ କାନ୍ତ ଦେଖି ମାନିଲେ ନୂମ୍ଭ କର ସଧ
ଅଗଣିତ ଚୁମ୍ବ ପ୍ରିୟର ଜାଣି ସେ ଗଣି ଦେଲ ନାହିଁ ବିରୋଧ
ଆଳି କୁସୁମ, ଅଣି ତଳ୍ପ ରଚି ସେ ଶ୍ରେଷ୍ଠ
ଅନେକ କର୍ପୂର ରଜ ସିଞ୍ଚି କଲେ ପ୍ରଚ୍ଛଦପଟେ ତାକୁ ଅଧ ।୧୯।।

ଅଧୀରେ ଅନେକ ବିଧିରେ କଲେ ସେ ମନସିଜ କେଳି ରଚନ
ଅମ୍ବର ପିନ୍ଧି ବାନ୍ଧି ଚିକୁର କବରୀ ସୁମନରେ କଲେ ମଣ୍ଡନ
ଆଲେକ ପୃଷ୍ଠ, ଆଣନ୍ତି ଚୋଳ ବୁଲି ବନ
ଅତି ସେହେ ଦୁହେଁ ଦୁହିଁଙ୍କ ମଣ୍ଡନ୍ତି କରି ପ୍ରେମରସ ବର୍ଦ୍ଧନ ।୨୦।

ଆସି ନନ୍ଦାବନେ କୁଞ୍ଜ ଗୃହେ ପଣେ ଶୟନରେ ଦିବ୍ୟ ତଳପ
ଆଶ୍ଳେଷ ହସ୍ତେ ହସ୍ତ ପାଦ ପାଦରେ ଶୋଭା ଯଥା ଲତା ପାଦପ
ଅଷ୍ଟ କୁଞ୍ଜରେ, ଅଷ୍ଟସଖୀ ଗୋପୀ ବିଳାପ
ଅରଣ୍ୟ ଦେବୀ ସନ୍ତୁଷ୍ଟ ଜାଣି ପୁନ ରଜନୀ ଥିବାରୁ ଅଳପ ।୨୧।

ଆଦେଶ ପାଇ ପଂଢ ଶୁକ ଶାରିକା କୁସୁମେ ଝଙ୍କାର ଦ୍ୱିରେଫ
ଅସେ ଜଟିଳା କଖଟୀ ମରକଟୀ ଡ଼ାକେ ଧର ଫଳ ସତେଙ୍ଗ
ଅତ ସାଧଙ୍ଗ, ଆସି ପୂରନ୍ଧ ହୃଦଗୁମ୍ଫ
ଆଶ୍ଳେଷ ଚୁମ୍ବ ଦେଇ ସ୍ୱରେ ଗମନ୍ତେ ପଛକୁ ଆସେ ପଦଗୁଳ୍ଫ ।୨୨।

ପ୍ରଗଲ୍‌ଭା ଲକ୍ଷଣ—

ଶ୍ଳୋକ— ସ୍ମରାନ୍ଧାଗାଢତାରୁଣ୍ୟା ସମସ୍ତରତକୋବଦା
ଭାବୋନ୍ନତ୍ତା ଦରବ୍ରୀଡ଼ା ପ୍ରଗଲ୍‌ଭାଽଽକ୍ରାନ୍ତନାୟିକା
(ଇତି ସାହିତ୍ୟରତ୍ନାକରେ)

ଭାବୋନ୍ନତ୍ତା—

ଅପାର ସମ୍ପତ୍ତି ଦମ୍ପତି ଚେଜଣ ସୁତଲେ ଅପାରରେ ଜବ
ଅଦ୍ଧରେ ହର ବଦ୍ଧରେ ସଖା ମେଳେ ପ୍ରଖ୍ୟାତ କଲେ ପ୍ରିୟାଭାବ
ଆମ୍ଭ ପ୍ରିୟାଙ୍କୁ, ଅନୁରାଗେ କେ ଲକ୍ଷ ହେବ
ଅନ୍ତର ପାଶୁଂ ହେଲବେଳେ କାତର ପିଣ୍ଡରୁ ଗଲାପର ଜୀବ ।। ୨୩ ।

ଅରଣ୍ୟ ଗମନ ମୋ ଅଲେକେ ମନ ଆବେହାଇ ଆତୁର ଇଭ
ଅଧି ହରଣୀ ହୋଇ ବନଗୃହଣୀ ଲେଉ଼ଇ କୃଷ୍ଣସାର ଶୋଭ
ଆଗେ ପଡ଼ଲେ, ଆଚରେ ଅଣିମାଦ ଲଭ
ଆନନ୍ଦିତ ଭୂରୁ କର ବାହୁପାଶ ପରନେ ଦେଖାଇ ଦୁର୍ଲ୍ଲଭ । ୨୪ ।।

ଆକ୍ରାନ୍ତ ନାୟିକା—

ଅନ୍ତ ହୋନ୍ତେ ରତ ମୋ ଉରେ ପୀରତ କରଇ ପୀଡ଼ା ଶର ସମ
ଆକରଷଣେ ଭଙ୍ଗି ଦେଲ କବଶ ବାନ୍ଧବାକୁ ମୋତେ ସରମ
ଆଜ ଜାଣିମା, ଆପେ ବାନ୍ଧବ କ ସୁଷମ
ଅପଚନ ଫୁଲ ମାଳିକା କାଳିକା ଲୁଂଚ ମଣ୍ଡ ଗୁନ୍ଥି କୁସୁମ ।। ୨୫ ।

ଅଛୁ ତୁଟି ମାଳ ଗ୍ରନ୍ଥ ମଣ୍ଡ ଗଲ ନର୍ମଳ ଏ ଚନ୍ଦ୍ର ଉଦୟ
ଅଞ୍ଜନ ସିନ୍ଦୂର ଚୂର୍ଣ୍ଣି ଲଭଇଲ ଶୋଭନେ ଲେଖ ଦେଇ ଲୟ
ଅଙ୍ଗନା ଠାରୁ, ଆଳାପ ଶୁଣି ରସମୟ
ଆବେଶ ବେଶ ରଚନେ ପୁନରତ ରସିଲା ପାଇ ସୁ ସମୟ । ୨୬ ।

ସମସ୍ତ ରତି କୋବଦା—

ଆରମ୍ଭ ବନ୍ଧ ସୁରତ କୋଳେ ଯେବେ ବସି ଭାଷିଲ ମୁଁ ନାଗର
ଅଙ୍ଗନା ଚତୁର ଭୁଜରେ ଉରୁ ମୋ ଉରୁରେ ଯୋଡ଼ ସତ୍ୱର
ଆଶସ୍ଥରେ ମୁଁ, ଆଜ ବୋଲୁଁ ରତି ସୁନ୍ଦର
ଅବଲମ୍ବେ ବେଳରେ ତାକୁ ଆଣି ସଂଯୋଗ କଲ ମୋ ସୁନର ॥୨୭॥

ବନ୍ଧ ଲକ୍ଷଣମ୍—

ଶ୍ଳୋକ— ଉରୁମୂଳୌପରିସ୍ଥିତ୍ୱା ଯୋଷିଦୂରୁଯୁଗଂ ଯଦା
ଗ୍ରୀବାଂ ଧୃତ୍ୱା କରାଭ୍ୟାଂ ତୁ ବନ୍ଧୋ ନାଗରକୋ ମତଃ ।
(ଇତି ସ୍ମରଦୀପିକାୟାମ୍)

ତଥା ତତ୍ରୈବ—

ନାର୍ଯ୍ୟା ପାଦଦ୍ୱୟଂ କାମୀ ଧାରୟେଦୁର୍ଦ୍ଧ୍ୱଦେଶତଃ
କୁଚୌ ଧୃତ୍ୱା ପିବେଦ୍‌ବକ୍ତ୍ରଂ ବନ୍ଧୋଽୟଂ ରତିସୁନ୍ଦରଃ[୧] ।
ଆତୁର ସ୍ୱର ଗଦ ଗଦ ଉତ୍କଟ ଲଳନା କାମେ ହୋଇ ବ୍ୟାକୁଳ
ଆଲକ୍ତ ପଦ ପଦ୍ମରାଗ ମଦନ ଆଣି ମଣ୍ଡିଲ ହୃଦସ୍ଥଳ
ଅଞ୍ଜନାଦରେ, ଅଙ୍ଗ ମୋ ଚନ୍ଦ୍ରତ କେବଳ
ଅଧର ଉପରେ ଦନ୍ତ ନଖ କର୍ଣ୍ଣରେ ଫିଟଇ ଗ୍ଲେଟଇ କୁନ୍ତଳ ॥ ୨୮ ॥[୨]

ସ୍ମରାନ୍ଧା—

ଆବେଷ୍ଟିତ ହୋଇ ବାଳକାକୁ ଯେବେ ପଚାରୁଥିଲେ ଆଳିସବ
ଅମୃତ କରଣେ ହାର ଅବାରଣେ ରଚିଲୁ ସୁରତ ଉତ୍ସବ
ଅବଳା ହସେ, ଆଳାପେ ବୋଧକଲି ଜବ
ଅନଙ୍ଗ ବିକାର ସଜାଡ଼ିଲି ଧୀର ସହାୟ ପାଇ ନିଶା-ଧବ ॥ ୨୯ ॥

---

୧ । "ନାର୍ଯ୍ୟାପାଦଦ୍ୱୟଂ କାମୀ ଧାରୟେତ୍ ସ୍ତନ ମଣ୍ଡଳେ
କଣ୍ଠେ ଧୃତ୍ୱା ରମେତ୍ତନ୍ତୁ ବନ୍ଧୋଽୟଂ ରତିସୁନ୍ଦରଃ ।" (ପୋଥିପାଠ)

୨ । ଶ୍ଳୋକ— ଯୋ X X X X ସ୍ଥିତ୍ୱା କରାଭ୍ୟାଂ ତାଡ଼ୟେତ୍ କୁଚଂ
ଯଥେଷ୍ଟଂ ତାଡ଼ୟେତ୍ ଯୋନିଂ ବନ୍ଧ ସ୍ମର ପଦସ୍ମୃତୋ । (ପୋଥିପାଠ)
(ଇତି ସ୍ମରଦୀପିକାୟାଂ)

ଅମ୍ବର ଦୂର ହେବାର ନ ଜାଣଇଁ କି ହୋଇଲା କାମେ ଅବଶ
ଆତଙ୍କ ଶରଣ ରଣ ରଙ୍ଗେ କାନ୍ତ କି କଲେ ନ ଜାଣିଲା ଲେଶ
ଅନ୍ତ ସୁରତେ, ଅଟ୍ଟ ଜାଡ଼ିଲା ପିଠି କେଶ
ଅଧର ସ୍ତନ ଜଘନ କ୍ଷତ ଜଣା ସ୍ୱେଦ ଲାଗି ହେଲା ହୁତାଶ ॥ ୩୦ ॥

ଅନୁଭବେ ଜଣା ଧୈର୍ଯ୍ୟ ହୋଏ ବଣା ନାଭିର ଦରଶନେ ପୁଂସ
ଅନ୍ତର ଲତାରେ ରମ୍ଭା ବଧୂ ବଶେ ଶୁଣିଲା ଏ ମଧୁର ଘୋଷ
ଅଗ୍ରେ ମିଳନ୍ତେ, ଅବଗୁଣ୍ଠନ ଦ୍ରାହରଷ
ଆନ ଲକ୍ଷ ନକ ଆନନ କମ୍ପାଇ ଜାତ କଲା ହାସ ପୀୟୁଷ ॥ ୩୧ ॥

ଦରବ୍ରୀଡ଼ା—

ଅଲକ୍ତ ସିନ୍ଦୂରେ ଅଙ୍ଗ ଶଙ୍ଖ ମେର ରଚ ବନ୍ଧ ରତି ସରସ
ଆକାଂକ୍ଷା ପିଧାନେ ସାବଧାନେ ଧରେ ଶ୍ରୀଖଣ୍ଡକୁ କର ସାରସ
ଅନୁରାଗକୁ, ଅଙ୍ଗନା କରିବୁକ ଧ୍ୱଂସ
ଅପାଙ୍ଗେ ଚୁମ୍ବ କମ୍ବୁ କେତେ ଦଶଇ କାନ୍ତ କି ଲକ୍ଷକର କସ ।୩୨।

ଅଧର ରଦ ଚନ୍ଦ୍ରକୁ କି ଉପାସ୍ତ ପ୍ରକାଶ ହେଲାବେଳେ ଅହ
ଆଳାପ ନ କର କଳାପ କୁନ୍ତଳା ତାମ୍ବୁଳ କର ପୁର ସହ
ଆଣି ଭୁଞ୍ଜାନ୍ତେ, ଆଲୋକ ବୋଇଲା କି ସ୍ନେହ
ଆଚ୍ଛନ୍ନ ଔଷଧି ବେନ ବଧୂ ସିଦ୍ଧି ଶୁଣି ଜାତ ହାସ ସମୂହ ॥ ୩୩ ॥

ଗାଢ଼ ତାରୁଣ୍ୟ —

ଆଳସ୍ୟ ବଙ୍କ ବାଣୀରେ ତା ମଙ୍ଗଳ ନାମ ମୋଟ ହୁଏ ଅଲକ୍ଷ
ଅଚଳ କୁଚ କରପୀଡ଼ା ସହଇ ଯେଣୁ ସେ କନ୍ଦନରେ ଦକ୍ଷ
ଆଣ୍ଠୁ ଉଡ଼ାକୁ, ଅଙ୍ଗ ସହେ ସେ ଭୁଲା ଲକ୍ଷ
ଅଧିକେ ଶ୍ୟାମସୁନ୍ଦର ଦେବ କହେ ପ୍ରଗଳ୍ଭା ରତିକ ପ୍ରତ୍ୟକ୍ଷ ।୩୪।।



— ସପ୍ତମ କୁସୁମ —

# ଚଗ ଲେଖନ

( ଦଶ ଡ଼ଗ ବୃତ୍ତ )

ଆଗତ ମଧୁ    ସମସ୍ତ ସାଧୁ    ଅରଣ୍ୟ ପ୍ରିୟ ଡାକେ ଷସ୍ତ ବଧୁ
ଅଟବୀ ରମା    ଲାବଣ୍ୟ ଧାମା    ଆରବେ କଳା ରୁଳେ କନ୍ଥ ଅମା ॥ ୧ ॥

ଅର୍କ ପୂଜନେ    ହରଷ ମନେ    ଆସି ଠାକୁରାଣୀ ବଜସ୍ୱେ ବନେ
ଅନ୍ତରେ ରସି    ତେଲଙ୍ଗ ଦେଶୀ    ଅଙ୍ଗନା ସଦୃଶେ ହୋଇ ସୁବେଶୀ ॥ ୨ ॥

ଅସିତ କେଶ    ଖୋଷା ବଶେଷ    ଅଧିକ ବର୍ତ୍ତୁଳ ତାଳ ସଦୃଶ
ଅଚ୍ଛି ଗର୍ଭକ    ସୀର ବ୍ୟାଦକ    ଅଚଳ କର୍ତ୍ତନ ଯୁତେ ଆଲୋକ ॥ ୩ ॥

ଅଶେଷ ପ୍ରଭ    ଗଗିଡ଼ ଶୋଭ    ଆଲମ୍ବିତ କର କୁସୁମ ଗଭ
ଅର୍ଦ୍ଧେନ୍ଦୁ ଭାଲ    ବିନ୍ଦୁ ମଞ୍ଜୁଳ    ଅଚ୍ଛି ଉନ୍ନତତା ମୋତି ସଂକୁଳ ॥ ୪ ॥

ଅନେକ ବାଳୀ    କେଶ ସିଞ୍ଜଳ    ଆଲମ୍ବିତ ଝୁମ୍ପା ତାଟଙ୍କ ଝଳ
ଅଧିକେ ମୋତି    ନଥ ଗଜନ୍ତି    ଅମ୍ବର ତପମାସ୍ତ ଜର ଭାତି ॥ ୫ ॥

ଅନେକ ବାଳା    ଭଦ୍ରା ଶ୍ୟାମଳା    ଆଦରେ ଯେ ଯୂଥେଶ୍ୱରୀ ବିମଳା
ଅମ୍ଭୋଜମୁଖୀ କେ    ଚନ୍ଦ୍ରିଣୀ କେ କେ    ଅନ୍ତେ ଶଙ୍ଖିନୀ ହସ୍ତିନୀ ଠିକେ ॥ ୬ ॥

ଅନନ୍ତ ସାଥେ    ଅରଣ୍ୟ ପଥେ    ଅଚ୍ୟୁତ ଦରଶନ ମନୋରଥେ
ଆତୁରେ ହରି    ବନେ ବିହରି    ଆଲୋକ କୃଷ୍ଣଙ୍କୁ ଜନିତ ହରି ॥ ୭ ॥

ଅଳପ ହାସ    କରି ପ୍ରକାଶ    ଅଭିନବ ବେଶ ଗୃହି ସହରଷ
ଅଧିକ ରସ    ଦେବ ଏ ବେଶ    ଅଟେ ଇକ୍ଷୁରସ ଯଥା ଅଶେଷ ॥ ୮ ॥

ଅଙ୍ଗନାଗଣ    ଘେନ ଚନ୍ଦଣ    ଅଚ୍ୟୁତ କରନ୍ତି ବନ ଭ୍ରମଣ
ଆଜ କୁସୁମ    ଦୋହଦ ରମ୍ୟ    ଆଲୋକିବା ବୋଲେ ପୁରୁଷୋତ୍ତମ ॥ ୯ ॥

ଶ୍ଳୋକ— ଶ୍ୟାମା ସଙ୍ଗୀତଗାନ୍ୱେନେ ସ୍ଫୁଟନ୍ତି ବୈ ତନ୍ୱଷତେ କେତକୀ
ନାଗୀଣାଂ ମଧୁପାନମତ୍ତବଚନାଦ୍ୱାନ୍ତେ ତଥା ଚମ୍ପକଃ
ହେନ୍ତାଳାଙ୍ଗନକୃତ୍ତ୍ୟକେ ଚମଣକସ୍ତ୍ରୁତକରସ୍ପର୍ଶନେ
ମାଘଃ ସ୍ତକ୍ଷନଗକ୍ଷତେ ଚ ଫଳମୀ ସମ୍ୟଗ୍ଗୀରେ ଶୀତଳେ ।୧।

ଶ୍ରୁତ୍ୱା କୌତୁକସିନ୍ଧୁବାର ବକତଃ ପୁନ୍ନାଗ ହାସେନ ବୈ
କୁର୍ବିତାଶୋକପାଦଘାତବକୁଳଃ ସ୍ୱାମଦ୍ଧୁସଂସ୍ପୃତେ
ସଂପୀଡ଼ିତଃ କୁରୁଣ୍ଟକଃ କୁଚ ଯୁଗେ ସ୍ୟାତ୍କଣ୍ଟିକାରଣ୍ୟବୈ
ସମସ୍ତୋପର ସ୍ପର୍ଶଣେ ଚ କୁସୁମ ଶିରୋରୁହାସ୍ରାଦନେ ।। ୨ ।

ପୁନ୍ନାଗ ଦୋହଦ—

ଉପୃଷ୍ଟ ଅଗ ପାଶେ ପୁନ୍ନାଗ ଅତି ହାସରେ ଦେଶଭ୍ରଷ୍ଟ ସଙ୍ଗ
ଅନେକ ଫୁଲ ଜାତ ମଞ୍ଜୁଳ ଅଚରେ ଉରେ ମଣ୍ଡି ରଚି ମାଳ ।୧୦।

କୃଷ୍ଣ—

ଅଚ୍ୟୁତ ଗୃହଁ ବଦ ଶ୍ଳେଷ କନ୍ଧ ଆଜ ପୁନ୍ନାଗରେ ସେନେହ ସନ୍ଧ
ଅଟଇ ସ୍ତନ ଯୁଗ ଈଶାନ ଅଣି ରଖିଲୁ ସମ୍ଭାବତ ସ୍ଥାନ ।। ୧୧ ।

ଆମ୍ର ଦୋହଦ—

ଆମ୍ର ମୂଳରେ ମିଳଲେ ଖରେ ଅମୁକୁଳ ଦେଖି ଶାଖି ଶିଖରେ
ଅବଳା କରେ ସ୍ପରଶ କରେ ଅତି ମୁକୁଳ ତୋଷେ ମଧୁକରେ ।୧୨।

ନାୟକ—

ଅଚ୍ୟୁତ କନ୍ଧ ଗୋ ପରଶ ସନ୍ଧ ଅନଙ୍ଗକୁ ଶର ଦେଲୁ ବେଢାଇ
ଆପେ ନିର୍ମିତ କର ଯେମନ୍ତ ଅଙ୍ଗରେ ଶସ୍ତ୍ରକାର ହୋଯ୍ୟେ ହତ ।୧୩।

ବକୁଳ ଦୋହଦ—

ଆସି ବକୁଳ ମୁଳେ ସକଳ ଅକୁସୁମିତ ଦେଖି ଶାଖାକୁଳ
ଅଧର ମଧୁ ହଅନ୍ତେ ବଧ ଆମୋଦ କୁସୁମ ବକାଶେ ସାଧୁ ।୧୪।

ନାୟକ —

ଆଲୋକ ହର ବୋଲନ୍ତି ଗୋ ନାରି ଅନୁଗ୍ରହ କଲୁ ପ୍ରଚେତ ଶିଖ
ଅଜ୍ଞାନ ଏହି ହେଜଲ ନାହିଁ ପ୍ରଚାରେ ମଧୁପରେ ରତ୍ନସହ । ୧୫ ।

ଅଶୋକ ଦୋହଦ—

ଅଶୋକ ଶାଖି ଶାଖାକୁ ଦେଖି ଅଙ୍ଘ୍ରି ଘାତ କଲା ସରୋଜମୁଖୀ
ଆଶୁ ଜନନ ଗୁଚ୍ଛ ସୁମନ ଅବଳା କବରୀ କର୍ଣ୍ଣ ମଣ୍ଡନ । ୧୬ ।

ନାୟକ—

ଅଦ୍ଭୁତ ଗୁହିଁ ମାଧବ କହି ପ୍ରଭୁ ପଦଘାତେ ସୁମନ ଏହି
ଅବଳା ମାନ କାଳେ ଯେସନ ଅଙ୍ଘ୍ରି ବଦ୍ଧ ଧ୍ୱଂସ ଲଭେ ସୁମନ ।୧୭।

କର୍ଣ୍ଣିକାର ଦୋହଦ—

ଅକୁସୁମିତ କେ ବୋଲେ ମିତ ଆଜ ଦଖ କର୍ଣ୍ଣିକାର ଅମିତ
ଅବଲାମଣି ସମସ୍ତ ବାଣୀ ଆକର୍ଣ୍ଣି କର୍ଣ୍ଣିକାର ପୁଷ୍ପଶ୍ରେଣୀ ।୧୮।

ନାୟକ—

ଅବଳା ହସି ସେ ନବ ବୟସୀ ଅବଷ୍ଟମ୍ଭ କଲେ କର୍ଣ୍ଣରେ ରସି
ଅଦ୍ଭୁତ ପୁନ ବହୁ ବଚନ ଅମ୍ଭୋଜନ୍ମା କର୍ଣ୍ଣିକାରେ ଶୋଭନ ।୧୯।

ସିନ୍ଦୁବାର ଦୋହଦ—

ଆଲୋକ ସିନ୍ଦୁ- ବାରକୁ ବନ୍ଧୁ ଆଣ ପାଷାଣ ଦେବା ବୋଲେ ବଧୂ
ଅନ୍ତେ ନ ପଶ ଗୋ ଓହର ଆସ ଅବଲମ୍ବେ ଶୁଣି ପୁଷ୍ପ ବିକାଶ । ୨୦ ।

ନାୟକ—

ଆଲୋକ ସନ୍ତ ମଧ୍ୟମା ଦୃଷ୍ଟ ଅଦ୍ଭୁତ ବଦନ୍ତି ପ୍ରମାଣ ଖଣ୍ଟ
ଅଟେ ଶମ୍ବର ସ୍ୱଷ୍ଟସ ସାର ଅବଗାହନେ ନ କର ସାଦର ।୨୧।

କୁରୁବକ ଦୋହଦ—

ଅବଲୋକନ ରହରେ ପୁନ ଅଛି କୁରୁବକ ଦ୍ରୁମ ଶୋଭନ
ଅମ୍ବର ତନୁ କାଢ଼ ସୁତନୁ ଆଶ୍ଳେଷ ଗାଢ଼ରେ ପୁଷ୍ପିତ ଅନୁ ।୨୨।

ନାୟକ —

ଅତ୍ୟନ୍ତ ରକ୍ତ    ରୂପରେ ବ୍ୟକ୍ତ    ଅଶୋକର କିଛୁ ନୋହିଲ କାନ୍ତ
ଅଟେ ଅମ୍ଳାନ    ମହାସିଦ୍ଧା ସ୍ୱନ    ଅତଳ ସତ୍ତ୍ୱ ନୋହିଲ ମଳିନ ।। ୨୩ ।।

କୁସୁମ୍ଭ ଦୋହଦ —

ଅଛି କୁସୁମ    ଗୁଳ୍ମ ସୁଷମ    ଅନୁରାଗେ ପୁଷ୍ପ କଲା ଜନମ
ଆମୁକ୍ତ କଚ    ପିଧାନେ ସଞ୍ଚ    ଅଳି ରସି ସେ କୁସୁମ୍ଭ ବକତ । ୨୪ ।

ନାୟକ—

ଅତ୍ୟନ୍ତ ହୃଷ୍ଟି    ଗୋ ରକ୍ତ ଲଙ୍କସି    ଅଛୁ କି ଏଣୁ ପ୍ରବଂଶରେ ରସି
ଅଳି କୁସୁମ-    ବକ୍ଷରେ ପ୍ରେମ    ଆଚରାଇ ରଖାଇଲୁ କି ଶମ । ୨୫ ।।

କେତକୀ ଦୋହଦ —

ଆଜ କୁସୁମ    କେତକୀ ଗୁଳ୍ମ    ଅବଳା ସେଣୁ ପୁଲେ ଭର ପ୍ରେମ
ଆସି ରଦନ    କ୍ଷତ ପ୍ରଦାନ    ଅଟରେ ପୁଷ୍ପ କବରୀ ମଣ୍ଡନ । ୨୬ ।।

ନାୟକ—

ଅତ୍ୟନ୍ତ କଣ୍ଟ    ଉଦ୍ଭତ ଏଣୁ    ଅନ୍ତ କଣ୍ଟକେ ଘାତ କଲୁ ସତ୍ତ୍ୱ
ଅଛୁ ମନାଷା    ଏ କିବ ଦଶା    ଆଜ ବରଦ କୃତ ଶ୍ମଶ୍ରୁ ଭୂଷା । ୨୭ ।

ଶ୍ୟାମା ଦୋହଦ —

ଆଲୋକ ଶ୍ୟାମା    ଲତା କେ ରମା    ଆରମ୍ଭେ ସଙ୍ଗୀତ ସେ ମନୋରମା
ଅପୂର୍ବ ଗୀତ    ଶୁଣି ଉଦ୍ଭତ    ଆନନ୍ଦ ଲଭି ହେଲା ମୁକୁଳିତ । ୨୮ ।।

ନାୟକ—

ଅତ୍ୟନ୍ତ ଭଙ୍ଗି    ଅଟୁ ଶ୍ୟାମାଙ୍ଗୀ    ଅଙ୍ଗୀକାର ପ୍ରୀତି ସଙ୍ଗୀତ ସଙ୍ଗୀ
ଆଜ ଏ ପିକ    ହୋଇବ ମୂକ    ଆଉଥରେ ଶୁଣି ମୁଞ୍ଜିବ ଓକ । ୨୯ ।।

କାଞ୍ଚନ ଦୋହଦ —

ଅଟ୍ଟ କୁନ୍ଦାଳ    ବଜନ ସ୍ଥଳ    ଆଲିଙ୍ଗନ ସ୍ପନ୍ଦେ କଲା ଚପଳ
ଅଧିକ ଫୁଲ    ହେଲା ମୁକୁଳ    ଅଳି ଲଭିଲା ତା ମଟୁ ଅତୁଳ । ୩୦ ।

କୃଷ୍ଣ—

ଅନ୍ତରେ ରକ୍ତ    ଗୋ ଛନ୍ଦ କାନ୍ତ    ଅଙ୍ଗନା କୋବଦାର ଅଟେ ଏଣୁ
ଆଦ୍ୟ ବର୍ଣ୍ଣକୁ    କର ଲେପକୁ    ଅବଲୋକେ କରଥାଅ ଅଙ୍ଗକୁ ।୩୧

ଚମ୍ପକ ଦୋହଦ –

ଆସବ ଆଣି ସର୍ବ ତରୁଣୀ ଆସ୍ୱାଦତ କଲେ କର ଭ୍ରମଣି
ଅଙ୍ଘ୍ରି ସ୍ଖଳନ ରକ୍ତ ନୟନ ଉଛ୍ୱାସେ ମିଳି ଚମ୍ପକ ବନ । ୩୨ ।

ଅନର୍ଥ ବାଣୀ କହେ ତରୁଣୀ ଅଭ୍ୟାର ରିଜିଲା ଆଜ ତରୁଣୀ
ଆସି ଖଦ୍ୟୋତ କଲେ ମୁକତ ଆଳାପ ଶୁଣି ଚମ୍ପକ ପୁଷ୍ପିତ । ୩୩ ।

ପ୍ରିୟଙ୍ଗୁ ଦୋହଦ –

ଆଲୋକ ପଳ ଲତା କେ ବାଳୀ ଅଟେ ପ୍ରିୟଙ୍ଗୁ ବେକ ବର୍ଣ୍ଣ ଝଳୀ
ଅତ ଶୀତଳ ବାଣୀ ମଞ୍ଜୁଳ ଅବଳମ୍ବେ ହେଲା ପୁଷ୍ପ ମୁକୁଳ ।୩୪।

କୃଷ୍ଣ –

ଅଚ୍ୟୁତ କହ ପ୍ରିୟଙ୍ଗୁ ଏହ × × ମଧ୍ୟେ ହେଲେ ଦ୍ୱିଜ ହୋଇ
ଆପଣେ ବାସ ହରଣେ ତୋଷ ଅଙ୍ଗନା ଶୁଣି କଲା ମନ୍ଦହାସ । ୩୫ ।

କଦମ୍ବ ଦୋହଦ –

ଆସି କଦମ୍ବ ମୂଳରେ ବମ୍ବ ଅରୁଣ ପଲ୍ଲବ ଓଷ୍ଠ କଦମ୍ବ
ଅକୁସୁମିତ କରଜ କ୍ଷତ ଆଚରବାରୁ ଅଚିରେ ପୁଷ୍ପିତ । ୩୬ ।

କୃଷ୍ଣ –

ଅଚ୍ୟୁତ ଭାଷ କଲେ ପ୍ରକାଶ ଆଜ ହୋଇଲୁ ପ୍ରିୟ କରେ ବଶ
ଅନାପ୍ତରେ କାମ କାତରେ ଆଚର ପ୍ରଗଲ୍‌ଭ ରତ କ୍ଷତରେ ।୩୭।

ଅଙ୍ଗନା ପୁଂସ ହୋଇ ହରଷ ଆଣି ପୁଷ୍ପ ପରସ୍ପର ସୁବେଶ
ଅଟେ ଏ ସର୍ବ ଦୋହଦ ଭାବ ଆଚ୍ୟୁତ ଶ୍ରୀ ଶ୍ୟାମସୁନ୍ଦର ଦେବ ।୩୮।



— ଅଷ୍ଟମ କୁସୁମ —

## ବନ୍ଧ ମନାସ

( ରାଗ – ଗଡ଼ମାଳଆ )

ଅଧୋମୁଖ ରତ୍ତ ପାଶ, ଗୌଣ୍ଡ ପ୍ରିୟ ସୁର ଚନ୍ଦ ବିଶେଷ ଯେ
ଅଛୁ ବିପରୀତ ହାସ୍ୟ ।
ଆସ୍ତିକ ଜନ୍ତୁ ପୀଡ଼ନ, କାମପ୍ରଦର ଅପ୍ରିୟ ତୋଷଣ ଯେ
ଅଟେ ଏକାଦଶ ସେନ । ଅଙ୍ଗନା ଗୋ ॥ ୧ ॥

ଅଧୋମୁଖ ସେ ଧେନୁକ, ପ୍ରିୟ ତୋଷ ଦେବ ହାସ୍ୟ ସ୍ୱସ୍ତିକ ଯେ
ଅଟେ ଏକ ପାଦ ଟେକ ।
ଅଛୁ ବିପରୀତ ହଂସ, ସୁର ଚନ୍ଦ ପଦ୍ମ କୁସୁମ ରସ ଯେ
ମତ୍ସ୍ୟପୃଷ୍ଠ ଚତୁର୍ଦ୍ଦଶ । ଅଙ୍ଗନା ଗୋ ॥ ୨ ॥

ଅଛୁ ବୃଷଭ ହାସ୍ତିକ, ରତ୍ତପାଶ ମତ୍ସ୍ୟପୃଷ୍ଠ ସ୍ୱସ୍ତିକ ଯେ
ଅଟେ ଗାବଭ ଶୌନକ ।
ଅଧୋମୁଖ ସେ ମାର୍ଜାର, ପ୍ରିୟ ତୋଷଣ ଦେବ ବନ୍ଧ ସାର ଯେ
ପଦ୍ମ ମର୍କଟ ଏ ତେର । ଅଙ୍ଗନା ଗୋ । ୩ ।

ଅଧୋମୁଖ ସେ ସ୍ୱସ୍ତିକ, କର୍ଣ୍ଣାଭରଣ ଗାବଭ ଶୌନକ ଯେ
ଅଛୁ ମାର୍ଜାର ଷର୍ପକ ।
ଅଦ୍ଭୁତ ସର୍ବତୋମୁଖ, କାମପ୍ରଦ ହଂସ ରସକୁ ଲେଖ ଯେ
ଅଟେ ବାର ସଂଖ୍ୟା ଦେଖ । ଅଙ୍ଗନା ଗୋ । ୪ ॥

ଆସ୍ତିକ ସେ ମତ୍ସ୍ୟପୃଷ୍ଠ, ସର୍ବତୋମୁଖ ଶୌନକ ମର୍କଟ ଯେ
ଅଛୁ ବିପରୀତ ପୃଷ୍ଠ ।
ଅଙ୍ଗ ନିପୀଡ଼ନ ଧ୍ୱଜ, ଅଧୋମୁଖ କୂର୍ମବନ୍ଧ ବିରାଜ ଯେ
ଅଦ୍ଭୁତ ଏଗାର ବେଜ । ଅଙ୍ଗନା ଗୋ ॥ ୫ ॥

ଅଦ୍ଭୁତ ବନ୍ଧ ଧେନୁକ, ଉରୁ ପୀଡ଼ନ ଗାବର ଦ୍ଵାନ୍ତିକ ଯେ
ଆବର ବନ୍ଧ ଖର୍ପକ ।
ଅଧୋମୁଖ ବନ୍ଧ ହାସ୍ୟ, ଅଛୁ ଚତ ଦେବ ବନ୍ଧ ବିଶେଷ ଯେ
ଅଟେ ଧ୍ଵଜ ଏକାଦଶ । ଅଙ୍ଗନା ଗୋ ॥ ୭ ॥ *

— ଗୀତ —

( ରାଗ— କେଦାର )

(କି କରିବ ସଖୀ କହ, ଜଳ ଉଠୁଅଛୁ ଦେହ—ଏ ବାଣୀରେ)
ଅଙ୍ଗନା ଚଲ୍ଲ ଚଳରେ ଅଙ୍ଘ୍ରି ଯୁଗଳ ଗଳରେ
ଅଟେ କାମପ୍ରଦ ବନ୍ଧ ଏ ସୁଖଦ ଯେ
× × × ଙ୍ଗ ପ୍ରଚଳରେ । ଅଙ୍ଗନା ଗୋ ॥ ୧ ॥

ଉକ୍ତଂ ଚ—
ପାଦୌ ସ୍କଂସ୍କନ୍ଧଯୁଗସ୍ଥା କ୍ଷିପ୍ତ୍ଵା ଲିଙ୍ଗ ଭଗେ ଲଘୁ
କାରୟେତ୍ତୁ କାମୁକଃ କେଳିଂ ବନ୍ଧଃ କାମପ୍ରଦୋ ହ୍ଯ ସଃ ।୧
(ଇତି ସ୍ମରଦୀପିକାୟାମ୍)

---

* ବନ୍ଧ— (୧) କାମପ୍ରଦ । (୨) ବିପରୀତ । (୩) ହାସ୍ୟ । (୪) ରତିପାଶ । (୫) ରସବନ୍ଧ (୬) ପ୍ରିୟତୋଷଣ । (୭) ଅଧୋମୁଖ । (୮) ବୈଚିତ୍ର୍ୟ । (୯) ଉରୁପୀଡ଼ନ (୧୦) ସୁରତ୍ନ । (୧୧) ଆଶ୍ଲେଷ । (୧୨) ସ୍ଵେକପାଦ । (୧୩) ଧେନୁକ । (୧୪) ସ୍ଵସ୍ତିକ (୧୫) ପଦ୍ମବନ୍ଧ । (୧୬) ହଂସବନ୍ଧ । (୧୭) ମତ୍ସ୍ୟପୁଚ୍ଛ । (୧୮) କୂର୍ମବନ୍ଧ । (୧୯) ଦେବବନ୍ଧ (୨୦) ମର୍କଟ । (୨୧) ମାର୍ଜାର । (୨୨) ଶୈଳକ । (୨୩) ଗାବର । (୨୪) ଦ୍ଵାନ୍ତିକ (୨୫) ବୃଷଭ । (୨୬) ଖର୍ପକ । (୨୭) ଅଦ୍ଭୁତ । (୨୮) ସର୍ବତୋମୁଖ । (୨୯) କଣ୍ଠାଭରଣ (୩୦) ଅଙ୍ଗ ନିପୀଡ଼ନ । (୩୧) ଧ୍ଵଜବନ୍ଧ । (୩୨) ଚତବନ୍ଧ । (ପୋଥିପାଠ)

୧ । ପାଦଦ୍ଵୟଂ × ଜେ କୃତ୍ଵା କ୍ଷିପ୍ତ୍ଵା ଲିଙ୍ଗ ଭଗେ ଲଘୁ
କାମୟେତ୍ କାମୁକଂ କାନ୍ତାବନ୍ଧ କାମପ୍ରଦୋ ହ୍ଯସଃ । (ପୋଥିପାଠ)

ଅଙ୍ଗନା ଧବ ଉପରେ     ଆରମ୍ଭେ ରତି ତଲ୍ପରେ
ଅଟେ ବିପରୀତ ସୁବେଶୀ ନର୍ତ୍ତକୀ ଗୋ
ନାମ୍ନାମଣି ସେ ରୂପରେ । ଅଙ୍ଗନା ଗୋ ॥ ୨ ॥

ଅବିଗ୍ରହ ସୁରସରେ     ଅଧିକ ପ୍ରେମ ହାସରେ
ଅଷ୍ଟ ପରକାଶ ବନ୍ଧ ନାମ ହାସ୍ୟ ଗୋ
ଆଚରିବୁ ବିଶେଷରେ । ଅଙ୍ଗନା ଗୋ ॥ ୩ ॥

ଅବଳାର ରତିପାଶ     ଆବନ୍ଧନେ ରଖେ ପାଶ
ଅଚନ୍ତୁ ରଙ୍ଗେ ପୀଡ଼ନ ଉରୁ ଯୁଗ ଯେ
ବନ୍ଧ ନାମ ରତି ପାଶ । ଅଙ୍ଗନା ଗୋ ॥ ୪ ॥*

ଆରମ୍ଭି ଅଚନ୍ତୁ ରମ     ଅବଳା ଜଂଘ ସରସ
ଆଣି ଉରୁରେ ଦେଇ ଭୁଜେ ଆଶ୍ଳେଷ ଯେ
ରମିଲେ ଏ ବନ୍ଧରସ । ଅଙ୍ଗନା ଗୋ ॥ ୫ ॥

ଅବଳା ବେନି ଚରଣ     ଅର୍ଦ୍ଧ କନ୍ଧରେ ଧାରଣ
ଉପରେ ସ୍ତନେ କର କରି ରମିଲେ ଗୋ
ଏ ବନ୍ଧ ପ୍ରିୟତୋଷଣ । ଅଙ୍ଗନା ଗୋ ॥ ୬ ॥★

ଅରବିନ୍ଦ ଛନ୍ଦେ ମୁଖ     ଆଜ ମୋ ଠାରେ ସୁମୁଖ
ଅଧୋମୁଖ ବନ୍ଧ ଆଚରଣ କରି ଯେ
ହର ସ୍ମର ଶିଳୀମୁଖ । ଅଙ୍ଗନା ଗୋ ॥ ୭ ॥

ଅନଧନ ତୁ ଗଜସ୍ଥି     ଅବମା ଚମ୍ପା ଚର୍ଚ୍ଚିସ୍ଥି
ଆଚରି ଗଜସ୍ଥି ପ୍ରିୟ ବନ୍ଧ ତୋଷ ଗୋ
ପ୍ରିୟ ମୁଁ ତୋର ଶଜସ୍ଥି । ଅଙ୍ଗନା ଗୋ ॥ ୮ ॥

---

* ପୀଡ଼ୟେଦୂରୁଯୁଗ୍ମେନ କାମୁକୋ ଯତ୍ର ସୁନ୍ଦରୀଂ
ରତିପାଶଂ ତଦାଖ୍ୟାତଂ କାମିନାଂ ତ ସୁଖାବହଃ ।
(ଇତି ସ୍ମରଦୀପିକାୟାଂ) (ପୋଥିପାଠ)

★ ନାର୍ଯ୍ୟାଃ ପାଦୌ କସ୍କନ୍ଧେ ନ ଧାରୟେତ୍ କୁଚୟୋ ଯତ୍ର
ସ୍ତନାପି ତକେରଃ କାମୀ କାମୟେତ୍ ପ୍ରିୟତୋଷଣଃ । (ପୋଥିପାଠ)

ଅବଳା ଉରୁଯୁଗରେ  ଆମ୍ରେଶ୍ୱର ସରାଗରେ
ଅର୍ପିତ ବେଣୀ କନ୍ଧରେ ପ୍ରାଚୀନ ଯେ
ବନ୍ଧ ସମ୍ମତ ନାଗରେ । ଅଙ୍ଗନା ଗୋ ॥ ୯ ॥

ଅବଳା ପୁଂସ ଭାବରେ  ଆଣି ପାଣିକ ଜବରେ
ଅଧର ପରଭ୍ରମି ଚୁମ୍ବନ ସୁରତେ ଗୋ
ଏ ଚକ୍ରବନ୍ଧ ପ୍ରବରେ । ଅଙ୍ଗନା ଗୋ ॥ ୧୦ ॥*

ଆମ୍ରେଶ୍ୱର ହସ୍ତ କରେ  ଅନ୍ତରେ ମୁଦ ପ୍ରକରେ
ଆଲମ୍ବିତ ପାଦକଣ୍ଠ ଉଡ଼ ଚୁମ୍ବେ ଯେ
× × ପ୍ରେତ ବନ୍ଧ ଆଖ୍ୟକରେ । ଅଙ୍ଗନା ଗୋ ।୧୧।

ଆମ୍ରେଶ୍ୱର ଧରେ ପଦ  ଆଭ ପଦ ସୁଖପ୍ରଦ
ଆଲମ୍ବି କଣ୍ଠେ ନାୟକର ରତରେ ଯେ
ବନ୍ଧ ନାମ ପ୍ରେଙ୍କ ପଦ । ଅଙ୍ଗନା ଗୋ । ୧୨ ।★

ଅବଳା କର ଗୃହୀତ  ଆଦରେ ଉକ୍ତ ବହୀତ
ଅବଳା ସେ ସ୍ତନଯୁଗ କୁମ୍ଭ ଧରି ଯେ
ଧେନୁକ ବନ୍ଧ ଏହି ତ । ଅଙ୍ଗନ ଗୋ । ୧୩ ॥+

---

* ଉକ୍ତଂ ଚ—
ପୁଂ ଭାବ ସଂସ୍ଥିତାନ୍ତି ସୁମୁଖୀ ପ୍ରିୟସ୍ୟ ପଶ୍ଚାତ୍ତୁ ବକ୍ଷସ୍ୟ
କେ × ଷ୍ଟ କରୌ ନିପୀଡ୍ୟ
ଯା ଚକ୍ରବତ୍ ଭ୍ରମତି ଚୁମ୍ବନା × × × × ଚକ୍ରବନ୍ଧମିତି ନିଗୁଣା ବଦନ୍ତି ।
(ଇତି ଚନ୍ଦ୍ରାମଣୌ) ॥ ପୋଥିପାଠ ॥

★ ଉତ୍ତିଷ୍ଠତି ପ୍ରିୟ ଗୃହୀତପଦଃ କରେଣ
ସ୍ଥିତ୍ୱା ପଦେନ ଭୁବନାସ୍ଯକକଣ୍ଠଲମ୍ବୀ
ତତ୍ପାଣିପଲ୍ଲବ ଗୃହୀତକୁଚୁତି ଦନ
ପାଣି ରତି ସମୁପଯାତି ଯଦୈକପାଦଂ ।
(ଇତି ଚନ୍ଦ୍ରାମଣୌ) ॥ ପୋଥିପାଠ ॥

+ ବନମତି ନନ ଦେହେ × × ×
ସ୍ୱ ଉରୁଯୁଗଗୃହୀତ୍ୱା ବା ରସ ଯାତି ଭାଗଃ
ଭୁଜଯୁଗକୃତହସ୍ତେ ପ୍ରେଚ୍ଛୟା ସଂଗୃହୀତଃ
ସ୍ତନକଳଶଯୁଗସ୍ୟାତ୍ ପ୍ରିୟାଧେ ନୁକଂ ତତ୍ । (ପୋଥିପାଠ)

ଆଣି ଗୁଲ୍‌ଫେ ନିରନ୍ତର ଆଲିଙ୍ଗନ ଦୃଢତର
ଆଚରନ୍ତେ ରତ ସ୍ୱସ୍ତିକ ଏ ଖ୍ୟାତ ଯେ
ଜଣେନା ବନ୍ଧ ଭିତର । ଅଙ୍ଗନା ଗୋ ॥ ୧୪ ।

ଶ୍ଲୋକଃ— ତଦନୁ ନିକ୍ଷିପ୍ତ ଗୁଲ୍‌ଫେ ଗାଢାଲିଙ୍ଗନମାଚରନ୍
ଆସୀନାର୍ଯାରତର୍କାଂତଂ ସ୍ୱସ୍ତିକଂ ପରିକୀର୍ତ୍ତିତମ୍ ।

ଅଧିକେ ମୃଦ ପ୍ରକାର ଆଣି ଗୁଲ୍‌ଫେ ବେନି କର
ଆଗୃହୀତ କଣ୍ଠପଦ୍ମ ବନ୍ଧ ଶ୍ରେଷ୍ଠ ଯେ
ସୁଖଦାତା ନାୟକର । ଅଙ୍ଗନା ଗୋ ॥ ୧୫ ॥*

ଅପସରିବ ତଦେହ ଅଧସ୍ଥିତ ଉର୍ଦ୍ଧ ଦେହ
ଅଙ୍‌ଘ୍ରି ଦ୍ୱୟ ପୃଷ୍ଠୀକୃତ ସୁରତରେ ଯେ
ହଂସବନ୍ଧ ନିଃସନ୍ଦେହ । ଅଙ୍ଗନା ଗୋ ॥ ୧୬ ॥★

ଆମ୍ରେଶୁଙ୍କ ଜଘନରେ ଅବଳା ପଦ ଘନରେ
ଅଚଳ କୁଚ ନାୟକ ହୃଦେ ନବ ଯେ
ମତ୍ସ୍ୟପୃଷ୍ଠ ବିଧାନରେ । ଅଙ୍ଗନା ଗୋ ॥ ୧୭ ।+

ଅବଳା କୁଚ ପ୍ରାନ୍ତରେ ଅଙ୍‌ଘ୍ରି ରଖି ନିରନ୍ତରେ
ଅଙ୍ଗଭଗେ ନାଗପାଦ କରେ କରଜେ
କୂର୍ମବନ୍ଧ ନିତାନ୍ତରେ । ଅଙ୍ଗନା ଗୋ ॥ ୧୮ ॥*

---

* ×× ଗୁଲଫ କରଯୁଗ୍ମେନ ଗୃହ୍ୟ କଣ୍ଠପ୍ରଦେଶେନ ରୁ
ମଣିନୈର୍ଯାରତଃ ହେତେ ପଦ୍ମବନ୍ଧ ମୁଦାହୃତମ୍ ।

★ ଅଧଃସ୍ଥିତୋଽର୍ଦ୍ଧ୍ୱଦେହାଖ୍ୟାଂ ପୃଷ୍ଠୀକୃତ ପଦଦ୍ୱୟୋ
× × × ସୀନେନ କୃତମନ୍ତ୍ୱ ହଂସବନ୍ଧସ୍ତଦୁଚ୍ୟତେ ।

+ ଶଯ୍ୟା ନିବଷ୍ଟ ପଦହସ୍ତ ଯୁଗସ୍ୟ ପୁଂସୋ
ଜଂଘଦ୍ୱୟେ ନିଜପଦ ହସ୍ତୀୟୁଂ ବିଧାୟ
ଘର୍ଷାତ୍ରୁରଜଯୁଗଳଂ ହୃଦ ନାୟକସ୍ୟ
ସମ୍ଭୋଗ ମେତ ଘନ ମତ୍ସ୍ୟସ୍ତଂ ତଦେତି

× କାନ୍ତାକୁଚପ୍ରାନ୍ତନିବଷ୍ଟପାଦ
ସ୍ତସ୍ୟ ପଦଦ୍ୱନ୍ଦ୍ୱଦସ୍ଥିତାଙ୍ଗଭଗଃ
କରୌଗୃହୀତ୍ୱା ସ୍ୱକରଦ୍ୱୟେନ
ରମେ ଯତଃ ସୋଽପି ଚ କୂର୍ମବନ୍ଧଃ ॥ (ପୋଥିପାଠ)

ଅଙ୍ଘ୍ରି ବନ୍ୟସ୍ତ ଉପରେ    ଆଣି କର କୁଚ ପରେ
ଅଟେ ଦେବ ବନ୍ଧ ନାମ ଏ ପ୍ରସିଦ୍ଧ ଗୋ
ଚଳ୍ତୁ ସୁଖ ଅନଳ୍ପରେ । ଅଙ୍ଗନା ଗୋ    ॥ ୧୯ ॥*

ଅନଙ୍ଗ ଶାସ୍ତ୍ର ପ୍ରକଟ    ଅଭ୍ୟାସ ବିନା ସଂକଟ
ଆଜ ଶିଖାଇବ ରତି ଲାଳସୀରେ ଯେ
ଯେମନ୍ତ ବନ୍ଧ ମର୍କଟ । ଅଙ୍ଗନା ଗୋ    ॥ ୨୦ ॥

ଅନଙ୍ଗ କେଳି କୋବିଦା    ଅଟୁ ସେ ସୁଖ ସଂବଦା
ଅଛୁ ପ୍ରଚୁର ବନ୍ଧ ନାମ ମାର୍ଜାର ଗୋ
ଆଚରିବୁ ରସବିଦା । ଅଙ୍ଗନା ଗୋ    ॥ ୨୧ ॥

ଅଙ୍ଗ ଟେଢା ଦାହ କନକ    ଅକ୍ଷିର ଆସେଚନକ
ଆଜ ମନୋହାରୀ ହରିବୁକି ମନ ଗୋ
ବିରଚ ବନ୍ଧ ଶୌନକ ଅଙ୍ଗନା ଗୋ    ॥ ୨୨ ॥

ଅତନୁ କେଳି ସନ୍ଦର୍ଭ    ଆଚର ବନ୍ଧ ଗାବଭ
ଅଛୁ ଅଶ୍ୱପୃଷ୍ଠ ନାମରେ ପବିଷ ଗୋ
ତୃଣରେ ଯେମନ୍ତ ଦର୍ଭ । ଅଙ୍ଗନା ଗୋ    ॥ ୨୩ ॥

ଆଜ କାମ ନାସ୍ତିକରେ    ଆପେ ଦେବ ଶାସ୍ତିକରେ
× × × କୁମ୍ଭୀ କୁମ୍ଭୀ କୁମ୍ଭ ସ୍ତନା ସୁରତ ଗୋ
ବନ୍ଧ ନାମ ହାସ୍ତିକରେ । ଅଙ୍ଗନା ଗୋ    ॥ ୨୪ ॥

ଅନଙ୍ଗ ଅଭୟକର    ଅଛନ୍ତି କୁଚ ଶଙ୍କର
ଅବଶ୍ୟ ବୃଷବନ୍ଧ ଯୁକ୍ତ ଉଚିତ ଗୋ
ଚିତ୍ତରେ ବିଚାର କର । ଅଙ୍ଗନା ଗୋ    ॥ ୨୫ ॥

ଅନଙ୍ଗ ଲୀଳା ସଜକ    ଅନ୍ତକେ ପୁଷ୍ପ ପର୍ଯ୍ୟଙ୍କ
ଆଜ ସାଜ ତନୁ ଅତନୁ କେଳିରେ ଗୋ
ରଚିବୁ ବନ୍ଧ ଷାର୍ଯକ । ଅଙ୍ଗନା ଗୋ    ॥ ୨୬ ॥

---

* ହୃପାର୍ଶ୍ୱପରି ବନ୍ୟସ୍ତ ପାଦୌ ବକ୍ଷୋ × ହସ୍ତଦ୍ୱୟେ
କରୌ ନିକ୍ଷିପ୍ୟ କାନ୍ତାୟାଃ ଦେବବନ୍ଧ ରମେଦ୍ଧ ଯଦଃ ।
(ଇତି ଚନ୍ଦ୍ରାମଣୌ) ॥ ପୋଥିପାଠ ॥

ଫେଙ୍କୁ ତୁ ପଞ୍ଚଭୂତ    ଉଧ୍ୱକେ ରସ ସଂଭୂତ
ଅନଙ୍ଗ ରଙ୍ଗରେ ଆଚରିବୁ ଆଜ ଗୋ
ଯେ ବନ୍ଧ ଖ୍ୟାତ ଅଦ୍ଭୁତ । ଅଙ୍ଗନା ଗୋ ॥ ୨୭ ॥

ଅଙ୍ଗନା କୁଳ ପ୍ରମୁଖ    ଅରବିନ୍ଦ ଗୃହୁ ମୁଖ
ଆଜ ବକଶି ସି଼ତରେ ଆଚର ଗୋ
ବନ୍ଧ ଯେ ସର୍ବତୋମୁଖ । ଅଙ୍ଗନା ଗୋ ॥ ୨୮ ॥

ଅତି କର୍ଣ୍ଣ ଆଭରଣ × × × କାରଣ
ଅବାରଣ ରଞ୍ଜ ବାରଣ ଗମନା ଗୋ
ବନ୍ଧ କର୍ଣ୍ଣ ଆଭରଣ । ଅଙ୍ଗନା ଗୋ ॥ ୨୯ ॥

ଅନଙ୍ଗ ପୀଡ଼ା ଖଣ୍ଡନ    ଅଟୁ ମୋ ଶିର ମଣ୍ଡନ
ଅବହେଳ ନବୀନା ରତି ପାଳନ ଗୋ
ଆଚର ଉରୁ ପୀଡନ । ଅଙ୍ଗନା ଗୋ ॥ ୩୦ ॥

ଅଜିତ ମକର ଧ୍ୱଜ    ଆଜ ଜିଣି ଟେକ ଧ୍ୱଜ
ଅବଳା ବଳା × × × ବଜାଇ ଗୋ
ସରଜ ଏ ବନ୍ଧ ଧ୍ୱଜ । ଅଙ୍ଗନା ଗୋ ॥ ୩୧ ॥

ଅଲକ୍ତ ଅଞ୍ଜନେ ଚହ    ଅଲେଖରେ ଅଙ୍ଗ ଚହ
ଅଟୁ ଏ ଯେବନ ଚହକର୍ମ ସୁଗମା ଗୋ
ଆରମ୍ଭିବୁ ବନ୍ଧ ଟହ । ଅଙ୍ଗନା ଗୋ ॥ ୩୨ ॥

ଅଦ୍ଭୁତ ଲୀଳା ବିଭବ    ଅଜ୍ଞାତ ସ୍ୱୟମ୍ଭୁ ଭବ
ଅଳପ ଶ୍ୟାମସୁନ୍ଦର ଦେବ କହେ ଯେ
ମାଧୁର୍ଯ୍ୟ ଲୀଳା ପ୍ରଭବ । କୋବଦେ ହେ ॥ ୩୩ ।

ଆଦ୍ୟ ଶ୍ରୀ ଚୈତନ୍ୟ ସୂତ୍ର    ଆଖ୍ୟାତ ଉକ୍ତ ତନ୍ତ୍ର
ଅଷ୍ଟପୋଷି ବେଶ ପେଷଳ ନର୍ତ୍ତିପୁ ଯେ
ଦୂର ଦରଶନ ରତି । କୋବଦେ ହେ ॥ ୩୪ ॥

ଆଦ୍ୟ ଭାଗ ବୋଲି ପୁନ    ଅଚ୍ଛୁ ସାକ୍ଷାତ ଦର୍ଶନ
ଅତି ଉତ୍କଣ୍ଠିତା ପ୍ରଦୋଷ ସବତା ଯେ
ନୂତନ କେଳି ବିଧାନ । କୋବଦେ ହେ ॥ ୩୫ ॥

ଉସିତାଭିସାର ସ୍ୱୟ ଅଛି ଦ୍ୱିଖଣ୍ଡରେ ରସ
ଆଦ୍ୟ ଛନ୍ଦେ କାମ ବେଶ, ଦ୍ୱିଖଣ୍ଡରେ ଯେ
ମଦନ କେଳି ବିଶେଷ । କୋବିଦେ ହେ ॥ ୩୬ ॥

ଅଷ୍ଟ ଚଉପଦୀ ସ୍ଥିତ ଅଛି ମୁଗ୍ଧା ମଧ୍ୟା ଗତ
ଅବଦାତ ଅଭିସାର ଚଉତିଶା ଯେ
ପ୍ରଗଲ୍ଭା ଲକ୍ଷଣ ଖ୍ୟାତି । କୋବିଦେ ହେ ॥ ୩୭ ॥

ଅଛି ଭଙ୍ଗରେ ବୋହଦ ଉଟ୍ଟେଚଙ୍କ ବନ୍ଧ ପଦ
ଅଷ୍ଟମେ ବନ୍ଧ ମନାସ ବନ୍ଧ ପୁନ ଯେ
× × ସୁଖୀ × ଏ ପଦ । କୋବିଦେ ହେ ॥ ୩୮ ॥

ଇତିଶ୍ରୀ ଅନୁରାଗ କଳ୍ପଲତା ପଞ୍ଚମ ସ୍ତବକ ସମ୍ପୂର୍ଣ୍ଣଂ ।



# ଷଷ୍ଠ ସ୍ତବକ

## — ପ୍ରଥମ କୁସୁମ —

## ଶ୍ରୀ ଯମୁନା ସ୍ତୁତି ଲେଖନ

॥ ଶ୍ରୀ କୃଷ୍ଣାୟ ନମଃ ॥

॥ ଶ୍ରୀ ଗଣେଶାୟ ନମଃ ॥

( ରାଗ — ମାଳବ ଗୌଡ଼ା ବାଣୀରେ )

ଉସ୍ୱ ଶନ ଅର୍ଥ—

ଅର୍କ ଆତ୍ମଜାରେ ସଦା ବିନୟ
ଅଚିନ୍ତ୍ୟ ବିଧୁ ରୂପ ଅଦ୍ୱିତୀୟ ॥ ୧ ॥

ଅର୍ଦ୍ଧ ଭଜନ ସନସାର କାୟ
ଅନିମିଷ ରଶ୍ମିରେ ଶୋଭମାୟ ॥ ୨ ॥

ଅବିରତ କମଳାଙ୍କେ ରଞ୍ଜିତ
ଆଖ୍ୟାତ ବିଶ୍ୱରେ କୁମୁଦବନ୍ତ ॥ ୩ ॥

ଆଲୋକରେ ରଜେ ପ୍ରଭା ଚନ୍ଦର
ଆଳୟ ବନଶ୍ରୀ ସୁଖକର ॥ ୪ ॥

ଅଙ୍କ ଶ୍ରୀବତ୍ସ ମକର କୁଣ୍ଡଳୀ
ଅଧ୍ୱ ଶ୍ରମ ତୃଷ୍ଣା ହରଣେ ଝଳି ॥ ୫ ॥

ଅମୃତମୟ ଶରୀର ବିହର
ଅଘ ଘନ ତାପ ବିନାଶକାଶ ॥ ୬ ॥

ଆଦ୍ୟେ ବିବୁଧ ଜନକ ବନ୍ଦନ
ଅଧିକ ଗୋପେ ଉଚ୍ଚ ବିଦ୍ୟମାନ ॥ ୭ ॥

ଅଭଙ୍ଗ ସଭଙ୍ଗରେ ସ୍ନେହ ସାଧୁ
ଅର୍କଜା ଅଗାସ୍ତୁ ତ ବିସ୍ତୁ ବିଧୁ ॥ ୮ ॥

ଶ୍ଳେଷ—

ଅଭ୍ରମତଦା ଗିରିଜା ସାକ୍ଷାତ
ଆଶ୍ଳେଷ ବକ୍ଷକଣ୍ଠ ଅବିରତ ॥ ୯ ॥

ଆମନ୍ତ୍ରନ ପୁଣ୍ୟଶ୍ଳୋକର ପଥ
ଅଶେଷ ପୁଣ୍ୟ ଜନର ସୁଖଦ ॥ ୧୦ ॥

ଅନୁଗ୍ରହଂ[1] କର ଅର୍କ ନନ୍ଦନା
ଅଧୋକ୍ଷଜ ବ୍ରଜକେଳି ବର୍ଣ୍ଣନା ॥ ୧୧ ॥

ଅତରେ ବାଟରେ ଦେବ ନର୍ତ୍ତେ
ଅନ୍ତରେ ସେ ଯେନ ଶରଣାଗତ ॥ ୧୨ ॥

ଅନାଦୃତ ତାତ ମାତଙ୍କୁ[2] କର
ଆଶ୍ରୟେ ଉଭୟ ଉଭୟଙ୍କୁ ହର । ୧୩ ॥

ଅକସ୍ମାରେ ବ୍ୟକ୍ତ ସ୍ୱେଚ୍ଛ ନଦାନେ
ଆସ୍ତୁର୍ଣ୍ଣ କମମାଭସ୍ଥ ପ୍ରଦାନେ ॥ ୧୪ ॥

ଆଗତ ପ୍ରାତେ ଭନେ ପୂର୍ଣ୍ଣମାସୀ
ଅଚ୍ୟୁତର ଦରଶନେ ଲାଳସୀ । ୧୫ ॥

ଅଙ୍ଘ୍ରି ବନ୍ଦନ କରାଇ ଯଶୋଦା
ଅତି କୃଶନ୍ତୁଂ ଏ ମମ ଦୁଃଖଦା । ୧୬ ॥

ଅମୃତ ସମ ଅଶନ ନ ରୁଚ
ଆପେ କନ୍ଦର୍ପ ଦେଖ ହୃତ ପାନ୍ଥ ॥ ୧୭ ॥

ଆଣ ବୃଷଭାନୁ ଜେମା ଆଳସ୍ୟ
ଅମୃତାଧିକ ପାକ ସ୍ୱାଦୁମୟ ॥ ୧୮ ॥

ଅଶନରେ ଆପ୍ୟୁବଳ ବର୍ଦ୍ଧନ
ଅନ୍ତର ଦେଖ କଣ୍ଠ ସେ ବଧାନ ॥ ୧୯ ॥

---

୧ । (କ) ଅନୁଗୃହ୍ଣ
୨ । (କ) ମା ଭ୍ରାତଙ୍କୁ
(ଖ) ଭ୍ରାମାତଙ୍କୁ

ଅସମ୍ଭବ ଯାଚ୍ଞା ଜନନୀ ଖେଦ
ଆଶ୍ଳେଷ ଉଦ୍‌ବେଗ କଲା ହୃଦ || ୨୦ ||

ଆତ୍ରପ୍ରାଣ ରକ୍ଷିବ ଆତ୍ରପୁକୁ
ଅର୍କ ରଶ୍ମି ନ ହରିବ ପଦ୍ମକୁ || ୨୧ ||

ଅଲକ୍ଷ ହେବ ସମ୍ୟ ଦାୟିନୀ
ଅଭିମତ ମୋ ତଦନୁଯାୟିନୀ । ୨୨ ।

ଆଯ ନ ଦେଖି ଧନିଷ୍ଠା ବ୍ୟଥିତ
ଆସିବେ ରାଧା ତ ବନ ବସି ତ । ୨୩ ||

ଆଦ୍ୟରେ ବିଶ୍ୱକର୍ମା ନାମଧେୟ
ଅଗ୍ରଜନ୍ମା କହୁଛନ୍ତି ବିଧେୟ । ୨୪ ।

ଆତ୍ମଜହୀନା ସ୍ୱେ ଶୋଭା ଶରୀର
ଅଛୁ ଚିନ୍ତାମଣି ବ୍ରଜେଶ୍ୱରର || ୨୫ ।

ଅନୁଗ୍ରହଂ[୧] କଲେ ହେବ କୃତଜ
ଆକାଂକ୍ଷା ଜଟିଳା ପ୍ରୀତି ପେଶଳ || ୨୬ ||

ଆବାଲ୍ୟ ପ୍ରୀତି ସୁଭଦ୍ରା ରମଣୀ
ଆସିବେ ପେଟିଲେ ନାଗ ଗ୍ରାମଣୀ || ୨୭ ||

ଅନ୍ତେ ଯଶୋଦାର ଚୁମ୍ବେ ହରଷ
ଆଣି ନମନ୍ତ୍ରଣ ବଧୂ ସରସ || ୨୮ ||

ଅଶ୍ରାନ୍ତ କୃଷ୍ଣ ପେଷି କୁନ୍ଦଲତା
ଆସି ବୃନ୍ଦା ଭେଟି କହେ ବାରତା || ୨୯ ||

ଅସନମତ ବୃନ୍ଦା ଶୁଣି ଭଣି
ଅହ୍ନ ମଧ୍ୟେ ବଧୂ ପୂଜେ ଦ୍ୟୁମଣି || ୩୦ ||

ଅବଧୂ ହେଲେ ଆପ୍ତୁ ଲକ୍ଷ୍ମୀ କାନ୍ତି
ଆଳାପ ନାନ୍ଦୀମୁଖୀ ବନ୍ଧୁମତ || ୩୧ ||

---

୧ । (କ) ଅନୁଗ୍ରହ

ଅବଜ୍ଞା କଲେ ବରଣକୁ ଦୋଷ
ଆସି ମୂଖଗ୍ର କହେ ସ୍ୱେଚ୍ଛ ଭାଷ ।୩୨।

ଆଦ୍ୟେ ଗ୍ରନ୍ଥ ପଢେ ରଢ ଅର୍ଚ୍ଛନ
ଅଙ୍ଗୀକାର କଲ ବୃନ୍ଦା ବଚନ ॥୩୩॥

ଆଲୋକ କୁନ୍ଦଲତାରେ ପତ୍ର
ଅବଳା ବଧୂ ବଧୂନୁଦ ହର ॥୩୪॥

ଆସିବ ମାତ୍ର ତାହାକୁ ବଞ୍ଚାଇ
ଅଭ୍ୟାଖ୍ୟାନ କୁନ୍ଦଲତା ବୋଲାଇ ।୩୫।

ଅଭିସଂସନ କହିଲେ ସାଧୂରେ
ଆପଦ ପଦ ପଦକେ ନ ଦୂରେ ॥୩୬।

ଅପଦେଶ ନାହିଁ ଆମ୍ଭର ସଙ୍ଗ
ଅନ୍ତୁ କ ତା ଘର ବଧୂ ପ୍ରସଙ୍ଗ ॥୩୮॥

ଆଦେଶ ଜରଣ୍ଡ ଦେଲ ରାଧାଙ୍କୁ
ଆହୃତ ବ୍ରଜ ଈଶ୍ୱରୀ ରନ୍ଧାକୁ ॥୩୮॥

ଆଳସ୍ୟ ତାଙ୍କ ଆମ୍ଭ ନୋହେ ଭଲ
ଆସିବ ଯାମ କେ ସାରି ରନ୍ଧନ ॥୩୯॥

ଅନ୍ତେ ହରଷ ବାହାରେ ବାମତା
ଆଗତ ଗତକୁ ନୋହେ ମମତା ॥୪୦॥

ଅତି ବୃଦ୍ଧା ବୋଧୁଁ ହୋଇ ସଂଭ୍ରମ
ଆକଳ୍ପ କଳ୍ପନା ଜାତ ବିଭ୍ରମ ॥୪୧॥

ଆଭରଣ ବିପର୍ଯ୍ୟସ୍ତକୁ ଗୃହିଁ
ଆନ ପ୍ରିତ ମୂଖେ ଚିହ୍ନାଇ କହି ॥୪୨॥

ଅଳ୍ପ ବୟସ ଲଭ ପଥସ୍ମରଣୀ
ଆଳି ମେଳେ ଗର୍ଭାଳସି କରଣୀ ॥୪୩॥

ଆସି ଯଶୋଦାର ପଦ ବନ୍ଦନ
ଅଭିନବ ବଧୂ କ ଆଗମନ ॥୪୪॥

ଆଘ୍ରାଣ ଶୀର ଦ୍ୱରପ ବଦନେ
ଅଣି ପ୍ରବେଶିଲେ ପାକ ସଦନେ ॥ ୪୫ ॥

ଅଛନ୍ତି ଭୁଜା ରୋହ୍ଣୀ ଆଦରେ
ଆଳଚସ୍ଥ ସର୍ବ ନପୋଜ୍ୟ କରେ । ୪୬ ॥

ଅନ୍ନ ମେଞ୍ଜନଂ ପିଷ୍ଟକ ଯେ ବଧି
ଅନେକ ସ୍ପୂକ ଯାମେ ହୋଯ୍ୟୁ ସିଦ୍ଧି ॥ ୪୭ ॥

ଅଚ୍ୟୁତ ଗୋ ଦୋହନ ଅନ୍ତେ ବଳେ
ଆସି ଭକ୍ତ୍ୟ ସ୍ନାନ ବଧି ସରଜେ ॥ ୪୮ ।

ଆଭରଣ ଦ୍ୱାଦଶରେ ଛଜିତ
ଅଙ୍ଗ ସୁରେଶ ମାଳ ମାଳଜିତ ॥ ୪୯ ।

ଅମ୍ବର ପୀତ ମଣି କଉସ୍ତୁଭ
ଅହ୍ୱଭୁକ ପିଚ୍ଛ ଚୂଡ଼ା ସୁଶୋଭ ॥ ୫୦ ॥

ଅଟେ ବୈଜୟନ୍ତୀ ମାଳା ରୁଚିର
ଆଲମ୍ବ ବନମାଳା ଗୁଞ୍ଜା ହାର ॥ ୫୧ ।

ଆକୃତ ମକର କୁଣ୍ଡଳ ଶ୍ରୁତି
ଅମୂଲ୍ୟ ଗଜମୋତି ନାକେ ଭାତି । ୫୨ ।

ଅନଦ୍ଧତ ରତ୍ନ କଙ୍କଣ କରେ
ଅମଣ୍ଡନ କ୍ଷୁଦ୍ର ଘଣ୍ଟି କଟୀରେ ॥ ୫୩ ॥

ଅଙ୍ଘ୍ରି ନୂପୁର ରବ ପୂରେ ପଥ’
ଅଟନ୍ତି ମନମଥର ମନ୍ମଥ ॥ ୫୪ ॥

ଝଣନ ସ୍ଥାନେ ଆସି ପରବେଶ
ଆଳସମେ ଗୋପସୁତ ବଶେଷ । ୫୫ ॥

---

୧ । (କ) ଅର୍ଣ୍ଣ ମେଞ୍ଜନ = ଅନ୍ନ ବ୍ୟଞ୍ଜନ

୨ । ‘କ’ ପୋଥିରେ ‘ପଥ’ ନାହିଁ ।

ଆଣି ସମସ୍ତ ବେଣ୍ଟଣୀ ପରଶେ
ଆପେ ରାଧା ପାଶେ ଭରେ ହରଷେ ॥ ୫୬ ॥

ଅନାନ୍ତ ଗବାକ୍ଷ ଜାଲ ରନ୍ଧ୍ରରେ
ଅଗ୍ରେ ଜନମା ଚନ୍ଦ୍ରକାନ୍ତ ଶ୍ରଦ୍ଧାରେ ॥ ୫୭ ॥

ଅଛୁ ମୀନ ମୀନକେତନ ଜାଲେ
ଆବଦ୍ଧ ହୋଇ ଭ୍ରମେ କି ଚଞ୍ଚଳେ ॥ ୫୮ ॥

ଅଚ୍ୟୁତ ଲାବଣ୍ୟ ସାର ଆଲୋକ
ଅନ୍ତ ଲୋକ ପ୍ରେ ଡେଇଁବ ଚମକ ॥ ୫୯ ॥

ଅନ୍ତ ନେତ୍ର ଗୋବନ୍ଦର ସରସେ
ଅରବନ୍ଦ ମୁଖ ସୁନ୍ଦରେ ରସେ ॥ ୬୦ ॥

ଅଣିମାଦ୍ୟ ସୁଖ ନେନ୍ତେ କେବଳ
ଆଚମନ ଅନ୍ତେ ଭୁଞ୍ଜି ତାମ୍ବୁଳ ॥ ୬୧ ॥

ଅବଶେଷ ପ୍ରେ ଧନଷ୍ଠା ନେଇ
ଅନ୍ତ ଗୁପତେ ପ୍ରିୟାକୁ ଭୁଞ୍ଜାଇ ॥ ୬୨ ॥

ଆଦରେ ଯଶୋଦା ରାଧିକା ଆଣି
ଆରତ୍ର ନେନ୍ତେ କନ୍ଥ ପ୍ରୀତି ବାଣୀ ॥ ୬୩ ॥

ଆଭରଣ ବାସ କଲେ ପ୍ରଦତ୍ତ
ଆତ୍ମଜ ବଧୂକୁ ଯା ସଂଚରତ[1] ॥ ୬୪ ॥

ଆଳ ଅନୁରୂପେ ଭୂଷଣ ବାସ
ନେଲ ଦେଇ କନ୍ଥ ପ୍ରୀତି ହାସ ॥ ୬୫ ॥

ଆନନ୍ଦେ ରାଧା ପ୍ରବେଶ ସ୍ୱବାସେ
ଅନ୍ତ ବୃନ୍ଦା କୁନ୍ଦଲତା ପ୍ରଶଂସେ ॥ ୬୬ ॥

ଅବଧି ନ ବର୍ଜି କଲୁ ପ୍ରବେଶ
ଆଜଠାରୁ ତୋତେ ମୋର ବିଶ୍ୱାସ ॥ ୬୭ ॥

---

୧ । (କ) ସଂସ୍କୃତ

ଆଭରଣ ବାସ ଦେଖି ମୋ ଚିତ୍ତ
ଏକ ଚୂଡ଼ା ଅଛି ବଧୂ ପ୍ରେଷିତ ।୬୮।

ଅଚ୍ୟୁତ ଗୋ ଚାରଣ କରେ ବନ
ଅନ୍ତ ଶେଷରେ ବ୍ରଜେ ଆଗମନ ।।୬୯।।

ଆଗ୍ରହେ ପ୍ରଲମ୍ବ ଉଠରେ ବଶାରେ
ଆଳସ୍ୟେ ରହେ ଖେଦ ମମାଷାରେ ।। ୭୦ ।।

ଅଚ୍ୟୁତ ଥାଇ ନ ଗଲାଏ ଭସ୍ମ
ଅନ୍ତେ ପାଞ୍ଚିଲେ ଶୁଣି ତାର ଛସ୍ମ ।୭୧।।

ଅନ୍ତରେ ବଜାଏ ଖଣ୍ଡିର ବନ
ଅଧୀଶସେତୁ କୃଷ୍ଣ ଦରଶନ ।୭୨।

ଅର୍ଜୁନ ପକ୍ଷ ଦ୍ୱିଶସ୍ୟା ପୌର୍ଣ୍ଣମୀ
ଅମୃତାଂଶୁ ଲକ୍ଷ ମନେ ଜନମି ।୭୩।

ଅଚ୍ୟୁତର ଶୁଣି ମୁରଲୀ ସ୍ୱନ
ଆସିଲେ ଚେଳଣ ନଜ ଜୀବନ[୧] ।୭୪।।

ଅପହୃତ ହେଲା ଘରରେ ରମ
ଆସିଲେ ମଧୁବନ ତେଜ ଗ୍ରାମ ।୭୫।
ଅର୍ଜନ ଆସନ୍ତେ ଅମା ସେ ବନ
ଅଂଶୁକ ବନାରେ ଢଗ ବସନ[୨] ।୭୬।।

ଅରଣ୍ୟେ ଗମା ତେଜଲ୍ଲ କଙ୍କିଣି
ଆପଣ ତମାଳ ସ୍ୱଦାମେ ପୁଣି ।୭୭।।

ଆଗତ ଉଜ୍ଜ୍ୱଳନ୍ତ ଅନୁମାନ
ଅତି ଜରତ ହେଲା ସେ କାନନ ।। ୭୮ ।।

---

୧ । (ଗ) ଅଧିଶନ୍ତୋ।

୨ । (ଗ) ବନ

୩ । 'ଙ' ପୋଥିରେ ଏହି ପଦଟି ନାହିଁ ।

ଅଟବ ସୁରଭି ବୃଷଭ ତେଜେ
ଅରଣ୍ୟ ରଥ ବେଂଣି ଜଳ ଘାଟେ ।। ୭୯ ।।

ଅନ୍ତର ସେଣୁ ସେ ବନ୍ଧୁଅ ପରେ
ଅନ୍ୱହନ ଦେବ ପ୍ରଷ୍ଠ ପୃଷ୍ଠରେ ।। ୮୦ ।।

ଅରଣ୍ୟ ନ ତେଜଲା ମହାବଳ
ଅସୁର ତା ରୂପ ହେଲା ଚପଳ ।। ୮୧ ।।

ଆରମ୍ଭିଲେ ଖେଳ ହୋଇ ଯୁଗଳ
ଅବଶ୍ୟ ହାରିଲେ ବନ୍ଧବ ଗଳ ।। ୮୨ ।।

ଅବଧି ଭାଣ୍ଡୀର ବଟ ପର୍ଯ୍ୟନ୍ତେ
ଆସନ୍ତି କନ୍ଧେ ବନ୍ଧୁ ହୋଡ଼ମତେ ।। ୮୩ ।।

ଅଚ୍ୟୁତ ହାରି ବହିଲେ ସୁଦାମ
ଅସୁର କନ୍ଧରେ ବହିଲା ରାମ ।। ୮୪ ।।

ଅନ୍ତେ ଚିନ୍ତାକରେ ସୁ ମହାବଳ
ଆଜ କଂସକୁ ଦେବି ପ୍ରେତ ବଳ ।। ୮୫ ।।

ଅତିକ୍ରମି ଗଲା ଭାଣ୍ଡୀର ବଟ
ଆକାଶେ ରୂପ ଧଇଲା ବିକଟ ।। ୮୬ ।।

ଅଚ୍ୟୁତ ଡାକିଲେ ଅସୁର ମାର
ଆପଣ ଶୁଣି ହେଲେ ମେରୁ ଭାର ।। ୮୭ ।।

ଅନନ୍ତ ମହିମା ଯେଉଁ ଅନନ୍ତ
ଅନନ୍ତରେ କଲେ ଦନୁଜ ଅନ୍ତ ।। ୮୮ ।।

ଆଣ୍ଠ ମୁଷ୍ଟିରେ ବମନ ରୁଧିର
ଅବନୀ ପାତ ହୋଇ ଭଗ୍ନ ଶିର ।। ୮୯ ।।

ଆକାଶେ ତୁରଇ ଦୁନ୍ଦୁଭି ସ୍ୱନ
ଅମ୍ବରେ ବରଷା କଲେ ସୁମନ ।। ୯୦ ।।

ଆନନ୍ଦେ ବ୍ରଜକୁମାରେ ଗ୍ରାମରେ
ଆଲିଙ୍ଗନ କଲେ ଅତି ପ୍ରେମରେ ।। ୯୧ ।।

ଊଦ୍ଧ ଟେଟେ ବ୍ରଜେ ବେଂଶୀ ନାଦିତ
ଆକର୍ଣ୍ଣିତେ ଗୋପାଙ୍ଗନା ମୋଦିତ ॥ ୯୨ ॥

ଆଳସ୍ଥ ତେଜ କେ ପୁର ପ୍ରାସାଦ
ଆରୋହି ନାଶେ ବିଚ୍ଛେଦ ବିଷାଦ ॥ ୯୩ ॥

ଅକ୍ଷି ପକ୍ଷୀର ଚିର ତୃଷା ନାଶ
ଅଧିକ ପାନେ ଲାବଣ୍ୟ ପୀୟୂଷ ॥ ୯୪ ॥

ଅଞ୍ଜନ ରଞ୍ଜନ ଖଞ୍ଜନ ଦୃଶେ
ଅଞ୍ଚଳରେ ରାଧା ଦେଖନ୍ତି ତୋଷେ ॥ ୯୫ ॥

ଅତ୍ରପ ପ୍ରଳମ୍ବ ନିଧନ ଶୁଣି
ଅଦ୍ଭୁତ ଶୁଣିଲେ ଗୋପାଳ ଶ୍ରେଣୀ ॥ ୯୬ ॥

ଅଶ୍ରୁ ନେତ୍ର ମାତ ସ୍ରବତ ସ୍ତନ
ଆନନ୍ଦେ କୃତ ନନ୍ଦନ ପାଳନ ॥ ୯୭ ॥

ଆସ୍ୱାଦ ପଦାରବିନ୍ଦ ଆସବ
ଅତି ମତ୍ତ ଶ୍ୟାମସୁନ୍ଦର ଦେବ ॥ ୯୮ ॥



— ଦ୍ଵିତୀୟ କୁସୁମ —

# ଆଠ ପୋଇ

॥ ନ ପୋଇ ବାଣୀରେ ॥

( ଏକ )

ଶ୍ଳୋକ—

ଆସି କୃଷ୍ଣ ବଂଜ ବନେ ରାଧା ରୂପ ଧ୍ୟାନେ
ରାଧାକୁଣ୍ଡ କୂଳେ ପ୍ରେମିକା ରଙ୍ଗ
ଅଟେ ହଂସାବଳି ବାସ ସୁଷମା ବିଶେଷ
ପଦ୍ମାବଳି ଓଢଣୀରେ ଶୋଭା ॥ ୧ ॥

ଅତି ପୂର୍ଣ୍ଣ ଘନ ରସେ ପୁଣ୍ଡରୀକ ଆସ୍ୟେ
ହସି ଗୃହେଁ ଇନ୍ଦୀବର ନେତ୍ରେ
ଆସେ ସେ କାଳେ ଶ୍ରୀମତୀ କୃଷ୍ଣ ପ୍ରେମେ ମତ୍ତ
ସଜନୀ ପୁଞ୍ଜରେ ଗୃରୁ ଗାତ୍ରେ ॥ ୨ ॥

ଅନ୍ତେ ଆନନ୍ଦ ଗୋବିନ୍ଦ ମୁଖ ଅରବିନ୍ଦ
ମଧୁ ଦେଖି ଲୋଭ ମଧୁ ପାଳି
ଆଲିଙ୍ଗନ ସେହେ କରୁ ଦୁହିଁଲେ ରମ୍ଭୋରୁ
ଓଗାଳ ବୋଲନ୍ତ ଆଳି ଆଳି ॥ ୩ ॥

ଶ୍ଳୋକ—

ଆମ୍ଭ ସଜନୀ ପ୍ରତିପ ଦରଶନୀ ରୂପ
ଅଧର ଅରୁଣ ବିରଜିତ
ଅସି ତମ ଭ୍ରୂରୂପରେ ତ୍ରାସ ଛଡପରେ
ନେତ୍ର ଶର ଫିଟି ସେ ଅଙ୍କିତ ॥ ୪ ॥

ଆଜ ଗ୍ରହଣକୁ ଅବକାଶ ନାହିଁ ଲବ
ପ୍ରେକ ବାଶି ଯୋଗ ହେଲା ଭଙ୍ଗ
ଆନ କେ ବୋଲେ ଅବଳା ଧରାଧରେ ବଳା-
ନୁଜ ହୋଇବାରୁ ବଳେ ଭୃଙ୍ଗ । ୫ ।

ଅଭିମନ୍ୟୁ ମାତା ଯେଣୁ ଅଭିମନ୍ୟୁ ତେଣୁ
ନରକ୍ତ ଭୂମିରେ ଜନମ ଥାଇ
ଆଖ୍ୟା ଭୂଷିତ ଦୁଃଖିଲେ ପଡ଼ିଲେ କ୍ଲେଶକେ
ଆସି ପାରିବ କ ଭଲ ହୋଇ । ୬ ।

ଆଳ ବଚନେ କାତର ହୋଇ ତରତର
ତୃଷିତ ଅଧରାମୃତ ଧାପି
ଅତି ଅନଙ୍ଗ ବକାର ଘୋର ଅନ୍ଧକାର
ଯୋଟିବାରୁ କିଛି ନ ଦିଶଇ । ୭ ॥

ଆମ୍ରେଶ୍ୱର ଆତୁରକୁ ବର୍ଦ୍ଧନ ହେତୁକୁ
ଚମ୍ପକ ମୂଳ କୁଞ୍ଜିମେ ରହେ
ଅନ୍ୱେଷଣା କଲେ ହରି ଡାକ ଗୀବେଶ୍ୱରୀ
ଶ୍ରୀ ଶ୍ୟାମସୁନ୍ଦର ଦେବ କହେ । ୮ ।

—ଗୀତ—

( ରାଗ—ବରାଡ଼ି )

॥ ଆଷାଢ଼ ଶୁକ୍ଳ ବାଣୀରେ ॥

ଅଙ୍କ ଚରଣେର ମହୀ ଦେଶରେ
ଅବଲୋକ ସଂଖ୍ୟା ଊନବିଂଶରେ
ଅଚ୍ୟୁତ ସେହି ମାଗ ଅନୁସରେ
ଆତୁର ହୋଇ ଚୁମ୍ବ ଆଶ୍ଳେଷରେ
ଅଙ୍କ ଅଙ୍କୁଶରେ,
ଅଛିନ୍ନ ପୁନ ତୃଣ ବିଶେଷରେ ॥ ୧ ॥

ଶ୍ଳୋକ—

ଛତ୍ରାଶ୍ୱଧ୍ୱଜପୁଷ୍ପବଲ୍ଲୀବଳୟାନ୍ ପଦ୍ମୋର୍ଦ୍ଧ୍ୱରେଖାଙ୍କୁଶାନ-
ଅର୍ଦ୍ଧେନ୍ଦୁଂ ଚ ଯବଂ ଚ ବାମମନୁଜାଂ ଶକ୍ତିଂ ଗଦାଂ ସ୍ୟନ୍ଦନମ୍ ।
ବେଦୀକୁଣ୍ଡଳମତ୍ସ୍ୟପର୍ବତଦରାନ୍ ଧତ୍ତେଽପସବ୍ୟଂ ପଦଂ-
ତାଂ ରାଧାଂ ଚିରମୂନବିଂଶତିମହାଲକ୍ଷ୍ମ୍ୟାର୍ଚ୍ଚିତାଙ୍ଘ୍ରିଂ ଭଜେ ।୧।

ଅନାଦ୍ୟ ଅଚ୍ୟୁତ ପ୍ରତିଆଶାରେ
ଅଙ୍ଗନା ଆଲୋକ ପ୍ରତି ଆଶାରେ
ଅନୁରୁଦ୍ଧ ଗନ୍ଧ ପାଇ ଯୋଷାରେ*
ଅଳ ବେଷ୍ଟିତ ଚମ୍ପକ ପ୍ରସାରେ
ଅଙ୍କୁରିତ ରସାରେ,
ଆଲୋକ ଗତ କୃଷ୍ଣ ମନସାରେ ।। ୨ ।।

( ଦୁଇ )

ଆଗମନରେ ପଂପୁଷକର ଯଥା ଦଶ
ମାରକତ ଦ୍ୟୋତେ ସୁଧା ଦଶ
ଅଛୁ ଯେଉଁଠାରେ ରମଣୀ ଜାଣି ପୁଂସମଣି
ଗଢ଼ିଲ ଦଶଇ ବନ ଶିରେ★ ।। ୧ ।।
ଆଣୁ ଧରଣ କାହିଁଲୁ ସେ ବମ୍ବ ପାଚିଲା
ଅଧର ଉଚ୍ଚ ହାସରେ ବଶ
ଆସ୍ୟ ପ୍ରେମିକ ଚେଷ୍ଟିକ ପ୍ରେମାଙ୍କ ଆଣିକ
ଜଣି ଦେଉଥିଲା ସୁଧା ରସ ।। ୨ ।।

---

* (କ) ଅନୁରୁଦ୍ଧ ଗନ୍ଧ ପାଇ ଯୋଷାରେ
ଅଙ୍ଗନା ଆଲୋକ ସ୍ତୁତ ଆଶାରେ । (ପୋଥିପାଠ)

★ ବନକ୍ଷିତ (ପୋଥିପାଠ)

ଆପେ ପାଣିକ ଛଡ଼ାଇ ଲୋଡ଼ନ୍ତେ ଜନ୍ମାଇ
ଅଂଶୁଗ ଯୋଗେ କି ହେମ ବଲ୍ଲୀ
ଅଗୋଚର କି ଭ୍ରମରେ ଅମ୍ବୁଜ ଅମ୍ବରେ
ଗୋପ୍ୟ ହୋଇଥିଲେ କୃଷ୍ଣ ବୋଲି ।। ୩ ।

ଅଳ୍ପ ତପି ଶ୍ରମା କହ୍ନ ତୁମ୍ଭ ରୂପ ସେହ୍ନ
ତାଙ୍କ ସ୍ୱଭାବକୁ ତୁମ୍ଭେ ଧର
ଅଚ୍ଛୁ ମିଶତା ସ୍ୱେଚ୍ଛନ ତବ ସୁଖଦାମା
ଚାହାଇଂ ଦେଲେ ଚମା ଲୁଚବାର । ୪ ।

ଅଳ ଦକ୍ଷିଣ ନାୟକ ସୁମନ ସାୟକ
ଗୁଣବନ୍ତ ଯାହା ଯୋଗୁଁ ଦେଖ
ଆସ୍ୱାଦନ୍ତ ସବ ମଧୁକର ତନ୍ତ୍ରେ ସାଧୁ
ରସାଳ କାଳ ବନା କି ସୁଖ ।। ୫ ।।

ଅଧୋକ୍ଷଜ ବାଣୀ ଶୁଣି ପ୍ରିୟା ପ୍ରତିବାଣୀ
ରସାଢ୍ୟ ପ୍ରେମ ନ ସୁମରେ
ଅତି ବରଷାରେ ପ୍ରାନ୍ତି ବଢ଼ାଇ ମାଳତି
ଗଣିକା ସଙ୍ଗରେ ଯେ ବହରେ ।। ୬ ।।

ଅଟେ ଧନ୍ୟ ଜୀବଂଜୀବ ସୁଧାପାନେ ଜୀବ
ତୋଷଇ କେମନ୍ତ ଦୃଢ଼ ବ୍ରତ
ଅନ୍ୟେ କରଇ ଆହାର ପ୍ରୀତି ଯେ ଯାହାର
କୃଷ୍ଣ ବୋଲେ ହେଜ ସେହ୍ନ ମତ । ୭ ।

ଆସି ଭଷି ଯେଉଁପର ପରସ୍ପରେ ପର-
ରମ୍ଭ କଲେ କୃଷ୍ଣ କାମ ବଶେ
ଅଳ ବଳତ କେତକୀ ଚୁମ୍ବଇ ଜଡ଼ କି
ଶ୍ରୀ ଶ୍ୟାମସୁନ୍ଦର ଦେବ ଭାଷେ ।। ୮ ।।

— ଗୀତ —

( ଆଷାଢ ଶୁକ୍ଳ ବାଣୀ )

ଅଷ୍ଟସଖୀ ବୃନ୍ଦା ମଞ୍ଜରୀ ବାର
ଅନ୍ୟୋନ୍ୟ ଉପମାରେ ଛଳିବାର
ଆଳସ୍ଯ କ ନ କର ରଣ ରଣ
ଆଖଣ୍ଡଳ ପାଳ କ ଆଭରଣ
ଅସିତ ତମାଳ,
ଆଶ୍ଳେଷ କୁସୁମିତ କୃତ ମାଳ ॥ ୧ ॥
ଅର୍କଜା ଶୋଭନ ପଦ୍ମ ପରାଗେ
ଆସ୍ୟ ବଧୂ ସାଧୁ କ ଉପରାଗେ
ତାଙ୍କୁ ପାଇ ଶୋଭା ଅସାଧାରଣ
ଆମ୍ଭ ସଖୀ କୃତର ସାଧାରଣ
ଅଚ୍ୟୁତେ ମନ୍ଥନ,
ଅମୃତ ଆଦି ଲାଭ ଏକଥନ ॥ ୨ ॥

---

( ତନି )

ଅଳି କେ ବୋଲଇ ଆମ୍ଭ ପ୍ରାଣସଙ୍ଗୀ ଅମ୍ଭ-
ଛୁଦ ନେହୀ ଅତ ତାର ଶୋଧି
ଆଖ୍ୟା କୃଷ୍ଣ ବୃନ୍ଦାବନ ଚନ୍ଦ୍ର ଶୋଭାବନ
ନ ତେଜନ୍ତି ଯୋଗେ ଲଭି ଲୋଧି ॥ ୧ ॥
ଆରେ ରାଧା ହୋଇ ସ୍ୱାନ୍ତ ତାରେ ତନୁ ଖାତ
ପ୍ରେମ ଆରବ୍ଧା ଅନଙ୍ଗ ବସ୍ତୁ
ଅଭିଷେକ ଯୋଗେ ରାଜେ ପୂର୍ବ ଉତ୍ତରେ ଯେ
ସୀତଦା ତତାଙ୍ଗୀ ଶୋଭା ବସ୍ତୁ ॥ ୨ ॥

ଅଟେ ହସ୍ତରେ ମଞ୍ଜୁଳ ଶାବ ଭବ ମୂଳ
ଅଛୁ ଭ୍ରୂରୁ ଶୋଭାରାଶି ପୁଛ
ଆନ ବୋଲେ ହର-ଚାଳ ବୋଳୁଚରେ ଢୁଳ
ମନସିଜ କଳାରନ୍ଧ୍ର ବ୍ରାତ ॥ ୩ ॥

ଆଣ୍ଠ ଭୁଜର ବନ୍ଧନ ଫିଟାଇବା ମନ
ପ୍ରିୟା ଗୁଞ୍ଜ ରୂପ ପରକଟ
ଅନ୍ତେ ପୃଷ୍ଠି ଅନୁରାଗ ମୂଖେ ତମ ଯୋଗ
ଗୁଡ଼ ବୋଲୁ କୃଷ୍ଣ ମାଗେ ଘଟ ।୪।

ଅଛୁ କାମନଗା ଚଷ ସୁବର୍ଣ୍ଣକୁ ଭର
ଅଛୁ ମୋତି ମାଳ ପ୍ରବାଳକୁ
ଆନ ଲେଉଡ଼ା ନାହିଁ ଘଟ ବେନ ଦଅ ଘଟ
ଫାଣିସ୍ଥିତ କୃଷ୍ଣା ପ୍ରବଳକୁ ॥ ୫ ॥

ଆସି ଲଳିତା ବଦନ୍ତି ଗୁଡ଼ କୁନ୍ଦଦନ୍ତୀ
ସୂର୍ଯ୍ୟପୂଜା ଅନ୍ତେ ନେମ ଘଟ
ଆଜ କାମ ଘଟୁଆଳ ହେଲ ଯେବେ ମୁକ
ମୂଲ୍ୟ କର ଦ୍ରବ୍ୟ କର ଲଟ ॥ ୬ ॥

ଆଲିଙ୍ଗନ ଚେଜ ହର ଜଙ୍ଘ ହେଲେ କ୍ଷଣ
ଜାତ ଉରଜ କୁଙ୍କୁମାଙ୍କିତ
ଅଙ୍ଗ ଅଙ୍ଗଦ ବଳୟ ଚାହ୍ନକୁ ବଳୟଁ
ଦୃଶୀ କଙ୍କଣ ଚାହ୍ନରେ ସୂଚ ॥ ୭ ॥

ଅନାଅନ ପରସ୍ପରେ ହାସ ଆନନରେ
କୃଷ୍ଣ ଉଗାଳିଲେ ଅଗ୍ରେ ରହୁ
ଆସୁ ଅବଧିକ କରି ଗଲେ ବର ନାରୀ
ଶ୍ରୀ ଶ୍ୟାମସୁନ୍ଦର ଦେବ କହୁ ॥ ୮ ॥

—ଗୀତ—

ଅଚ୍ୟୁତ ରହିବ ସଂକେତ କୁଞ୍ଜରେ
ଆଗେହ୍ବ ଆଶା ବଢତ କୁଞ୍ଜରେ
ଆଗତ ନ ହୋଇ ଆମ୍ର କଞ୍ଜରେ
ଆସି ଆଶୁଗ ଭେଦଇ ଖଞ୍ଜରେ
ଅନଳ ପୁଞ୍ଜରେ,
ଆସନ ତାପ ପଲ୍ଲବ ଶେଯରେ ॥ ୧ ॥

ଆଜ କ ଭେଟିବ ଚମ୍ପା ଗୋରକ
ଆଲିଙ୍ଗନେ ଲଭିଅଛୁ ହରିକ
ଆଳ ପୁରେ ନେଲେ ସହଚରିକ
ଆଜ ଅଦ୍ଧ ଦଣ୍ଡ କଣ୍ଠପାର କ
ଆସେ କଣ୍ଠୋଷ୍ଠ କ
ଅନ୍ତ ମନେ ବନ୍ଧୁ କୁଚ ଗିରିକ ॥ ୨ ॥

( ଗୃଢ )

ଅତ ଆତୁର ବର୍ଦ୍ଧନ ପ୍ରେମରେ ବନ୍ଧନ
ସସଂଭ୍ରମେ ଭ୍ରମେ ବୃନ୍ଦାବନ
ଆହା ରମଣୀଙ୍କ ମଣି ମୁଖ ନଶାମଣି
ଦେଖା ବାରେ ହୋଇ ପରସନ୍ନ ॥ ୧ ॥
ଅସି ପ୍ରେକ୍ଷି କାଳେ ଚନ୍ଦ୍ରାବଳୀ ଆଳି ଚନ୍ଦ୍ରା
କୃଷ୍ଣ ଭେଟି ବାଟେ କହେ ବାଣୀ
ଆମ୍ଭ ସଜନୀର କାମ ବ୍ୟାଧି ଯେ ନବମ
ଗୋପ ବୈଦ୍ୟ ସାଧ୍ୟ କହ ବାଣୀ ॥୨॥
ଅପେ ନାୟକ ସେ ଧୀର ପ୍ରଶାନ୍ତ ବେଭାର
ବୋଲେ ସାଧ୍ୟ ଜଣା ଅଛୁ ପୂର୍ବେ

ଆତ୍ମ ବେଦନା ଜଣାଇଁ ଆଣିବ ମଣାଇଁ
ଭେଟିବୁଁ ଗଉରୀ ଘାଟେ ଯେବେ ।। ୩ ।।

ଆଳି ସଙ୍ଗେ ତେଣେ ଗ୍ରଧା କାମ ଶରେ ବାଧା
କୃଷ୍ଣ ବଚ୍ଛେଦରେ ଫୁଲ ତୋଳି
ଅଙ୍କ ଅବଣେ ପୂଟଇ ଗମନେ ଝୁଣ୍ଟଇ
କାନ୍ତ ଥିବା ଦିଗେ ନେଇ ଡାଳି ।। ୪ ।।

ଅତ୍ୟୁଚ୍ଚ ଅଙ୍ଗୁଳରେ ଉଭା ବନ୍ଧ ଗ୍ରୀବ ଶୋଭା
ମୁଖ ଟେକ ଦେଖେ ସେହି ଦିଗେ
ଅଛୁ ଉଉରେ କୁସୁମ କହ୍ଵ ଅଧେ ଭ୍ରୁମ
ଚଡ଼ି ନେଇ ନରୂପର ବେଗେ ।। ୫ ।।

ଅଙ୍ଗି କୁସୁମ ପଡ଼ଇ ମୂଳରେ ଲେଉଡ଼ଇ
ଫୁଲ ଭାବ ତୋଳେ ପଲ୍ଲୀସକୁ
ଅଶ୍ରୁ ପୋଛେ ପୁଷ୍ପ ରଜ ପଡ଼ିବାର ବ୍ୟାଜ,
ଉର କମ୍ପେ ତେଜ ଉଲ୍ଲାସକୁ ।। ୬ ।।

ଅସମ୍ଭାଳ ହୋଇ ଲୁଚି ସଜଣୀକ ବଞ୍ଚି
ସଂକେତ କୁଞ୍ଜକୁ କଲେ ଗତ
ଆତ୍ମେଶ୍ଵରକୁ ନ ଦେଖି ପଦ୍ମମୁଖ ଶୁଖି
ଲୁଳିତ ମନ୍ଦାର ଓଷ୍ଠ ଭାତ ।। ୭ ।।

ଅଧୋକ୍ଷଜ ପାଦ ଧୂଳି ଉରଜରେ ବୋଳି
କୃଷ୍ଣର ଶଉ ପଲ୍ଲବ ଶେଯ
ଆଲିଙ୍ଗନ କରି ଶୋଇ ବିରହ କହଇ
ଶ୍ରୀ ଶ୍ୟାମସୁନ୍ଦର ଦେବରାଜ ।। ୮ ।।

—ଗୀତ—

ଅତି ଗୁରୁ ପୟୋଧର ଅନ୍ତରେ
ଅଚ୍ୟୁତ ତୁମେ ଧର ନଇନ୍ତରେ

ଆଲୋକ ଶାରିକା ଶୁକ କାଚରେ
ଆଳାପ ଦେଖିଛ ବନ ଭିତରେ
ଅଙ୍ଗନା ବ୍ରାତରେ,
ଅଭିହାର କେ ଚତୁ ଚରଚରେ ॥ ୧ ॥
ଅଗ୍ରେ ବସି କୀର କହେ ସରସେ
ଅଭ୍ୟାଖ୍ୟାନ କହ ନାଶ ସାରସେ
ଅଛ ଲୋଳ ବହୁ ନେହ ସାରସେ
ଅଧିକ କେ ତୁମ୍ଭଠାରୁଁ ସେ ରସେ
ଆଲୋକ ହରଷେ,
ଅଳ୍ପଦୂରେ ଚତୁ ଚାପ ହର ସେ ॥ ୨ ॥

( ପାଞ୍ଚ )

ଅତି ଆନନ୍ଦିତ ମତି କୃଷ୍ଣ ମନେ ଚିନ୍ତି
ଚପଳେ କରିବ ଆଲିଙ୍ଗନ
ଅଣିମାଦି ସୁଖମାନ ହେବ କି ସମାନ
ଚୁମ୍ବନ ଗୋଟିକ ଲଭ ଦାନ ॥ ୧ ॥
ଆସ୍ୟ କମ୍ପାଇବ ପରା ସେ ଲଜ୍ଜା ଆତୁରା
ପୃଷ୍ଠପର ପରୁଷରେ ଭଜି
ଅବଲମ୍ବେ ଦେବ କୋଳ କହିବ ଆକୁଳ
ମଦନ ସଙ୍ଗତେ ଗଲି ଭିଜି ॥ ୨ ॥
ଆସି ଦେଖି ଆଳିଚୟ କୁସୁମ ସଞ୍ଚୟ
ହରିଣାକ୍ଷୀ ହନା ଦୁଃଖୀ ହରି
ଅଟେ ସର୍ବ ଶୋଭାକର ଯଥା ପଦ୍ମାକର
ଜୀବନ ହନା ଜୀବନ ହରି ॥ ୩ ॥
ଅଛ ସକଳେ ମୋ ପ୍ରାଣ ଈଶ୍ୱରୀ ହକଳେ
ଖୋଜଇ ନ ହଣେ ଗଲେ କାହିଁ
ଅତି ଅଧୀର ଗୋବିନ୍ଦ ଶୁଣି ଆଳିବୃନ୍ଦ
ବୋଲନ୍ତି ସେଠାରେ ଥିଲେ ରହି ॥୪॥

ଅପେ ଆଦରରେ ମାଳ ଅମ୍ଳାନ ମୁକୁଳ
ତୋଳୁଥିଲେ ଶିଖ ଗୁନ୍ଥି ଗୁନ୍ଥି
ଆମ୍ଭମାନଙ୍କୁ ନ କହି ଗଲେ ପୁନ କାହିଁ
ମଦନ ବାଧା ନ ସହି ସହି ॥ ୫ ॥

ଆଳ ମୁଖୁଂ ପ୍ରେହା ଶୁଣି ପୁଲଗୁପ ପାଣି
ପୁଲଶରର ଭେଦୁଅଛୁ ହୃଦ
ଆସି ପ୍ରେକାଳେ ସୁବଳ ସେ ମଧୁମଙ୍ଗଳ
ଦେଖିଲେ ବଢେଷେ କୃଷ୍ଣ ଖେଦ ।୬।

ଆଳାପରେ କହେ ଧୀର ନୁହସି ଅଧୀର
ଚକୋର ନ ଭେଷି କ ଚନ୍ଦ୍ରମା
ଅସ୍ତାଚଳକୁ ମଣ୍ଡଇ ସମ୍ଭାବତ ନୋହି,
ଖୋଜୁଥିବେ ବନେ ନୃପ କେମା ।୭।

ଅନୁରାଗ ବହନ୍ତା ସେ ମନକୁ ପ୍ରେ ଆସେ
ନ କହି ସଂକେତ କୁଞ୍ଜେ ଗଲେ
ଆତୁରତ ସେ ଚତୁର ହୋଇ ଭୁମ୍ଭ ପଣ
ଶ୍ରୀ ଶ୍ୟାମସୁନ୍ଦର ଦେବ ବୋଲେ ।୮।

—ଗୀତ—

ଆଳ ଖୋଜ ଭେଟି ନବବୟସୀ
ଅଛନ୍ତି ସଂକେତ କୁଞ୍ଜରେ ବସି
ଅଶ୍ରୁନେହ ମୁଖ କୁଚେ ନବେଶୀ
ଅସ୍ତାଚଳେ ବଧୂ ଗଲ୍ଲ କ ଘଣି
ଆମ୍ଭଙ୍କୁ ନ କହି,
ଆସିଲୁ ଜୀବନ ଅଙ୍ଗେ ନ ରହି ।୧।

ଅମ୍ନେଶ୍ୱର ଭୁମ୍ଭ ଚହୁଁ ଅଧିକେ
ଆତୁର ହୋଇ ବୋଲନ୍ତି ରାଧିକେ

ଆସ ଭେଟାଇବୁ ଅଚିରେ ନେଇ
ଅକାରଣେ ଶ୍ରମ ଲଭ କପାଇଁ
ଅନଙ୍ଗ କପଟୀ,
ଆଗ୍ରହରୁ ଆନ୍ତୁ ଛନ୍ଦେ ଲମ୍ପଟି । ୨ ।

---

( ଛଅ )

ଆଣି ମାନସ ଚଉର ଭୁଜ ପାଶେ ଚୋର
ବନ୍ଧାଇବୁ ଶେଷ ନଂଖେ ଭେଦ
ଅଳମାନେ କର ଧରି ଆଣେ ଜବାଧରି
ନ ଚଳେ କାନ୍ତ ବଚ୍ଛେଦ ଖେଦ ।୧।
ଆସି ଚନ୍ଦ୍ରାବଳୀ ଆଳ ପ୍ରେ ସମପ୍ରେ ମିଳ
କୁଶଳ ପଚ୍ଚାରି ବୋଲେ ଶୁଭ
ଅତ ବନଅକ କହ କୃଷ୍ଣ ବୋଲେ ସହ
ଆଣ ଉମା ଶେଷାର୍ଥ ସୁଖ ଲଭ ॥ ୨ ॥
ଅନ୍ତରତ ସେ ପ୍ରେମନ୍ତ ବଚନ ଶ୍ରବନ୍ତ
ରାଧା ପଦ୍ମମୁଖ ସ-ମଳନ
ଅଶ୍ରୁ ଅନାପୃତେ ଜାତ କଂକଣାଦ ପାତ
ଭାର ବସନ ଭୂଷଣେ ମାନ ॥ ୩ ॥
ଆଳ ବୋଧେ ସପଟଣି ଛନ୍ଦକୁ ନ ଜାଣି
ତାପ ଉଦଧିକ ହୋଇ ଶୀଳ
ଆନ୍ମ ଆଳୟକୁ ଗଲେ ଭେଟାଇବେ ଭଲେ
ଚନ୍ଦ୍ରାବଳୀ କୃଷ୍ଣ ରତଶୀଳ ॥ ୪ ॥
ଆସ୍ଯଂ-ମସ୍ଥ ବସ୍ତ୍ରୁ ପଦ ଚନ୍ଦ୍ରର ଆସ୍ପଦ
ଅଙ୍ଗୁଳ ଦେଖି ନ ଚଳେ ତଳେ
ଅଣି ସେ ରଜ ଉରଜ ମଣ୍ଡଇ ମାରଜ
ଦାସୀ ଦାଢ ହୋଇ କାମାନଳେ ।୫।

ଅଚଳର ଭୂତ ଦେଖି ଚଞ୍ଚଳରେ ସଖୀ
ମାଳ ଦେଇ ପେଷେ କୃଷ୍ଣ ପାଶେ
ଅସ୍ତୁ ଖଣ୍ଡଦୁନ୍ଥ ହର ବୋଲେ ପ୍ରାଣେଶ୍ୱରୀ
ସ୍ଥିତ ଯେ୍ତ ହଗେ ତୁଳସୀ ଅସେ ।୬।

ଅଞ୍ଜଳରେ ଫୁଲମାଳ ଧଇଲେ ତାମ୍ବୁଳ
ପୁଚ୍ଛେ ପ୍ରାଣପ୍ରିୟା କାହିଁ କହ
ଆଳି ବୋଲଇ ତୁମ୍ଭର ଷ୍ମରଣ ଅମ୍ବ ବି-
ନାରେ ମଦନ ଦହେ ଦେହ ।। ୭ ।।

ଆଲିଙ୍ଗନ ଅବଲମ୍ବ ବିନା ସେ ପ୍ରଳମ୍ବ
କେଶୀ ନ ଉଠଇ ହୋଇ ଧୀର
ଅନେ ତୁମ୍ଭଙ୍କୁ ବହଇ ବିଚ୍ଛେଦ କହଇ
ଶ୍ରୀ ଶ୍ୟାମସୁନ୍ଦର ଦେବ ଧୀର ।। ୮ ।।

—ଗୀତ—

( ଅଷାଢ ଶୁକ୍ଳ ବାଣୀ )

ଆଳି ବୋଲେ ନଶାପତି ନଶାରେ
ଆନନ୍ଦ କରେ କୁମୁଦ କାସାରେ
ଆନ କେ ଗତି ନଶାକୁ ରସାରେ
ଆମ୍ଭ ସଜନୀ ତୁମ୍ଭ ଭରସାରେ
ଅମ୍ବର ଆଶାରେ,
ଅନ୍ୱେଷଣା ମୃଗତୃଷ୍ଣା ଗ୍ରସାରେ ।। ୧ ।।

ଅଚ୍ୟୁତ ବୋଲେ ଗୃତକ ତରସି
ଆକାଶ ଘୋଟି ମେଘ ନ ବରଷି
ଅମ୍ବୁଜ ମଣ୍ଡନ ମ୍ଳାନ ସରସୀ
ଅଛ ଶୁଣି କ ତା ମାନସ ଭସି
ଅଛୁ ଆକରଷି,
ଅଧିକେ ମୋ ମନ ମନୁ ବରଷି ।। ୨ ।।

( ସାତ )

ଅଧୋକ୍ଷଜ ଆଳ ପେଷି ଆଣ ଶୁଭ୍ରକେଶୀ
ତପକୁଞ୍ଜେ ଆମ୍ଭେ ଅଛୁ କହ
ଅନ୍ତେ ରାଧିକା ପ୍ରେ'କାଳେ ଚାହଇ ବ୍ୟାକୁଳେ
କୃଷ୍ଣ ନ ଦେଖିଲ୍ଲ ପରା ସହ ॥ ୧ ॥

ଆଳ ଚନ୍ଦ୍ରାବଳୀଙ୍କର ସତ୍ୟ ହେଲ ଗିର
ଗଉଷ ଷର୍ଥକୁ ଗଲେ ହର
ଆଜ କୃଷ୍ଣ ପରସନ ମୁଖ ଦରଶନ
ହନା ପ୍ରେ ବନେ ଜୀବନ ହାର ।୨ ।

ଅନାୟାସରେ ଦୁର୍ଲଭ ହୋଇଥିଲ ଲଭ
କ୍ଷଣେ ନ ରହିଲ ଭୂଜବନ୍ଧେ
ଅଙ୍ଗୁଳକ ମୋ ଚବୁକ ମଣ୍ଡିଣ ମସ୍ତକ
ଆଘ୍ରାଣ ଚୁମ୍ବନ କାମ ଅନ୍ଧେ । ୩ ।

ଆଳ ନକର ପରୁଷ ବଚନ ପ୍ରକାଶ
କଳବେଳେ ଟୁମ୍ଭେ ଥିଲେ ଗଣ୍ଡେ
ଅତ ସୁଖ ନାବ ଛାଡ଼ ମରୁଅଛୁ ବୁଡ଼
କାମ ସରତ ଗମ୍ଭୀର ଗଣ୍ଡେ ॥ ୪ ॥

ଅସେ ପ୍ରେ କାଳେ ପ୍ରେକାଙ୍କ ସଖୀକ ଆଲୋକ
ପ୍ରାକେ ବୋଲଇ ଶଶୀମୁଖୀ
ଅବଳମ୍ଭେ ରହ ଗଳେ ପିବଟି ଚପଳେ
ରହ ନ କରବ ମନେ ଦୁଃଖୀ । ୫ ।

ଆସ୍ୟ ପ୍ରସନ୍ନ ତୁଳସୀ ଆସି ପାଶେ ଭାଷି
ଦେଖିଲ କୃଷ୍ଣଙ୍କୁ ସଖୀ ସହ
ଆଣି କେତକୀ ତୋ ଅଙ୍ଗ ପର ହୃଦେ ସଙ୍ଗ
ହୋଇଥିଲ ନେହ ବାର ବାହ । ୬ ।

ଆଗେ କୋକିଳର କଳ ତୋ ବାଣୀ ମଞ୍ଜୁଳ
ଆଦରେ ମାଳ ତାମ୍ବୁଳ ଯେନ
ଅମ୍ଳହୃଦ ଫୁଲ ମାଳ ଦେଇ ବନମାଳୀ
ବୋଲେ ଆଣ ନେଇ ସୁଖଦାମା ।୭।
ଅବଲମ୍ବ ହେଲା ମାଳ ଉଠି ମଣ୍ଡେ ଗଳ
ଆଲିଙ୍ଗନ ମଣେ କୃଷ୍ଣ ଭୁଜ
ଆସି ଗୋବନ୍ଧ ଭେଟଇ ସାନନ୍ଦେ କହଇ
ଶ୍ରୀ ଶ୍ୟାମସୁନ୍ଦର ଦେବରାଜ ॥୮॥

—ଗୀତ—

ଅଳପ୍ପେ ଛଳ ଚନ୍ଦ୍ରାବଳୀ କାନ୍ତ
ଆଲୋକନରେ ତାଙ୍କୁ ଚନ୍ଦ୍ରକାନ୍ତ
ଅଟ ଛନ ସେହ୍ନ ମଣି ପ୍ରକାର
ଅନଙ୍ଗ ଚାପ ମଦନ ବକାର
ଆମ୍ଭଙ୍କୁ ଜଳାଅ,
ଅଖିଷ୍ଟ ସମାରେ ମତ୍ତ ବଳାଅ ।୧।
ଅଚ୍ୟୁତ ବୋଲେ ଉଚତ ବୃତ୍ତାନ୍ତ
ଅକ୍ଷୀଣ କ୍ଷୀଣ ବା ହେଲେ ନତାନ୍ତ
ଅମୃତ କର କାନ୍ତ ରୂପ ଜନ
ଆନ କେ ହୋଇବ ଧନା ରଜନୀ
ଅଧ ମୁଖେ ତାର,
ଆବେଷ୍ଟନେ ଥିଲେ ହୋଯ୍ୟେ କ ତୋର ।୨।

( ଆଠ )

ଅକ୍ଷି ଶେଷେ ଗୃହ୍ଵଁ ମତ୍ତ ହରଇ ଶ୍ରୀମତୀ
ସସଂଭ୍ରମେ କୃଷ୍ଣ ଆଲିଙ୍ଗନ
ଅନୁକମ୍ପା ଶିବେ ଚମ୍ପା କୋଟି ଦେଇ ଶମ୍ପା
ଗୋରୀ ମୁଖେ ପ୍ରେକ ଚୁମ୍ବ ଦାନ ।୧।

ଅଣିମାଦ୍ୟ ସୁଖ କେତେ ପ୍ରେମ ଦ୍ରବ ଚତ୍ତେ
ମନର ଯୁବତୀ ଦେଲେ ଚୁମ୍ବ
ଅନାସ୍ଵାଦ୍ୟ କାମେ ହୋଇ ପୀୟୂଷକୁ ପିଇ
ରଦେ ପିଡ଼ି ଓଷ୍ଠ ପଦ୍ମ ବମ୍ବ ।। ୨ ।।

ଅତ ଅନୁରାଗ ଗୃହୁଁ ପ୍ରକାଶନ୍ତି ଅଟୁ
ଜୀବର ଜୀବନ ମୋର ସଖୀ
ଅମ୍ବୁ ବିନା ଯଥା ମୀନ ନ ରଖେ ଜୀବନ
ତଥା ମୁଁ ତୋ କଥା ବିନା ଦୁଃଖୀ ।୩।

ଆନ୍ଦୋଳନ ସ୍ଵପ୍ନ ଦୋଳୀ ପରେ ପୁଂସ ବାଳୀ
କେତେବେଳେ କୁଞ୍ଜେ ପଶା ଖେଳ
ଅଳ ମାତକ ଅନାଇ ଭାନୁ ଜେମାଦେଈ
କୃଷ୍ଣ ଗୃହ୍ଵଁ କହେ ବହେ ଛଳ । ୪ ।

ଅବଲୋକ ପ୍ରେ ମଧୁପ ମଧୁରେ ଲୋଲୁପ
ପ୍ରେକ ରସେ ବନ୍ଧ ନୋହେ ଚତ୍ତ
ଅଙ୍କ ଯଥା ସାଗ୍ରସାର ମଣେ ପ୍ରେକାକାର
ରଙ୍ଗକୁ ମଣାଇ ପ୍ରେ ରଜତ ।। ୫ ।।

ଆସି ଚନ୍ଦ୍ରାବଳୀ ଆଳ ପ୍ରେ ସମୟେ ମିଳ
କଖଟୀ ଦ୍ଵାରେ ନ ପାଇ ରହି]*
ଅପହତ କାର୍ଯ୍ୟ ଲାଜ ଯାବଟରେ ବ୍ୟାଜେ
କୁଡ଼େ ପଦ୍ମାବଳୀ ଗଲେ ଲଭି । ୬ ।

* 'କ' ପୋଥିରେ ବନ୍ଧନୀ ଅନ୍ତର୍ଗତ ପଦ ହସ୍ତ ନାହିଁ ।

ଆସି ଚାନ୍ଦମୁଖୀ ଚନ୍ଦୁମନ୍ତ ବୋଲେ ଇନ୍ଦୁ-
ମୁଖି ଚଳ ନିଜ ନିବାସରେ
ଅମରଷେ ଚନ୍ଦ୍ରାବଳୀ ଆଳି ଗଲେ ଭଳି
ଅନସ୍ତ ଝଗୃର ମାନସରେ ॥ ୭ ॥

ଅର୍କ ଅର୍ଚ୍ଚନ ନିମିତ୍ତ ସାର ସେ ଅମିତ
ଶୋଭାରେ ମନ୍ଦରେ ନାସିଗଟ
ଅଟେ ଶ୍ରୀ ଶ୍ୟାମସୁନ୍ଦର ଦେବ ସ୍ୱେ ସୁନ୍ଦର
ଚରିତ କମଳେ ମଧୁଲିଟ ॥ ୮ ॥



— ତୃତୀୟ କୁସୁମ —

॥ ଆଦ୍ୟ ବିଭାଗ ॥

# ବୋଲି ଲେଖନ

( ଖେମଟା* ବୃତ୍ତେ )

ଅଢମୁଖେ ଉଠି ବୃଦ୍ଧା ଦୃଷ୍ଟି ବର୍ଣ୍ଣାବଳରେ
  ଅଚ୍ଛି ଲବ୍ଧ ସୁଧା ବାଢ଼େ ମୃଗମଦ କାଳରେ ।୧॥
ଅଟେ ବଧି ଯେ ବଧୁର ସଦା ଗତି କାନନେ
  ଅଭିମନ୍ୟୁ କହ୍ନ ନିଷେଧ ନ ଯାଉ ସେ ବନେ ।୨।
ଅତି କୋପମୁଖ ମୂର୍ଖକୁ ଗଲା ସେ ଅଣି
  ଆପେ ପୁଣ ସୂତାଂଶ କହନ୍ତି ସେ ସାଧୁବାଣୀ ॥୩।
ଆଳଚୟ ଆସି ପଡ଼ିଣ ହୋଇଲେ ବସ୍ତୁୟ
  ଅନୁସାର ଦେଲେ ଭୃଙ୍ଗବିଦ୍ୟା ଚେକ ସଂଶୟ ।୪।
ଆଣି ମୂର୍ଖକୁ ବୋଲେ ପଢ଼ି ଲେଖା ଚରିତ
  ଆଜ ଭାସିଲା ଗୋପେ କଳଙ୍କ ସହିତ ସ୍ରୋତ ॥୫।
ଅର୍ଥ ହେଲା ଅଭିମନ୍ୟୁ ନ ଯିବ ସେ କାନନେ
  ଅଚ୍ଛି ବଧୁର ବଧୁର ସଦା ଗତି ତ ବନେ ॥୬॥
ଅଦଭୁତ ମଣେ ବୃଦ୍ଧା କେହ୍ନେ ହୋଇଲା ଆନ
  ଅଚ୍ଛି ଯଥା ସ୍ୱରୂପରେ ବର୍ଣ୍ଣାବଳ ରଚନ ॥୭॥
ଅଂମ୍ବୁଜକୁ ବୋଲେ ବାବୁ ନ ଯିବୁ ବୃନ୍ଦାବନ
  ଅଂମ୍ବ ହିତେ କଉଁ ଦେବ କରିଗଲେ ଲେଖନ ॥୮।

---

* ଖେମଟା (ପୋଥିପାଠ)

ଅତ ଭ୍ରତ ହେଲା ତାହାଙ୍କ ଅଦ୍ଭୁତ ବିଧାନ
ଆନ ବନେ ଅଭିମନ୍ୟୁ ଟୋଷ୍ଟୁ କଲେ ସ୍ଥାପନ ।୯।।
ଅଭିସାର ସାକ୍ଷସାକ୍ଷୀ ହନେ ଚନ୍ଦ୍ର ଜଣିରେ
ଆସି ପୂର୍ବ ପର କୃଷ୍ଣ ଭେଟି ଘନକେଳୀରେ ।୧୦।
ଆଳମ୍ବିତ ଗୁଞ୍ଜାହାର ଦେଖି ହସେ ବନିତା
ଅଛୁ କର୍ଣ୍ଣ ଗୁଣ ଯେଣୁ କର ପ୍ରୀତି ଜନିତା ।୧୧।
ଅନୁରାଗ ଭୂମି ପର ହର ବୋଲେ ଯେହାର
ଅଙ୍ଗରାଗେ ପୂର୍ଣ୍ଣମୁଖେ ଚମ ଯେ ହେତୁ ହାର ।୧୨।
ଆଳ ବୋଲେ ତଥା ନୋହେ ଅନ୍ୟ ବିଷୟେ ଚମ
ଅଟେ ଚନ୍ଦ୍ରାବଳୀ ଠାରେ ଧର ଯେ ରାଗ ଚମ ।୧୩।
ଆନ କେ ବୋଲେ ଯେ ତାର ମୌକ୍ତ ବିହାର ହାର
ଅଛୁ ଅଞ୍ଜନ ସିନ୍ଦୂରେ ଲଗି ଯେ ଅଧାହାର ।୧୪।
ଆଳ ବହୁ ଭାଷ ଶୁଣି ଆଲିଙ୍ଗିତ ପ୍ରିୟାରେ
ଆନ ଲକ୍ଷନ୍ତି ଯେ ଆମ୍ଭ ସ୍ୱେଦ ସୁହୃଦୟାରେ ।୧୫।
ଅବଦାତ ଚନ୍ଦ୍ରୋଜ୍ଜ୍ୱଳ ପର ଯେ ଫଳ ଯେତେକ
ଅବଲୋକ କରାଇବ ଧନ୍ୟ ବୋଲିବା ତେବେ ।୧୬।
ଅନ୍ୟେ ଚନ୍ଦ୍ରାବଳୀ ପ୍ରେମ ରାମା ବୋଲେ ଉଚନେ
ଆନ ସେ ବନା ଉପମା ନ ଉଚ୍ଚରେ ବଚନେ ।୧୭।
ଆଳାପରେ ପରିହାସ ଛଳ ବହୁ ଶ୍ଳେଷରେ
ଅଲଘାଷ ଚନ୍ଦ୍ର ଉଜ୍ଜ୍ୱଳ ଉଜ୍ଜ୍ୱଳ ରସରେ ।। ୧୮ ।।
ଆରମ୍ଭନ୍ତେ ବନ୍ଧ ରୂତ ଛୁଡ଼େ ଗୁଞ୍ଜା ମାଳିକା
ଅନ୍ୟ ସ୍ୱରତେ ସ୍ତୁତଲେ କୃଷ୍ଣ ନବ ବାଳିକା ।୧୯।।
ଆସି ଯେବେ ଗୁଞ୍ଜ ରାମା କୁଚ ଚନ୍ଦନେ ପଶେ
ଅଙ୍କୁରିତ ସେ ଉଜ୍ଜ୍ୱଳ ରସ ମିଥୁନ ବଶେ ।। ୨୦ ।
ଆଳୟରେ ଗ୍ରେଲ ଯେଉଁ ଦେଖେ ଗୁଞ୍ଜ ଅଙ୍କୁର
ଆପେ ରୋପେ କେଳ ବଚନ ଘେନ ସଖୀ ନକର ।୨୧।

ଆଳବାଳ କର୍ପୂର କସ୍ତୁରୀ ପଙ୍କ ବିଧାନେ
ଆଗ ଦେଇ ପାଳେ ମାଳକ ବାଳୀ ସାବଧାନେ ।୨୨।

ଅନୁଦିନ ବଢ଼ି ପୁଷ୍ପ କ୍ରମେ ହେଲା ସଫଳ
ଅବଦାତ ଚିତ୍ର ରଚି ଶ୍ୟାମ ସୂତ୍ରରେ ମାଳ ।୨୩।

ଆଲମ୍ବିତ କରି ଉରରେ ବିଜେ ସୂର୍ଯ୍ୟ ପୂଜନେ
ଆସି ସେହିକାଳେ ଭେଟିଲେ କୃଷ୍ଣ ବନ ଭଜନେ ।୨୪।

ଅବଲୋକ ବୋଲନ୍ତି ଅପୂର୍ବ ବନ ଦ୍ୱାଦଶେ
ଅଛୁ କେଉଁଠାରେ ଦେଖାଅ ମୋ ସୁଖପ୍ରଦ ସେ ।୨୫।

ଅମୃତ ମୃତ ବା ଇଚ୍ଛା କରୁଁ ହାର ତପସ୍ୟ
ଆମ୍ଭ ମୋତି ମାଳକୁ ଅଥବା ପାଳଟ ଦସ୍ୟୁ ॥ ୨୬ ।

ଆଚ୍ଛନରେ କାଞ୍ଚନଗୋରୀ ନ ଶୁଣି ଗମେ
ଆଗେ ଓଗାଳ ବୋଲନ୍ତି ବାଳୀ ଗଛ ଉଦ୍ୟମେ ।୨୭।

ଆନ ଅନଙ୍ଗ ଗୃହେ ପାଦେ ନ ଯିବ ଆଜ
ଅବମାଣ ଭାଗ ବିନା ନବ ଫଳକୁ ଭୁଞ୍ଜି ॥ ୨୮ ॥

ଅବଗଣିତେ କେଶରୁ ଚୋଳେ ମୀନ ଲକ୍ଷଣୀ
ଅଳି ନଳିନ ଗନ୍ଧରୁଁ ମୁଖେ ପାତ ସେକ୍ଷଣି ।୨୯।

ଅନାସ୍ଥିତେ ଭୃଙ୍ଗ ଖୁଲେ କାନ୍ତେ କଲା ଆଶ୍ଳେଷେ
ଅତି ଦରଦ୍ରୁରେ ଅଣିମାଦି ଲଭି ବିଶେଷ ।୩୦।

ଆପେ ବାହୁ ବନ୍ଧନେ ଯତନେ ରଖି ବନିତା
ଆଜ କେହୁ ମୁକୁଳକ କହୁ କୋପ ଜନତା ।୩୧।

ଅମାନଆ ଗୋ ମାନଆଶୋଭି ହେଲ କାମରେ
ଆନ ମେଣ୍ଟି ରାଜଭାଗକୁ ନ ଦେଲ ଭ୍ରମରେ ।୩୨।

ଅଚ୍ୟୁତର ଭୁଜବନ୍ଧ ରାମା ଲେଉଡ଼ି ଫେଡ଼ି
ଆସ୍ୟ କମ୍ପାଇ ପରୁଷେ ଭାଷେ ଦଣ୍ଡ ଦେ ଗୁଡ଼ି ।୩୩।

ଆଳି ବୋଲନ୍ତି ଗୁଡ଼ ସେ ଶିଖିଛ ସୁକୁମାରୀ
ଆଣ୍ଠି ଭୁଜ ତବ ଜାଣ କଂସ ମଲ୍ଲଙ୍କୁ ମାରି ।୩୪।

ଅଟମୀ ଦେବା ବୋଲେ ସ୍ୱେ କାଳେ ସାରିକା ଶିଷ
ଆଜ ବୋଲେ ସେ ବସ୍ତ୍ରୁ ଶୃଙ୍ଖଳ ଯୋଗ ବିଶେଷ ।୩୫।

ଶ୍ଳେଷ—

ଆନନ୍ଦଦା ନନ୍ଦା ଭଦ୍ରା ଭଦ୍ର ଅନଙ୍ଗ ରସେ
ଅଟନ୍ତି ସ୍ୱେ ହର ଚଷବାଣୀ ଜାତ ରଭସେ ।୩୬।
ଅଛନ୍ତି ରାଧିକା ବନ୍ଧନରେ ବସ୍ତ୍ରୁ ଶୃଙ୍ଖଳ
ଅଧର ପୀୟୂଷ ପାନେ ଉପବାସର ଫଳ ।। ୩୭ ।।
ଅଚନ୍ତୁ ରସେ ଜାଗରବର୍ତ୍ତି ଉଜ୍ଜ୍ୱଳ ଯୋଗ
ଅଘ ହତେ ବନ୍ଧନରୁ ଫିଟି ଲଭିବେ ଶ୍ଳେଗ ।୩୮।

ଶ୍ଳୋକଃ—

ନନ୍ଦା-ଭଦ୍ରାଦ୍ୱୟୋର୍ଯତ୍ର ବସ୍ତ୍ରୁଗ୍ରୀକ୍ଷେଣ ସଂଯୁତା
ତଦ୍ବସ୍ତ୍ରୁ ଶୃଙ୍ଖଳଂ ଯୋଗ ଉପୋଷ୍ୟମୋକ୍ଷକୃଦ୍ଭବେତ୍ ।

ଆନନ୍ଦେ ସକଳେ କୋଲେ ସ୍ୱେବେ ପଡ଼ ହେ କାର
ଅତ ମଧୁରେ ସେ ଭାଷେ ରୂପକ ଗିର ।। ୩୯ ।।
ଆସ୍ୟ ଚନ୍ଦ୍ର ନାକ ଶୋଭେ ଯୋତି ମୋତି ବେହ୍ନଣୀ
ଅଟେ ପ୍ରତିପଦରେ ମଞ୍ଜୁଳ ସୁଯୋଗ ଜାଣି ।୪୦।
ଅଦୂର ସପାଗରେ ନାଗରୀ ହେବ ମଜ୍ଜନ
ଆଦ୍ୟେ କୂଚ ଶୈଳ କରେ ଧରି କରହେ ଦାନ ।୪୧।*

ଅଧର ମାଣିକ୍ୟ ପାତ୍ରେ ଭରି ଶୁଦ୍ଧ ଅମୃତ
ଅର୍ଘ୍ୟ ଦିଅ ରାଧେ କୃଷ୍ଣେ ହୋଇ ହରଷ ଚିତ୍ତ ।୪୨।+

---

* ଯଦଯଦ୍ଧିନେ ନଣାସ୍ତୁଂ ବଚାର୍ପିତଂ ନୂର ତାପେଽନ୍ତଂ
ତସ୍ତ୍ରବଂ ଶ୍ୱଳସ୍ତୁଂ ଯାନ୍ତି ; ସ୍ନାନେନ ସୁରସାନ୍ତସି ।   ପୋଥିପାଠ)

+ ବେହ୍ନଣୀ ପ୍ରତିପଚ୍ଚନ୍ଦ୍ରେ ଅର୍ଘ୍ୟଦାନଂ ସକାମଦମ୍ ।
'ତସ୍ମାଦର୍ଘ୍ୟଂ ମୟାଦତ୍ତଂ ଗୃହାଣ ନନ୍ଦ-ନନ୍ଦନ ।। (ପୋଥିପାଠ)

ଅଶନକୁ ଦ୍ରାକ୍ଷା ଦେଇ ଛନ୍ତି ହରଷେ ମନ୍ଦେ
ଆସି ଅଙ୍ଗନା ସଭାରେ ରାଧା ମାଧବ ବନ୍ଦେ ।୪୩।।

ଆମ୍ଭ ଉଭୟର ନ୍ୟାୟ କର ତୁମ୍ଭ ସଭାରେ
ଅଳ୍ପ ପକ୍ଷ କହିଲେ ମଦନ ଦଣ୍ଡ ବେଶରେ । ୪୪ ।

ଅବଜ୍ଞାରେ ରାଜଭାଗକୁ ନ ଦେଇ ଦୁଷ୍କର
ଆନ ମେଣ୍ଢିଗଲେ ପଥେ ଲୁଟିନେଲେ ତସ୍କର ।୪୫।

ଆସି ପକାଇ ଆଶ୍ରୟ ପୁନ ସେହ୍ନ ନରେଶ
ଆଣ୍ଟି ବନ୍ଧନରେ ରଖେ ଦେଖ ସେଥି କ ଦୋଷ ।୪୬।

ଆନ କେ ବୋଲେ ଶରଣ ଠାରେ ବନ୍ଧନୋଚିତ
ଅଟେ ଲୋଭୀ ନୃପ ପ୍ରଜା ଧନ ହରଣେ ରତ ।। ୪୭ ।।

ଆନ କେ ବୋଲେ ଦୋଷକୁ ଦଣ୍ଡ କର ବିଧାନ
ଅଛି ପ୍ରେମରତ୍ନ ନଅ ବାସ ଅଙ୍ଗ ପିଧାନ ।। ୪୮ ।।

ଆକରଷଣେ କୁନ୍ତଳ ପରାଭବେ ଶଙ୍କିତ
ଅଙ୍ଗେ ନଖଘାତ ନୃପଦଣ୍ଡ ଅଙ୍ଗେ ଅଙ୍କିତ* ।।୪୯।।

ଅଳାପରେ ପରିହାସ ପ୍ରେମପର ରଚିତା
ଆପେ ଅଙ୍ଗନା ଯେନ ବଧିର ହୋଇ ଅଛନ୍ତା ।୫୦।

ଆସି କୃଷ୍ଣ ଭେଟି ବୋଲେ ଧନେ ସେ ଚନ୍ଦ୍ରାବଳୀ
ଅଟେ ବନଫଳ ଗୁଞ୍ଜ ନୋହେ ରତ୍ନ ଆବଳି ।।୫୧।।

ଅଦଭୁତ ସ୍ନେ ପ୍ରୀତି ଲାଞ୍ଛନ ନ ଦେଲେ ରାଧା
ଅଛି ଲଘୁ ଦ୍ରବ୍ୟେ କରିଥିଲ ଯେତେକଟି ଶ୍ରଦ୍ଧା ।୫୨।।

ଅଚ୍ୟୁତ ବୋଲନ୍ତି ବୃନ୍ଦା କହ ଗୁଞ୍ଜ ମହିମା
ଆମ୍ଭ ସ୍ନେହ ବନ୍ଧ ନ ଦେଲେ ତା ଭାନୁର ଜେମା ।୫୩।

ଅଟବୀ ଦେବୀ ବୋଲେ ଉଜ୍ଜ୍ୱଳ ରସ ଜନନ
ଅମୃତାଂଶୁ ତାର କ୍ଷୀରାମ୍ବୁଧି ଶ୍ୱେତ ଯତନ । ୫୪ ।

---

* 'ଢ' ପୋଥିରେ ଏହି ଧାଡ଼ିଟି ନାହିଁ ।

ଅବଦାତ ଧାମ ଶିବ ରୂପ ଗିରି କୈଳାଶ
ଅମ୍ବରଜ ଆଦ୍ଧ କୃଷ୍ଣ ଶୁଚି ରସର ଯଶ ॥ ୫୫ ॥

ଅଙ୍କୁରିତ ଗୁଞ୍ଜା ରୂପେ ହୋଇ ଅଦଭୁତରେ
ଆଣି ପ୍ରେମେ ରାଧା ହୃଦେ ମଣ୍ଡି ସ୍ୱେବଂଭୂତରେ ।୫୬।

ଅତ୍ୟାଜ୍ୟ ସର୍ବଥା ବୋଲି ପ୍ରେମେ ନ ଦେଲେ ହାର
ଅଷ୍ଟରତ୍ନ କୃଷ୍ଣ ବକ୍ଷସ୍ଥରେ ଭୁକ୍ତ ଯାହାର ॥ ୫୭ ॥

ଅତି ମାନ ଭଙ୍ଗ ଶୁଣି ଗଲେ ସେ ଚନ୍ଦ୍ରାବଳୀ
ଅଙ୍ଘ୍ରି କୃଷ୍ଣର କାନ୍ତେ ନିର୍ମାଣି ଆଳିରେ ଭଳି ।୫୮।

ଅଷ୍ଟାଦଶ ଲକ୍ଷଣରେ ଯୁକ୍ତ ନିଶିରେ ଆସି
ଅପଦ୍ମିତ କଲେ ଗୁଞ୍ଜି ଛନ୍ଦୁ ପାଦ ନବେଣୀ ॥ ୫୯ ॥

ଅଙ୍ଗଜାର ରକ୍ତ ଚିହ୍ନ ଯଥା ଯତ୍ନେ ପିଧାନ
ଅଙ୍କ ଆପଣା ପାଦର ତଥା ଲେପ ବିଧାନ ॥୬୦॥

ଅଦ୍ଧ ମୁଖେ ରାଧାରେ ଜଣାଇ ମାଳକ ବାଳ
ଆଗମେ କଲେ ବିକଳ୍ପେ ଶୁଣି ସଙ୍ଗରେ ଆଳି ॥୬୧।

ଅଙ୍ଘ୍ରି ଚିହ୍ନ ଦେଖି ପାଞ୍ଚିଲେ ସେ କୃତ୍ୟ କପଟ
ଅଚ୍ଛି ବକ୍ଷେମ ଚିହ୍ନ ସୁବାସ ନୋହେ ପ୍ରକଟ ॥୬୨ ॥

ଆଶ୍ୱାସିଲେ ପାଣିକେ ସଚ୍ଛିନ୍ନ ଦେଖିଣ ଲତା
ଆସି ଆଳୟରେ ଗୁଞ୍ଜା ଲେଖ ବକ୍ଷସ୍ଥ ଚିତ୍ରା ।୬୩।

ଆଳି ପଦ୍ମା ସେବ୍ୟା ଯେ ସମୟେ ଚନ୍ଦ୍ରାବଳୀର
ଆସେ ଯା କଣ୍ଠେ ଶୋଭନ ଉର ଗୁଞ୍ଜମାଳର ।୬୪।

ଅଧ୍ୱେ ମାଧବ ପୁଚ୍ଛିଲେ କାହୁଁ ଲଭିଲ ଗୁଞ୍ଜି
ଆଣି ବୋଲେ ରାଧା ଦେଲେ ରଚି ପୀରତି ପୁଞ୍ଜି ।୬୫।

ଆପେ କୃଷ୍ଣ ଜାଣି ବୋଲେ ସେହୁ ପଦ୍ୟାବଳୀ କି
ଆନେ ନ କହ କହିବ ରହେ ଚନ୍ଦ୍ରାବଳୀକି ॥୬୬॥

ଯେ ପଦ୍ୟାବଳୀ—

ଆନନ ଚନ୍ଦ୍ରାବଳୀ ସଖୀ ବଦନେ ବଦର
ଅଦ୍ଭଦ୍ୱାରେ ଶୋଭମାପ୍ୟ କୁଚ ଯୁଗଳ କର ।୬୭ ॥

ଆନନ୍ଦିତ ହୋଇ ସେ ବେନ ଯାବନ୍ତେ ପ୍ରବେଶ
ଆଳି ମେଳରେ ବଜଯେ ସଖୀ ହୋଇ ସୁବେଶ ।୬୮।

ଯେ ରୂପ ଗର୍ବିତା—

ଆସି ପଦ୍ମରନ୍ତେ କୁଶଳ ଲଳିତା ବଦନ୍ତ
ଅଟେ ସର୍ବଶୁଭ ସଖୀପ୍ରିୟ ପ୍ରିୟ ଭାରତୀ ।୬୯ ॥

ଆମନ୍ତ୍ରନ ଶୂନ୍ୟକାଳେ କୋଳେ ବସାନ୍ତି ଧର
ଆସେ୍ୟ ଚୁମ୍ବ ଦେଇ ବୋଲନ୍ତି ଗୋ ବମ୍ବ ଅଧର ।୭୦।
ଆଭରଣରୁ କ କାର୍ଯ୍ୟ ରୂପ ସୁମଞ୍ଜୁଳତା
ଅଙ୍ଘ୍ରି ତଳ ମାଜ କରନ୍ତି ଧରନ୍ତି ଲଭେ ଅଳତା ।୭୧।

ଯେ ସ୍ନେହ ଗର୍ବିତା—

ଅଟେ ତବ ସର୍ବଶୁଭ ଶୁଣି ସେ ବେନ ଭାଷ
ଅତି ଶୁଭ ଚନ୍ଦ୍ରାବଳୀ କାନ୍ତ ସ୍ନେହ ବଶେଷ ।୭୨।
ଆନନ ବନା ଆନକୁ ନ କରନ୍ତି ଲୋକନ
ଆଳାପରେ ଚନ୍ଦ୍ରାବଳୀ ନେତେ ରୂପ ଲେଖନ ।୭୩।
ଅନ୍ତେ ସଦୁ ଦେଇ ପଦ୍ମମୁଖୀ ଭାବ ଗୁଣନ୍ତି
ଆଜ ଗୁଞ୍ଜହାର ଦେଇ ଗୁପ୍ତ କର ବୋଲନ୍ତି ।୭୪।
ଆପେ ପଦ୍ୟାବଳୀ କହୁଛନ୍ତି ବନସୂତର
ଆଳ୍ପ ପଢ ବୋଲନ୍ତି ପଢ଼ିଲ ସେ କୃଷ୍ଣ ଉତ୍ତର ।୭୫।

ଯେ ବଶୋକ୍ତ ଗର୍ବିତା—

ଅର୍ଥ କର ଚଉଷ ହୋଇ ବନ ଉକ୍ତରେ
ଅତି ସୁଖ ଶୀଳାଭାସ କାନ୍ତ ସରସ୍ୱତରେ ॥ ୭୬ ॥

ଅନୁମତ ପର ରାଧା ମୁଖ ହୋଇସୁ ଅଧର
        ଅପୂର୍ବ ଭାବ ବଶରେ ହୋଇଣ ଜରଜର ।୭୭ ॥
ଅର୍ଥ କହ ବୋଲୁଁ ପଢ଼ିଲେ ସେ ପୁଣ ଆନନ
        ଆପେ ହସନ୍ତି ଚନ୍ଦ୍ରାବଳୀ ସଖୀ ବମନ ॥ ୭୮ ॥
ଅଭ୍ର ସର୍ବତୋ ଭାବରେ ହାରେ ଶୋଭା ଉରଜ
        ଆଳି ଅର୍ଥ ଶୁଣି ସେହୁ ବେନ ଲଭିଲେ ଲାଜ ।୭୯॥
ଅତି ମନ୍ଥରେ ପଥରେ ଯାଇଁ ସଖୀରେ କହେ
        ଆମ୍ଭେଶ୍ୱର ଶଠ ଖାତି ବନ୍ଧି ହୃଦୟ ଦହେ ।୮୦।
ଆମ୍ର ସେବକ ଭାଗବନ୍ତ ଦେଇ ଦୂତର କରେ
        ଅଚ୍ୟୁତ ପାଶେ ପେଷେ ସେ ଦେଇ ରହେ ମୂକରେ ।୮୧।
ଆପେ ଧୀର ପ୍ରଶାନ୍ତ ନାୟକ ଗୁଣ ଦେଖାଇ
        ଅହ ମୂଖରେ ବୁଝିବା ବୋଲେ ମୂଖ ଶୁଖାଇ ।୮୨।
ଅର୍କ ପୂଜ ପୂର୍ଣେ ରାଧା ମିଳେ ମଧ୍ୟବେଦରେ
        ଅନାଗତ କୁଞ୍ଜେ ଚନ୍ଦ୍ରାବଳୀ ଆଳିଙ୍କ ଦରେ ।୮୩।
ଅଚ୍ୟୁତଙ୍କୁ ବୃନ୍ଦା କହେ ରାଧା ବଳୟ ପୁରେ
        ଅପହୃତ ଗୁଞ୍ଜା କଲ ରାଧା ହୃଦରେ ପୂରେ ॥୮୪।
ଅଛ ଦେଇ ପଦ୍ୟାବଳୀ ଚନ୍ଦ୍ରାବଳୀରେ ବନ୍ଧ
        ଅର୍ଥ ନ ବିଚାରିଲ କି କେଣ୍ଟ ଗୋବିନ୍ଦ ବନ୍ଦ ॥୮୫॥
ଅଛୁଁ ଜାଣି ସର୍ବ ସର୍ବଥା ନ ଥିଲେ ହେ ଦୋଷ
        ଆଜ ଦୁଷ୍କର ପୁଷ୍କର ନେହା ଭେଟ ବଦେ ସେ ।୮୬।
ଅସ୍ତ ରବ ଆଶା ପର ଆଶା ମ୍ଳାନ ହରର
        ଅର୍କଜାରେ ପ୍ରାତେ ହେବା ଚେବେ ଶୁଦ୍ଧ ଶରୀର ।୮୭।
ଅଙ୍ଗ ଅନଙ୍ଗେ ଅବଶ ବଶୁଁ ଆସୁ ମନ୍ଥରେ
        ଅବଲୋକନ ଗାବ ବାଳକ ମୃତ ପଥରେ ॥ ୮୮ ।
ଅଭିଳାଷ ଦେଖି ହଂସ ବିଷ ଗ୍ରାସ ନଦକ
        ଅତି ତୃଷିତରେ କଲେ ପାନ ବିଷ ଉଦକ ।୮୯।

ଅଶ୍ରୁ ଭେଜନ୍ତ ବର୍ଣ୍ଣନ୍ତ ଗୁଣ ଗୁଣ ଗମ୍ଭୀର
ଆଜ କ ହେବେ ଶ୍ରବଣେ ବ୍ରଜବାସୀ ଆଭୀର ।୯୦।
ଆଦ୍ୟେ ଗୋବର୍ଦ୍ଧନ ମଲ୍ଲ ଦେବା ପାଦୁକା ଯଷ୍ଟି
ଆପେ ମନ୍ତ୍ର ପଢ଼ି ପ୍ରଦକ୍ଷିଣ କରଣ ପିଠୀ ।। ୯୧ ।।
ଅକ୍ଷି ମଳନ ନଳନ ମୁକୁଳ ପରି ସେ ଉଠି
ଆମ୍ଭ ନଦ୍ରା ଭଙ୍ଗ କଲ ବୋଲେ ଶ୍ରୀଦାମଙ୍କ କାଠି ।୯୨।
ଅଗ୍ରେ ମଧୁମଙ୍ଗଳ ସୁବଳ କହେ ବିଷୟ
ଆଲିଙ୍ଗନ କୃଷ୍ଣେ ଦେଲେ ଶୁଣି ଗତ ସଂଶୟ ।।୯୩।
ଆସି ନର୍ମ ସଖା ସଙ୍ଗେ ରହେ ପ୍ରିୟା ବିରହେ
ଆଜ ଉତ୍ପନ୍ନ ଶ୍ୱେତ ସ୍ୟାନ୍ତକ ପାଞ୍ଚ କର ହେ ।।୯୪।
ଆଲୋଚନା ସୁଲୋଚନା ମାନଙ୍କରେ ଯେ ମାନ
ଆମ୍ର ଦେଲେ ଚନ୍ଦ୍ରାବଳୀ ଚିତ୍ତ ହୃଦ ସମାନ ।।୯୫।।
ଅଚ୍ଛୁ କାମଶାସ୍ତ୍ରେ ବିଳାସିନୀ ମାନୋପଶମ
ଅପରାଜିତ କାନ୍ତ ପରେ ଯେବେ ପଢ଼େ ବିଷମ ।୯୬।
ଅନ୍ତେ କୃଷ୍ଣ ଚନ୍ଦ୍ରେ କେନ ପ୍ରିୟତମା କାରଣେ
ଅର୍କସୁତା ଅମୃତ ସଞ୍ଜୀବ ବିଷ ହରଣେ ।। ୯୭ ।।
ଆସି ବ୍ରଜେ ଖ୍ୟାତ ଗୋବ ବାଳ ଲଭିବା ଯିବ
ଆଭୀରଙ୍କ ମୋଦ କହେ ଶ୍ୟାମସୁନ୍ଦର ଦେବ ।୯୮।



— ତୃତୀୟ କୁସୁମ —

॥ ଦ୍ୱିତୀୟ ବିଭାଗ ॥

# ବୋଲି ଲେଖନ

( କଣ୍ଠ ବୋଲ ବାଣୀରେ )

ଆଦେଶ କଂସର ବ୍ରଜ ସଞ୍ଚାର
ଅନିରୁଦ୍ଧ ଦେବ ସହସ୍ର ଶର ॥ ୧ ॥

ଅଛି ବିଟ ସେ ବିଷ ଉଦକରେ
ଅନ୍ତେ ଆଶ୍ରୟ ଗରୁଡ଼ରେ କରେ ॥ ୨ ॥

ଅଧୋକ୍ଷଜ ଛାତ ବୋଧେ ତୃଣ୍ଣରେ
ଅଟେ ପ୍ରସୂତ ଯେଣୁ ସୁପର୍ଣ୍ଣରେ ॥ ୩ ॥

ଅଭୟ ଯେଣୁ ବିଷ ପ୍ରସୂନରେ
ଅମୃତରେ ପୂର୍ଣ୍ଣ ସ୍ତନ ଘନରେ ॥ ୪ ॥

ଆନ ଆଶୀର ବୋଲେ କେ ଦୁଷ୍କର
ଅବସ୍ଥିତ ପୁଷ୍କରେ ଯେ ପୁଷ୍କର ॥ ୫ ॥

ଆଣି ପାରିବ କେ କର ବଢ଼ାଇ
ଅଞ୍ଜନେୟ ଶିର କାହା ବଡ଼ାଇ ॥ ୬ ॥

ଅତି ଖେଦ ବ୍ରଜେ ଧ୍ୱଂସ ରମଣୀ
ଅନୁରାଗୀ ପୂର୍ବ କଲ୍ପ ଦ୍ୟୁମଣି ॥ ୭ ॥

ଅଧୋକ୍ଷଜ ଉଦବେଗ ମତରେ
ଆସି ପ୍ରବେଶ ଯମୁନା ପ୍ରାନ୍ତରେ ॥ ୮ ॥

ଆନେକ କଲେ ବିଷ ଜଳ କଲ୍ଲୋଳେ
ଅଳସାକ୍ଷ ପତଙ୍ଗ ପାତ ନେଲେ ॥ ୯ ॥

ଅନୁଚିତ ପତଙ୍ଗ କନ୍ୟକାରେ
ଅପହୃତ ପତଙ୍ଗ କୂଳକ ରେ ॥ ୧୦ ॥

ଆସେ ରଥାଙ୍ଗୀ କେ ପଞ୍ଚ ପ୍ରାଣକୁ
ଅର୍ଥନାରେ ହୋଇ ଚଞ୍ଚୁ ତୃଣକୁ ॥ ୧୧ ॥

ଅବଲୋକ ଥିଲା ବାଳ ଗାବର
ଅପହୃତ ବସ ହରିତାମ୍ବର ॥ ୧୨ ॥

ଆଶ୍ୱାସିଲେ ଜାଣି ସଖା ବଚନେ
ଆଜ ଲଭ କାନ୍ତ ବସ ମୋଚନେ ॥ ୧୩ ॥

ଅମୃତ ପତଙ୍ଗଗଣ ହରଣ
ଆଣି ନପେ କରିଥିଲେ ଧାରଣ ॥ ୧୪ ॥

ଅଚ୍ଛି ପେଣୁ ସେ ତନ୍ତୁ ସଂଜ୍ଞାବନେ
ଆବେକ୍ଷଣ ଦୃଷ୍ଟି ଦେଲେ ଜୀବନେ ॥ ୧୫ ॥

ଅମୃତ ପେ ବସ ଯୋଗେ କଷଣ
ଅନ୍ତ ଖଳ ସଙ୍ଗେ ସାଧୁ ଦୂଷଣ ॥ ୧୬ ॥

ଅନେକ ନାଗ ସେ ବନେ ବିହର
ଅମରଷେ ଡେଇଁଲେ ପେଣୁ ହର ॥ ୧୭ ॥

ଆୟୁଧ କରି ମୃନାଳ ପ୍ରହାର
ଅଶେଷରେ ନାଗବଳ ସଂହାର ॥ ୧୮ ॥

ଆସେ କାଳୀୟ ଚନ୍ତ୍ର ଅଭ୍ରମଦ
ଅଟେ ନୃଥପ କ ସେ ବନ୍ଧ୍ୟ ନଦ ॥ ୧୯ ॥

ଅଗ୍ରେ ଅପ୍ରିୟା ନିଷେଧ ତାରକ
ଆମ୍ଭେ ନାଗ ହୋଇ ବଳେ ଧର କ ॥ ୨୦ ॥

ଅନ୍ତ୍ରଭୂକ ବାଦ ରଚ ପୂର୍ବରେ
ଆସି ଲୁଚନ୍ତ ହାରି ଆହବରେ ॥ ୨୧ ॥

ଅଧୀର ଗଜ ବଧିର ପରି ରେ
ଆଜ ଆରମ୍ଭିଲା କୋପେ ହରି ରେ ॥ ୨୨ ॥

ଅଚେତ୍ରି ତ କୃଷ୍ଣ ନାଗରମଣି
ଏତ ଭୋଗାସକ୍ତ ନାରୀ ରମଣୀ ॥ ୨୩ ॥
ଅବଲୋକନ ପ୍ରଧାପନ ରସରେ
ଅଧିକ ବନ୍ଧେ ଶୋଭା ବିବାସରେ ॥ ୨୪ ॥
ଅଙ୍ଗ ମର୍କତ ଲଙ୍ଗ ମଞ୍ଜୁଳରେ
ଆବେଷ୍ଟିତ କି କୁସୁମ ମାଳରେ ॥ ୨୫ ॥
ଅନଷ୍ଟ ବ୍ରଜେ ତ୍ରିବଧିରେ ପାତ
ଅନ୍ତସ୍ଥାଷ ଦବ ଭୂବ ଜପ୍ରାତ ॥ ୨୬ ॥
ଅଶ୍ରୁ ବରଷାରେ ମଗ୍ନ ପଙ୍କିଲ
ଅତି ଝଂଝା ମରୁତ ଶ୍ୱାସ କଳ ॥ ୨୭ ॥
ଅଙ୍ଘ୍ରି ସ୍ଖଳନ ପୁରୁଷ କାମିନୀ
ଅମାନ ସମନ ସଉଦାମିନୀ ॥ ୨୮ ॥
ଅନ୍ଧ ତମ ତାପ ଘୋଟେ ଅନଣେ
ଅଟେ ତନତ ସଦନ ଧ୍ୱନ ସେ ॥ ୨୯ ॥
ଆକାଶ କର ବ୍ରଜକୁ ବଢ଼କଲେ
ଆସେ ପିତାମାତା ଆଦ ସକଳେ ॥ ୩୦ ॥
ଆସୁଂ ଚନ୍ଦ୍ରାବଳୀ ଉମା ତୀର୍ଥରେ
ଅଚ୍ୟୁତ ଖତ ଶୁଣିଲେ ପଥରେ ॥ ୩୧ ॥
ଅଭିଷେକ କୁଚ ନେତ୍ର ଲୋଚନ
ଅଧାସ୍ଥ କି କୃଷ୍ଣ ଦେବେ ମୋଚନ ॥ ୩୨ ॥
ଅବମା ପାତ ଶୋକେ ମୂରୁଛିତ
ଅମର ତରୁ ତରୁଣୀ ବାଞ୍ଛିତ ॥ ୩୩ ॥
ଅଟ ହୃଦ ମୃଗମଦ ତିଳକ
ଅବମା ମଣ୍ଡନ ଯୁବା ତିଳକ ॥ ୩୪ ॥
ଅଭିନବ ଘନ କାମଦା ବରେ
ଅଖିଳ ରମଣୀ କାମ ଦାବରେ ॥ ୩୫ ॥

ଆମ୍ଭେକ ପେଢିଲା ଅଭିମାନରେ
ଅଛି ପରୁଷ ହୃଦ ସମାନ ରେ ॥ ୩୬ ॥
ଆନନ ଶୁଖାଇ ଦେଖି ରହିଲେ
ଅବଶ୍ୟ ପ୍ରାଣେ ତୁଟିବା କହିଲେ ॥ ୩୭ ॥
ଅହି ସଉତ ଧାସ ବଉତତ
ଅପମାନ ମୋ ନ ସହେ କଂଚତ ॥ ୩୮ ॥
ଅନ୍ୟ ମନ୍ତ୍ରେ ଯେ ଗୁଣ ସୁମରଣେ
ଅଭିବାଞ୍ଛିତ କରଇ ମରଣେ ॥ ୩୯ ॥
ଆସି ଭଦ୍ରା ମଙ୍ଗଳାଦ ପ୍ରେମରେ
ଅନୁରାଗ ସିନ୍ଧୁ ଭାସ ସୁମତେ ॥ ୪୦ ॥
ଅର୍କ ସ୍ଥଳକୁ ରାଧା ଆଗମନ
ଅଚ୍ୟୁତ ଦରଶନେ ଦେଇ ମନ ॥ ୪୧ ॥
ଅଦରଶନରୁଁ କରେ ବଗୃର
ଆଜ ନାହିଁ କୃଷ୍ଣ ବନେ ସଂଗୃର ॥ ୪୨ ॥
ଅନାଗତ ହେଲ ଗତ ଅହରେ
ଆସିଲେ ନାହିଁ ଦୁଃଖ ସଂଗ୍ରହରେ ॥ ୪୩ ॥
ଅସମ୍ଭାବତ ପାଞ୍ଚେ ସେ ଚତୁର
ଆଶ୍ଳେଷକୁ ହୋଇଥାନ୍ତେ ଆତୁର ॥ ୪୪ ॥
ଅବଗ୍ରହେ ଘନ ଅବୃଷ୍ଟି କର
ଆଶା କ ଭଙ୍ଗ ହୋଏ୍ ଗୃତକର ॥ ୪୫ ॥
ଅନେକେ କ ଷ୍ଟାଳ ଧୂମ ସରସେ
ଆକାଶୁ ପାଂଶୁ ରୁଧିର ବରଷେ ॥ ୪୬ ॥
ଅରଣ୍ୟ ମାରସ ଝଡ଼େ ସୁମନ
ଅଶ୍ରୁ ପୂରେ ନେହେ ବ୍ୟାକୁଳ ମନ ॥ ୪୭ ॥
ଅଙ୍ଗ ଦକ୍ଷିଣ କମ୍ପଇ ଅଯୁନେ
ଆସି ଭେଟେ ବୃନ୍ଦା ଅଶ୍ରୁ ନୟନେ ॥ ୪୮ ॥

ଅଧୋକ୍ଷଜ ସ୍ଥିତ ବନ୍ଧ ଭୁବନ
ଅନ୍ଧ ରମଣୀ ଭୋଗେ ଲୋଭ ବନ ॥ ୪୯ ॥

ଅଧିକ ବନ୍ଧର ସେ ପ୍ରଦୀପନ
ଆଜ ଯେ୍ତ ଭବ କାରଣେ ଉତ୍ପନ୍ନ ॥ ୫୦ ॥

ଆସି ମୁଁ କାଲ କନ୍ଦଳ ହେ ହର
ଆପଣେ ଗୁଞ୍ଜା ନେଲ ଅପହର ॥ ୫୧ ॥

ଅନ୍ତରେ ଯେନ୍ଧୁ ହେତୁରେ ମାନସ
ଆସିବେ କ ଆବରଣ ଆନସ ॥ ୫୨ ॥

ଅବଶ୍ୟ କାଲ ବୁଝିବା କନ୍ଧଲେ
ଆଜ ପ୍ରାଭୁ ଯେ୍ତ ଚରିତ ବନ୍ଧଲେ ॥ ୫୩ ॥

ଅଙ୍ଗନା ହରଷ ପୀୟୂଷ ଭାନୁ
ଅତ ଗ୍ରାସିଲ ଯେ୍ତ ଗିର ସ୍ୱର୍ଗନୁ ॥ ୫୪ ॥

ଅଦୋଷେ କମ୍ପା ଚେଜଲ ବେଗରେ
ଆସକ୍ତ ହୋଇ ସପତ୍ନୀ ଭୋଗରେ ॥ ୫୫ ॥

ଅଙ୍ଗଦ ଆଦ୍ଧ ଖସେ ଅଯତନ
ଅଞ୍ଜନରେ ଘମା ମଞ୍ଚ ପତନ ॥ ୫୬ ॥

ଅର୍ପିତ କଲ ଜୀବନ କାନ୍ତରେ
ଆଳ ଆବେଷ୍ଟିତ ହେଲେ କାତରେ । ୫୭ ।

ଅଛୁ କେବଳ ପ୍ରତିମା ପୁରଟ
ଅଧିକେ ବ୍ୟାପିଲ ସ୍ପନ୍ଦନ ରଟ ॥ ୫୮ ॥

ଅନଳ ପରୀକ୍ଷ କର ନାସାରେ
ଆଣି ଭୁଳା କେ ଡାଳଇ ରସାରେ ॥ ୫୯ ।

ଅନାଡିକା କେତ୍ତ କଲ ବାଚକ
ଅଛୁ ଯେତେ ମାଜ ଶୁଦ୍ଧ ସୂଚକ ॥ ୬୦ ॥

ଅଚ୍ୟୁତ ନାମ ଶୁଣାନ୍ତେ ସରସ
ଅଳ୍ପ ଶ୍ରୁତିମୂଳ ରୋମ ହରଷ ॥ ୬୧ ॥

ଆଜି ଭୃଙ୍ଗବଦ୍ୟା ସାଜଲେ ସାଣା
ଆଳାପ କେଦାର ରାଗ ପ୍ରବୀଣା ॥ ୬୨ ॥

— ଗୀତ —

( ରାଗ – କେଦାର * )

ଅନା ଅନା ମୀନ-ଦୃଶି ଗୋବନ୍ଦ ମନ୍ଦରେ ହସି
କାଳିନ୍ଦୀ ତୀରେ କରନ୍ତି ନୃତ୍ୟ ଗୋ
ଅମ୍ବୁଜ ଚରଣ ମଣି ଜ୍ୟୋତିରେ ରୁଚିର ମଣି
ନଭେ ଶୋଭେ ଯେମନ୍ତ ଆଦିତ୍ୟ ଗୋ । ଅଇ ଅଇ ॥୧॥

ଅଧିକ କମଳ ପାଣି ଯୋଗରେ ମୁରଲୀ ପାଣି
ଦୃଢ କୁଚ ମଦନ ଅସ୍ତ୍ର ଗୋ
ଅଧରୁଁ ପୀୟୂଷ ପାନ ଦେଇଛୁ ସ୍ୱାମୀ ରତନ
କାଳିନ୍ଦୀ ବକ୍ଷକୁ ନାହିଁ ଭକ୍ତି ଗୋ । ଅଇ ଅଇ ॥୨॥

ଅମୃତ ଦୃଷ୍ଟିକ ଚୋର ପରକାଶି ବକ୍ଷ ହାର
କାମ ଅସ୍ତ୍ର ବକ୍ଷ ଘାତେ ଧାର ଗୋ
ଆଲିଙ୍ଗନ ଆସେ କର ଟେକ ଦୁଅନ୍ତି ଆତୁର
ପଦ୍ମ ତୋଳି କୁଣ୍ଡଳ ସହାର ଗୋ । ଅଇ ଅଇ ॥୩॥

ଅଧୋକ୍ଷଜ ଗୁଣ ପ୍ରେମ ଶୁଣି ରୋମ ଉଦଗମ
ଚେତା ଲଭି ଭଲେ କୃଷ୍ଣ ଭାବ ଗୋ
ଆନେ କି ଦ୍ରବଇ ଚନ୍ଦ୍ର ମଣି ନ ଦେଖିଲେ ଚନ୍ଦ୍ର
କହଇ ଶ୍ୟାମସୁନ୍ଦର ଦେବ ଗୋ । ଅଇ ଅଇ ॥୪॥

ବୋଲି—

ଅକ୍ଷି କମଳ କଣ ମୁକୁଳିତ
ଅର୍କ ସୁତା କୃଷ୍ଣ ରୂପ କଳିତ ॥ ୬୩ ॥

* (ଗ) କେଦାର ରାଗେଣ ଗୀୟତେ

ଆସ୍ୟ କମଳ ନେତ୍ର ଇନ୍ଦୀବର
ଆଶ୍ଳେଷ ଇଚ୍ଛଇ ରମଣୀବର ॥ ୬୪ ॥

ଅଶ୍ରୁ ନୟନ ମୁଞ୍ଚଇ ବମନ
ଅଳି ମକରନ୍ଦ କରେ ବମନ ॥ ୬୫ ॥

ଅନ୍ତେ କୃଷ୍ଣଚନ୍ଦ୍ର ଭାବ ରମଣୀ
ଅଶ୍ରୁ ଛଳେ ଦ୍ରବେ କି ଚନ୍ଦ୍ରମଣି ॥ ୬୬ ॥

ଅଚ୍ୟୁତ କହୁଥାଅ ତୋର ବିନା
ଆନ ଭୋଗେ ଇଚ୍ଛା ନୋହେ ନବୀନା ॥ ୬୭ ॥

ଅନ୍ୟ ରମଣୀ ଭୋଗବନ୍ଧେ ରହି
ଅଳ୍ପ ହି ମୋ ପ୍ରୀତି ଚଞ୍ଚଳ ନାହିଁ ॥ ୬୮ ॥

ଅସ୍ଥି ପ୍ରତିମା ତୁ ମୋର ହୃଦୟ
ଅସହ୍ୟ ହେଲା ଯେ ଗିରି ସଦୟ ॥ ୬୯ ॥

ଆପଣ ବିଷ ଦାହ କଳେବର
ଅଛି ମୁ ନିର୍ବିଷ ଶୋଭା ପ୍ରବର ॥ ୭୦ ॥

ଅହି ଦଂଶିଲେ ଅଙ୍ଗୁଳି ଅଗ୍ରରେ
ଅବୟବ ବିଷ ବ୍ୟାପେ ବ୍ୟଗ୍ରରେ ॥ ୭୧ ॥

ଅଛି ଯେପରି ମାତ୍ର ଦେଖିବାର
ଅତଥ୍ୟ ଯେଣୁ ତବ କହିବାର ॥ ୭୨ ॥

ଆପଣ ମନ୍ମଥ ମନମଥର
ଅନଙ୍ଗ ସୁନ୍ଦର ଖ୍ୟାତ ଯେଥିର ॥ ୭୩ ॥

ଅଙ୍କନ ଧ୍ୱଜ ଅର୍କ ରହିତରେ
ଆଲୋକବନ୍ତ ଲୋକ ରହିତରେ ॥ ୭୪ ॥

ଅମୋଘ ଦୃଢ଼ ଆୟୁଧ ନାଶରେ
ଅଙ୍ଗନା ସାଧ୍ୟ କି କୁସୁମ ଶରେ ॥ ୭୫ ॥

ଅପହୃତ କଳା ରୂପ ସଂସାର
ଅଯୋଗ୍ୟ ରତିକ ଯୁବତୀ ସାର ॥ ୭୬ ॥

ଅଳତା ଦଳ ବନେ ଧରି ପଦ
ଆତପ ବୋଇଲେ ମୋ ସୁଖ ସଂପଦ ॥୭୭॥

ଆଚ୍ଛାଦିଲ ବାସେ ନୋହେ ଉଚିତ
ଆଭୁଟରେ କେତେ ବନସ୍ତ ରଚିତ ॥ ୭୮ ॥

ଅରୁଣ ପଦକ ପ୍ରେ ରାଗ ପଦ
ଆଭରଣ ବନା ହୃଦ ବପଦ ॥ ୭୯ ॥

ଅମରନ୍ତେ ଅନୁରାଗ ସୁମର
ଆନ କେ ଥାନ୍ତା ମୋ ବନା ନ ମର ॥୮୦॥

ଅତି ବୃଦ୍ଧ ଅନୁରାଗ କବନ୍ଧ
ଅବଶ୍ୟ ଭଙ୍ଗିବ ହୃଦୟ ବନ୍ଧ ॥ ୮୧ ॥

ଆତ୍ମଭୂରେ ମାଗେ ପ୍ରେତେ କରବ
ଅଚ୍ୟୁତ ଘଟେ ଜୀବନ ଭୈରବ ॥ ୮୨ ॥

ଆସି କରୁଣ ରସ ମୂର୍ତ୍ତିବନ୍ତ
ଅଟେ ପ୍ରେ ରସେ ସମାଧି ଦୈବତ ॥ ୮୩ ॥

ଅଙ୍ଗ ତାଙ୍କ ପୋତ ବର୍ଣ୍ଣ ରଚନ
ଅନୁଭବ ଦେବ ନନ୍ଦା ବଚନ ॥ ୮୪ ॥

ଅବମା ପତନ ଆଦ୍ୟ ରେଦନ
ଅଙ୍ଗ ବୈବର୍ଣ୍ଣ ସାରସ ବଦନ ॥ ୮୫ ॥

ଅଧିକ ଉଶ୍ବାସ ଶ୍ବାସ ପ୍ରଲାପ
ଅବିରତରେ ଜନତ ବଳାପ ॥ ୮୬ ॥

ଆଗତ ପ୍ରେ ସମପ୍ରେ ପୂର୍ଣ୍ଣମାସୀ
ଆଳାପ କଳ ପରେ ପୂର୍ଣ୍ଣମାସୀ ॥ ୮୭ ॥

ଅଷପ୍ର କୃଷ୍ଣଚନ୍ଦ୍ରର ପ୍ରକାଶ
ଅମୃତ ଅବ୍ଧି କର୍କଟେ ନକାଶ ॥ ୮୮ ॥

ଆଜ ମୃଳ ଧନ୍ୟ ଚନ୍ଦ୍ର ମାତାର
ଅସ୍ତମ ନଧନ ଦୂବକତାର ॥ ୮୯ ॥

ଅଙ୍ଘ୍ରି ବନ୍ଦ ସର୍ବେ କଲେ ପ୍ରସନ୍ନ
ଆରାଧ ସେ ବୋଲେ ବିଶ୍ୱକସେନ ॥ ୯୦ ॥

ଅନ୍ତର କଣ୍ଠ ପ୍ରେଚେ ଭଗବନ୍ତ
ଆଶ୍ରିରେ ତଥା ସେ ଦେବ ସୁବନ୍ତ । ୯୧ ।

ଆରାଧି ପୁନ ଶିବରେ ଶରଣ
ଆରମ୍ଭି ଗୀତ ଶଙ୍କରାଭରଣ ॥ ୯୨ ।

—ଗୀତ—

(ରାଗ – ଶଙ୍କରାଭରଣ)

ଆହେ ଅନଙ୍ଗ ପର । ଅନନ୍ତ ଗୁଣ ଅନନ୍ତ ଜରେ ହାର ॥ ପଦ ॥
ଅଟ ଦେବଙ୍କର ଦେବ ଶଶି ଶିର । ଆଜ୍ଞାରେ ବରନ୍ତୁ ସୁଧା ସୁନାଶିର ॥ ୧ ॥
ଅପାର ଅକୃପାରର ଭବ ପାର । ଅସିତ କଣ୍ଠ ଯଶରେ ତତପର ॥ ୨ ॥
ଅଚ୍ୟୁତ ବିଷମ ବିଷ ହର ହର । ଆନନ୍ଦ କନ୍ଦ ଦେବ କନ୍ଦର ନର ॥ ୩ ॥
ଆଲୋକ ପ୍ରେ କର ଯଶେ ଦେବ ମୂଢ଼ । ଅମୃତ ପତନ କରୁ କି ଜମୋଦ ॥ ୪ ।
ଅନ୍ତ୍ୱ ବାଧା ଖଣ୍ଡ ଗୋବନ୍ଦ ରବ । ଶରଣ ପଶେ ଶ୍ୟାମସୁନ୍ଦର ଦେବ ॥ ୫ ।

ବୋଲି* –

ଅନ୍ତ୍ୱବୁଣ୍ଡି କେ ପ୍ରତିଜ୍ଞା ବିଧାନ
ଅଣି ଗଦ ମନ୍ତ୍ର କରେ ବିଧାନ ॥ ୯୩ ॥

ଅଚ୍ୟୁତ କାଳପୂ ଭୋଗ ବନ୍ଧରେ
ଅଧିକ ବୃଦ୍ଧ ପ୍ରଷ୍ଟକକୁ ଧରେ ॥ ୯୪ ॥

ଅନ୍ତ୍ୱ ଭଟ୍ଟୋଜ ମୁକ୍ତ ବନ୍ଧନ
ଅଦଶନ ଦଂଶି ବୋଧ ବର୍ଦ୍ଧନ ॥ ୯୫ ॥

---

* ଶ୍ରୀମସେବକବଦୈଷ୍ଣବ୍ୟାସ୍ମଣ୍ଣାପି ବେଷକୈତବାଦ ଯୁକ୍ତ ଧୀରୋଧରଃ । (ପୋଥି ଟୀକା)

ଅମର ଗିରି ଯଥା ସୁର ନାଗ
ଅନ୍ତ କଳ୍ପଲେ ତେମନ୍ତ ପୁଂ ନାଗ ॥ ୯୬ ॥
ଅଚ୍ୟୁତ ଯେ ଧୀରେନ୍ଦ୍ରତ ଲକ୍ଷଣେ
ଆଣ୍ଟରେ ଚଳ ପ୍ରହାର ସେକ୍ଷଣେ ॥ ୯୭ ॥
ଆରେନ୍ଧ ରଙ୍ଗଭୂମି ମସ୍ତକରର
ଅଟେ କି କୁଟ୍ଟିମ ମଣି ପ୍ରକାରେ ॥ ୯୮ ॥

ଶ୍ଳେଷ—

ଅମୃତ ବୃଷ୍ଟି କରେ ଆଖଣ୍ଡଳ
ଆନକ ଧ୍ୱନ ଆକାଶ ମଣ୍ଡଳ ॥ ୯୯ ॥
ଅନ୍ଧଭୁକ ଗୃହୁ କୃଷ୍ଣ ଉଲ୍ଲାସ
ଅଚଳ ଶିଖରେ ରଚେ କି ଲାସ୍ୟ ॥ ୧୦୦ ॥
ଅଟେ ଫଣି ମଣି ବଦ୍ୟୁତ ଦ୍ୟୋତ
ଆଭରଣ ରତ୍ନ ବ୍ରାତ ଖଦ୍ୟୋତ ॥ ୧୦୧ ॥
ଅନେକ ଗିରି ଶୃଙ୍ଗ ଫଣା ଧାର
ଆରେନ୍ଧ ନାଟ ରଚ ବାର ବାର ॥ ୧୦୨ ॥
ଅଛୁ ପୁଚ୍ଛ କେକୀ ପିଚ୍ଛ ଅଟେ କି
ଆପେ ଧରି କରେ ନାଚନ୍ତି ଟେକି ॥ ୧୦୩ ॥
ଅନ୍ଧ ମଣି ନବ ଦ୍ୟୁମଣି କରେ
ଅରବନ୍ଦ ପଦ ବକାଶ କରେ ॥ ୧୦୪ ॥
ଅପୂର୍ବ ନୃତ୍ୟେ ନରେପି ନୟନ
ଆକାଶେ ଗନ୍ଧର୍ବ ଗୀତ ଗାୟନ ॥ ୧୦୫ ॥

—ଗୀତ—

( ରତ୍ନମାଳା କେଦାର ରାଗେଣ ଗୀୟତେ )

ଆଜ ରାଜେ ହରି ନର୍ତ୍ତନରେ । ଅକ୍ଷି ଠାରେ କରି ଅର୍ଦ୍ଧନରେ ॥୧॥
ଅଙ୍ଘ୍ରିର ନୂପୁର ରଣିତରେ । ଅନଙ୍ଗ ତେଙ୍ଗୁ ବ ମଣି ତରେ ॥୨॥

ଅପସର ଧୀର ଦୂରତରେ । ଆପୀଡ଼ିତ କାମ ଦୂରନ୍ତରେ ॥ ୩ ॥
ଅଭ୍ରମତ କର ସୁରତରେ । ଆମନ୍ତ୍ରନ ସୁର ସରତରେ ॥ ୪ ॥
ଆଖିଖ ନସ୍ତନ ଉତ୍ସବରେ । ଆଲୋକନେ ଆନ ତୁଚ୍ଛ ବରେ ॥ ୫ ॥

ବୋଲି—

ଆପେ ଗୋଧା ଯେନ ବପୁସୀ ବାର
ଅଞ୍ଜନ ପୂର୍ଣ୍ଣମାସୀଙ୍କ ଦେବାର ॥ ୧୦୬ ॥
ଅକ୍ଷିରେ ରଞ୍ଜି ଶୋଭା ନର୍ତ୍ତନର
ଅବଲୋକେ ମହୋତ୍ସବ ମନର ॥ ୧୦୭ ॥
ଅତ ଗୁରୁତ୍ୱରେ ପଦ କମଳ
ଆସ୍ୟ ରୁଧିରେ ଯମୁନା ଧୂମଳ ॥ ୧୦୮ ॥
ଆସି ସ୍ତବ ରଚେ ନାଗରମଣୀ
ଅନୁକ୍ଷୋଣ ଗୋପ ନାଗରମଣି ॥ ୧୦୯ ॥
ଅଧୂନା କହିଲେ ଯମୁନା ତେଜ
ଅସହ୍ୟ ନାଗର ହରିର ତେଜ ॥ ୧୧୦ ॥
ଅବଲୋକଲେ ଶିରେ ବସ୍ତୁ ପଦ
ଅଧିକେ ଦ୍ୱିଜଗଜ ସୁଖପ୍ରଦ ॥ ୧୧୧ ॥
ଅନ୍ତ ରସନା ସୋପାନେ ଚରଣ
ଅବରୋହି ଚନ୍ଦ୍ର ପରେ ଧାରଣ ॥ ୧୧୨ ॥
ଅରି ଯୁଗେ ପରାଭବ ଜଡ଼ିତ
ଆଭରଣ ମଣି ରତ୍ନେ ଅର୍ଚ୍ଚିତ ॥ ୧୧୩ ॥
ଅର୍କ ନନ୍ଦନା ରହିତ ନାଗରେ
ଆସ୍ୟ ନଳିନ ମଳିନ ବେଗରେ ॥ ୧୧୪ ॥
ଅନେକ ଯେ ମୃତ ପକ୍ଷୀ ପଶବ
ଅମୃତ ବଳେ ସଜୀବ ସେ ଶବ ॥ ୧୧୫ ॥
ଅଧୀଶ୍ୱର ଯେଣୁ ହରି କମଳେ
ଅନାୟାସେ ବଶ ଥିଲେ କମଳେ ॥ ୧୧୬ ॥

ଅର୍କ ସୁତା ତୀର ପୂର୍ବ ପର୍ବତ
ଅକ୍ଷୀଣରେ କୃଷ୍ଣଚନ୍ଦ୍ର ବତ ॥ ୧୧୭ ॥
ଆନନ୍ଦିତ ପ୍ରିୟା ଗୋପୀ କୁମୁଦ
ଆଖିର ପିତର ଚକୋର ମୁଦ ॥ ୧୧୮ ॥
ଶ୍ଳେଷ —
ଅସ୍ତ ଘନବନ୍ଧୁ ପ୍ରେ ସମୟରେ
ଆନନ୍ଦଦା ନଶାଚର ଚୟରେ ॥ ୧୧୯ ॥
ଆସି ବଶ ପ୍ରଦୋଷରେ ଦୁଷିତ
ଅବନୀ ସୁର ମନ୍ତ୍ରେ ବିନାଶିତ ॥ ୧୨୦ ॥
ଅନ୍ଧକାର ଆସି ବ୍ୟାପେ ବିପିନ
ଆଖିର ସର୍ବେ ରହିଲେ ବିପିନ ॥ ୧୨୧ ॥
ଅର୍ଦ୍ଧ ନିଶା ଗତ ଦେଖେ ଘସ୍ମର
ଆଲୋକ ପୂରିତ ବିଶ୍ୱବସୁର ॥ ୧୨୨ ।
ଅଦ୍ଭୁତ ଦେଖି ସକଳେ ଆକୁଳ
ଅଗ୍ରେ ଉଭା ହେଲେ ପୀତ ଦୁକୂଳ ॥ ୧୨୩ ।
ଅପସରି କୃଷ୍ଣ ଦରଶନରେ
ଅବସ୍ଥିତ ସିନ୍ଧୁ ହୁତାଶନରେ ॥ ୧୨୪ ॥
ଅଦ ରମଣୀର ପ୍ରାଚୀ ଲପନ
ଅରୁଣ ରାଗ କୁଙ୍କୁମ ଲେପନ ॥ ୧୨୫ ।
ଆଲୋକ କମଳ ଯୋନି ହସିଲେ
ଅପବାଦ ରବ କାକ ଘୋଷିଲେ ॥ ୧୨୬ ॥
ଆଳସ୍ୟକୁ ସର୍ବ ଉତ୍ସୁକ ମନ
ଅଗ୍ରତୁ ଯଶୋଦା କଲେ ଗମନ ॥ ୧୨୭ ॥
ଆକୁଳ ତନୟ ଉପବାସରେ
ଅରଣ୍ୟେ ରହିଲେ ଉପବାସରେ । ୧୨୮ ।
ଆପଣେ ପେଷିଲେ କୁନ୍ଦଲତାକୁ
ଆଣ କହି ବୃଷଭାନୁ ସୁତାକୁ ॥ ୧୨୯ ॥

ଆଗତ କୃଷ୍ଣ ବୟସ୍ୟ ଆରତେ
ଆପଦ କହେ ଜଟିଳା ସ୍ୱରତେ ॥ ୧୩୦ ॥

ଅଙ୍ଗୀକାରକୁ ଯେଣ ଅବାଧାରେ
ଅଟବୀରେ ସର୍ବ କହେ ରାଧାରେ ॥ ୧୩୧ ।

ଆନନ୍ଦେ ଗମନ ନନ୍ଦ ନିବାସ
ଆସେ ନନ୍ଦ ଯେଣ ଜଗନ୍ନିବାସ ॥ ୧୩୨ ॥

ଅବକାଶ ଦୂତ ଓଗାଳେ ସ୍ୱରେ
ଅମ୍ବୁଜ ଯେଣ ଚଳ ମଧୁପୁରେ ॥ ୧୩୩ ॥

ଅଚ୍ୟୁତ ଅଭିଷ୍ଟ ରାଧା କେଳିରେ
ଆକାଶ ବ୍ୟାପକ ଘନାବଳିରେ ॥ ୧୩୪ ॥*

ଆସି ଭାଷେ ଦେଖି ଆଳି ବୃନ୍ଦରେ
ଆମ୍ବୁଜ ରାଧେ ପ୍ରବେଶ ଗୃହରେ ॥ ୧୩୫ ।

ଅମ୍ବର ମେଘରେ ମେଦୁର ତମ
ଅରଣ୍ୟ ଭୂବ ତମାଳରେ ତମ★॥ ୧୩୬ ॥

ଅନ୍ଧକାରକୁ ସେ ଡରେ ବଧିରେ
ଆଦେଶ ନନ୍ଦର ପାଇ ସଧୀରେ ॥ ୧୩୭ ॥

ଅର୍କଜା ତୀର ମାର୍ଗ କୁଞ୍ଜେ ରହେ
ଅଚ୍ୟୁତ ରାଧା କେଳି ରତେ ରହେ ।୧୩୮।

---

* ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଲଦ୍ରୁମୈ-
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ! ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଲିତୟୋଃ ପ୍ରତ୍ୟଧ୍ୱକୁଞ୍ଜଦ୍ରୁମମ୍
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ ॥ ୧ ॥
(ଗୀତଗୋବିନ୍ଦେ) (ପୋଥିପାଠ)

★ 'କ' ପୋଥିରେ ଦ୍ୱିତୀୟ ପାଦ ନାହିଁ ।

ଆପେ କୁଚ ଶମ୍ଭୁ, ଧରି ଶପଥ
ଅଚ୍ଛୁ କି ଦୋଷ ପାଞ୍ଚ ହୃଦ ପଥ ॥ ୧୩୯ ॥

ଅଧରେ ହୃଷ୍ଟ ଚତୁର ମୁଖରେ
ଆବେଗେ ସୁଧା ଚତୁର ମୁଖରେ ॥ ୧୮୦ ॥

ଅବାଧା ଅନଙ୍ଗ ଆସି ବଷରେ
ଅନଙ୍ଗ ପ୍ରେମ ଭରେ ଆସି ବସରେ ॥୧୮୧॥

ଆସି ସୁବଳ ଆଭରଣ ମଣି
ଅର୍ପିତ ଦେବାର ଅନ୍ୱ ରମଣୀ ॥ ୧୮୨ ॥

ଆମନ୍ତ୍ରଣ ପ୍ରିୟା କଲେ ଚନ୍ଦ୍ରିଷ୍ଟା
ଆଣେ ମନ୍ଦରୁ ଭୋଜନ ଧନଷ୍ଠା ॥ ୧୮୩ ॥

ଆନନ୍ଦ ଲଜ୍ଜାରେ କାମି କାମିନୀ
ଅମୃତ ପଚ୍ଛେ କି ସଉଦାମିନୀ ॥ ୧୮୪ ॥

ଆସନ୍ତେ ଲୋକ ନୟନ ସମ୍ପତି
ଆଶ୍ଚର୍ଯ୍ୟ ମଣିଲେ ନବ ଦମ୍ପତି ॥ ୧୮୫ ॥

ଅମୃତାଂଶୁ ସେ ମୁଦ ସଙ୍ଗ ଗାବେ
ଅସୁଖଦା ଚନ୍ଦ୍ରାବଳୀ ରାଜବେ ॥ ୧୮୬ ॥

ଆସି ପୁତ୍ରର ମିତ୍ରଂ ଦେଖି ସୁଷମ
ଆଦର ମାତା ପୁତ୍ର ବଧୂ ସମ ॥ ୧୮୭ ॥

ଅପୂର୍ବ ପାକେ ତୋଷି ପୂର୍ବବତ
ଅଗ୍ରଜାଦି ହେଲେ ହରଷବନ୍ତ ॥ ୧୮୮ ॥

ଆସେ ଜୃମ୍ଭିକା ତାମ୍ବୁଳ ଦେବାରେ
ଅଛନ୍ତି ରକ୍ତପତ୍ରକ ସେବାରେ ॥ ୧୮୯ ॥

ଅଚ୍ୟୁତ ଭୁକ୍ତ ଶେଷ ଘେନ ଯାଇ
ଆପେ ଧନଷ୍ଠା ରାଧାଙ୍କୁ ଭୁଞ୍ଜାଇ ॥ ୧୯୦ ॥

ଅମ୍ବୁଜ ଘେନାଇ ସହସ୍ର ଦ୍ୱାରେ
ଆସେ ନନ୍ଦ ଦେଇ ନୃପ ସଭାରେ ॥ ୧୯୧ ॥

ଆଣିମାର ଖଣ୍ଡ ପସ୍ୱ ବକାରେ
ଆତ୍ମଜ ଛାଡ଼ିଲା ବନ୍ଧୁ ଡ଼କାରେ ॥ ୧୫୨ ॥
ଆଦର ସମ୍ମାନ* ଭାନୁ ଜେମାରେ
ଅମ୍ବର ଭୂଷାଦ୍ୱ ପ୍ୟେ ସୁଷମାରେ ॥ ୧୫୩ ॥
ଅନେକ କଳ୍ପବ ଶ୍ରମୂ ଆଳାପ
ଅଘୋରେ ପେଷିଲେ ଶୋଭା କଳାପ ।୧୫୪।
ଅରଣ୍ୟେ ଢନେ ସଖା ମେଳେ ହରି
ଆମ୍ର ଆଦ୍ୱ ଭୁକ୍ତ ଲୀଳା ବହରି ॥ ୧୫୫ ॥
ଅଭ୍ୟାନ୍ତର ନାହିଁ କବଳେ ଖାଇ
ଅତି ମଧୁର ଆନକୁ ଚଖାଇ ॥ ୧୫୬ ॥
ଆସେ ଋଷିଚୟ ମନ ପ୍ରମନ୍ନେ
ଆକାଙ୍କ୍ଷା କରି କୃଷ୍ଣ ଦରଶନେ ॥ ୧୫୭ ॥
ଅଭିନ୍ନ ରୂପ ଦେଖି ପ୍ୟେକାଗ୍ର
ଅଚ୍ୟୁତ ନାହାନ୍ତ୍ର କଲେ ବଗ୍ର ॥ ୧୫୮ ॥
ଅଖିଳ ନାୟକ ଆଜ ନାଗତ
ଅଭାଗ୍ୟ ନେବେ ନୋହିଲେ ସଙ୍ଗତ । ୧୫୯।
ଅଧୋକ୍ଷଜ ଜ୍ଞାନ ଅନୁବାଧରେ
ଆରମ୍ଭ ପଞ୍ଚସାନ୍ଧ୍ୱ କପର୍ଦ୍ଦରେ ॥ ୧୬୦ ॥
ଅର୍ଭକ ପ୍ରାକୃତ ଖେଳ ବତ୍ସର
ଆକାଶ ମାର୍ଗେ ଋଷି ପଥଗ୍ରର ॥ ୧୬୧ ।
ଅଷ୍ଟ ଲୋଚନେ ସର୍ବ ନିବେଦନ
ଆଳାପ ତା ଶୁଣି ବେଦ ବଦନ ॥ ୧୬୨ ।
ଆଶିଷ୍ୟ ଦେଇ ଘେନ ନମସ୍କାର
ଆସିଲ ହରି କଲେ ପୁରସ୍କାର ॥ ୧୬୩ ॥
ଅନ୍ତର୍ ପାଣ୍ଡବ ରୁ ଅପ୍ରକଟ
ଆଚରି ପୂର୍ବେ ଲଭିଲ ସଂକଟ ॥ ୧୬୪ ॥

---

* ସନ୍ମାନ (ପୋଥିପାଠ)

ଅନେକ ଜ୍ଞାନ ବିଚାର ଖେଳରେ
ଆପେ ବୁଝାଇଲେ ଋଷି ମେଳରେ । ୧୬୫ ।
ଅବନୀ ଦେବେ ଧାତା ପ୍ରଶଂସିତ
ଆମ୍ଭେ ହେଲୁ ତପ ଗର୍ବେ ଦୂଷିତ ॥୧୬୬॥
ଆପଣେ ବୋଧା ପେଷିଲେ ନାରଦ
ଆଗର କର୍ମାରେ ହେବ ବରଦ । ୧୬୭ ।
ଅନନ୍ତ ଦଣ୍ଡକ ଋଷି ନାମରେ
ଅବଶ ସ୍ୱେ ଗ୍ରାମ ଅଭ୍ୟାସରେ ॥ ୧୬୮ ॥
ଅନ୍ଧ ବର ଦେବେ ସ୍ୱେ ଯୁଗେ ବର
ଆପେ ନବାହ ତା ତପୀ ପ୍ରବର ॥ ୧୬୯ ॥
ଆଜଠାରୁ ତୁମ୍ଭେ ଋଷି ବ୍ରଜରେ
ଆସ୍ଥିତ ଗୋପାଳ ମନ୍ତ୍ରରାଜରେ ॥ ୧୭° ।
ଅନୁଜ୍ଞା ଯେନ ଆସୁ ପଥେ ଚଳ
ଆଲୋକରେ ସୁଖୀ ଦେଖିବ କଳ ॥ ୧୭୧ ॥
ଅନନ୍ତ ପୁଣ୍ୟ ନାମ କୀର୍ତ୍ତନରେ
ଅନାୟାସେ ମୋକ୍ଷ ଲଭ ଜନରେ । ୧୭୨ ।*
ଅଟେ ସାଧୁ ମାତ୍ର ଗୁଣ ଲେଶକୁ
ଆଦର ମୂଳନ୍ତ୍ର ବହୁ ଦୋଷକୁ ॥ ୧୭୩ ॥
ଆପଣେ କଷ୍ଟେ ସଂଗ୍ରହ କଳକ
ଆଖ୍ୟା ସଂକଟାଡ଼ା ସାର ପାଳକ ॥ ୧୭୪ ।
ଅପି ସ୍ୱେ ସମସ୍ୱେ ଭଗବତ୍ତାରେ
ଅଟେଷ୍ଟା ଦେଖା ଜାତ୍ୟେ ନତରେ ॥ ୧୭୫ ॥
ଅବୋଧ ଗୋପକନ୍ୟା ନବତରେ
ଅଚ୍ୟୁତ କେଳ୍ପ ଦେଖିଥିବ ରହରେ ॥ ୧୭୬ ॥

---

* କଳେର୍ଦୋଷ ନିଧେରାଜନସ୍ତି ହ୍ୟେକୋ ମହାନ୍ ଗୁଣଃ ।
କୀର୍ତ୍ତନାଦେବ କୃଷ୍ଣସ୍ୟ ମୁକ୍ତବନ୍ଧଃ ପରଂ ବ୍ରଜେତ ॥୧॥
(ଶ୍ରୀ ଭାଗବତେ ॥ ଦ୍ୱାଦଶ ପାଠ )

ଅଙ୍ଗେ ଜଡ଼ିବା ସେଁନେହ ବଳାନ୍ତି
ଆଦରରେ ଯୋଗେ ପଢ଼ିଲେ ପଳାନ୍ତି ।୧୭୭॥
ଅଗାଧ୍ୟ ଡାତ ମାତଙ୍କର ବର
ଆନ ନୋହିବ କୃଷ୍ଣ ବଳା ବର ॥ ୧୭୮ ॥
ଆକଳ୍ପରେ ପୋଷେ ନନ୍ଦ ବାସରେ
ଆସନ୍ତ ହୋଇ ଆନନ୍ଦ ବାସରେ ॥ ୧୭୯ ॥
ଅପସର ସର ନୋହେ ରୂପରେ
ଆତ୍ମଜ ସ୍ନେହ ବର କ ରୂପରେ ॥ ୧୮୦ ।
ଅଟଗା ଦେବାର ଶୁଣି ଆଖ୍ୟାନ
ଅନ୍ତରେ କଲେ ଦେବ ଋଷି ଧ୍ୟାନ । ୧୮୧॥
ଅନ୍ତକେ ମିଳନ୍ତେ କଲେ ଅର୍ଚ୍ଚନ
ଆପଣେ କହିଲେ ବେଧା ବଚନ ॥ ୧୮୨ ॥
ଆଳାପ ଦେବାର ସେହି କାରଣ
ଆମ୍ଭେ ଭଦ୍ରୁକେ କଲୁ ସୁମରଣ ॥ ୧୮୩ ॥
ଆତୁର ଭଯୁ ଯେନ ଶେଷ ପ୍ରେ ଯୁଗ
ଅନ୍ତରେ ବା ଚରେ କରବ ଯୁଗ ॥ ୧୮୪ ॥
ଅଙ୍ଗନା ଭାବରେ ଭଜ ଭାବିଲେ
ଅଙ୍ଗେ ଗାନ୍ଧର୍ବିକା ମନ୍ତ୍ର ନ୍ୟାସିଲେ । ୧୮୫ ।
ଆରାଧ୍ୟ ବୃନ୍ଦାଙ୍କୁ ରାଧା କୁଣ୍ଡରେ
ଆମନ୍ତ୍ରନେ ନାଶ ଭବ ଖଣ୍ଡରେ ॥ ୧୮୬ ।
ଆପଣେ ନାରଦ ନାଟକୁ ପାଇ
ଅନୁସରେ କନ୍ୟା ମିଳନ ପାଇଁ ॥ ୧୮୭ ॥
ଅନ୍ତେ ଚିନ୍ତ ଶ୍ୟାମସୁନ୍ଦର ଦେବ
ଆଲପିଚ ଶ୍ୟାମସୁନ୍ଦର ଦେବ ॥ ୧୮୮ ॥



# — ଚତୁର୍ଥ କୁସୁମ —

## ॥ ପ୍ରଥମ ଛାନ୍ଦ ଲେଖନ ॥

( ରାଗ – ବରାଡ଼ି । ଗୋପଜୀବନ ବାଣୀରେ )

ଅଳଙ୍କାର ରୀତି ଶୁଣ    ବୁଧ ମେଧାବୀ ସଗୁଣ
ନିପୁଣ ଯେ ସାହିତ୍ୟେ ପ୍ରମାଣ
ଆସନ୍ତି ଗୋପ କୁମାରୀ    ଅଭିନବ ସୁକୁମାରୀ
ପୁଷ୍ପେ କରି କବରୀ ନିର୍ମାଣ ସେ
ଅଙ୍ଗଶୋଭ !
ଅବନୀର ହୋଇ ଆଭରଣ,
ଅଦ୍ଭୁତ ଶୋଭା ଧାରଣ    ରଣ ନୂପୁର ଚରଣ
ଡାକେ ନିଶ୍ଚେ ରଣ ରଣ ରଣ ସେ ॥୧॥

ଶ୍ଳୋକଃ —

ଅଳଙ୍କାରସ୍ତ୍ୱଥ ଭାବ-ହାବ-ହେଳା ସ୍ୟୋଙ୍ଗଜା ।
(ଇତି ସାହିତ୍ୟେ)

ଭାବ—

ଅବିକାରି କାହା ଚିତ୍ତ    ଚିତ୍ତଜ ହୋଇ ଆଗତ
ପୀଡ଼ିବାରୁଁ ଛନ ଛନ ମନ
ଆକରଷଣରେ ଭୂତ    ଯଥା ଅନର୍ଥ ସଂଭୂତ
ସଙ୍ଗ ଦୋଷେ ସଜ୍ଜନ ଶମନ ସେ
ଅଙ୍ଗଶୋଭ !
ଆଶୁଗ ମନ୍ଦ କୋକିଳ କଳ,
ଅଙ୍କୁରିତ ଯଉବନୀ    ଭାବ ବୃଦ୍ଧି ସଂଜୀବନୀ
କୃଷ୍ଣ ପ୍ରେମ ଧନ ତା ସକଳ ସେ ॥୨॥

ଦ୍ୱାବ—

ଅଚ୍ୟୁତ ଅବଲୋକନ          କନକାଙ୍ଗୀର ପ୍ରେମ ମନ
ବେଗେ ବେଢ଼ାଇ ବଗଲ କରେ
ଅପାଙ୍ଗ ଶରକୁ ଭ୍ରୂନ୍ତ          ଶରାସନେ ସନ୍ଧି ଧିରୁ
ବନ୍ଧିଲା କ ବେଗରେ ବକ୍ଷରେ ସେ
ଅଙ୍ଗଶୋଭି !
ଅନାନ୍ତେ କୃଷ୍ଣ ବଞ୍ଚାନ୍ତ ଲଭି,
ଆନନ ପୋତି ହସରେ          ପୁନ ପାଲଟି ଦରରେ
ବକ୍ର ଗ୍ରୀବେ ବଲୋକେ ବଙ୍କିମ ସେ ।୩।

ଦେଳା—

ଆସୁ କେ ଦେଖି ଦରକ          ଫେଡ଼ ବାନ୍ଧେ କବରୀକ
ଆଲିଙ୍ଗନ ବଞ୍ଚିଲ ଆନରେ
ଅଳପ ଦେଖାଇ ସ୍ତନ          ସଂପୁଟକେ ଭରେ ମନ
ଦୃଢ଼େ ନୀବ ବାନ୍ଧେ ଯତନରେ ସେ
ଅଙ୍ଗଶୋଭି !
ଅତି ସୁଖ ଭଙ୍ଗୀ ସରଜଇ,
ଅଙ୍ଗୁଳ ଚିବୁକେ ଦେଇ          ଗୃହେଁ ଝଲକା କମ୍ପାଇ
କାଢ଼ି ପାଦେ ନୂପୁର ଖଞ୍ଜାଇ ସେ ।୪।

ଶ୍ଳୋକଃ —

ଶୋଭା କାନ୍ତିଶ୍ଚ ଦୀପ୍ତିଶ୍ଚ ମାଧୁର୍ଯ୍ୟଂ ଚ ପ୍ରଗଲ୍‌ଭତା
ଔଦାର୍ଯ୍ୟଂ ଧୈର୍ଯ୍ୟମିତ୍ୟେତେ ସପ୍ତୈବ ସ୍ୟୁରଯତ୍ନଜାଃ ॥
(ଇତି ସାତ୍ତ୍ୱିକ୍ୟେ)

ଶୋଭା—

ଆସି ବୟଃସନ୍ଧି ସନ୍ଧ     କ୍ଷୀଣ ପୀନ କୁଚ ବୃଦ୍ଧି
ହେଲା ବଧି ରୂପାସ୍ତୁ କାମରେ
ଅଙ୍ଗ ଯୌବନ ଶୋଭାରେ     ଶାଣିତ ହେଲା ବେଗରେ
ହର ନକ ଅରହ ସମରେ ସେ
ଅଙ୍ଗଶୋଭ
ଅକ୍ଷି ପକ୍ଷୀ ବନ୍ଦୀ କ ପଞ୍ଜର,
ଆଭରଣେ ରତ୍ନ ମୋତି     ଥିବାରୁଁ ସୂଚନୁ ଖ୍ୟାତି
ଧଡ଼ୁକୁ ବସନ ହେମ ଜର ସେ ।୭।।

କାନ୍ତି—

ଅନୋପମା ଜଉ ରମା     ଘଉଡ଼ାଇଲା ଉପମା
କାନ୍ତି ଲଭିବାରୁଁ ଉଭସଂରେ
ଆସ୍ୟ ଝଳ ସୁଷମାରେ     ଢ଼ଙ୍କା ପଦ୍ମ ଚନ୍ଦ୍ରମାରେ
ମାର ଗୃପେ ଭୃକୁ ବଳାସରେ ସେ
ଅଙ୍ଗଶୋଭ !
ଅକ୍ଷି ଚଞ୍ଜେ ଚଞ୍ଚଳେ ସ୍ୱେଣୀ କ,
ଆଲୋଚନା କୃଷ୍ଣକାନ୍ତି     ସ୍ୱେ କାନ୍ତି ଯୋଗ ସ୍ୱେକାନ୍ତ
ଶୁଦ୍ଧ ଲାଭ ହେବାର ସ୍ୱେଣିକ ସେ ।।୭।

ଘାପ୍ତି —

ଆସି ଲାବଣ୍ୟ ଯୌବନ     ମଦନ ମଦ ସୁବର୍ଣ୍ଣ
ଚୂର୍ଣ୍ଣ ସମ୍ପଦକୁ ଅଟ୍ଟ ପାଇ
ଅନଙ୍ଗ ଚତୁର ବର୍ଗ     ଲଭି ସନ୍ତ୍ୟଲୋକେ ବେଗ
ଷାରପ୍ରଭା ନୋହିବ କପାଇଁ ସେ
ଅଙ୍ଗଶୋଭ !
ଅନର୍ଥ ସ୍ୱେ ଜାଣ ସ୍ୱେକ ସ୍ୱେକ,
ଅଦ୍ଭୁତ କ ଯୁବା ଧୀର     ବଗୃର ସ୍ୱେ ଗୃର ଦୁର
ମଣି ମନ୍ତ୍ର ଔଷଧି ପ୍ରାସ୍ୱେକ ସେ ।।୭।।

ମାଧୁର୍ଯ୍ୟ—

ଅଟବୀ କୁଞ୍ଜରେ ଲୁଚ        ଯୁଗଳେ ଖେଳନ୍ତି ପୁଚ
କିଙ୍କିଣୀ ରଟେ ଚଳ ଜଘନ
ଆନନରୁ ସ୍ୱେଦ ଗଳ        ମଣ୍ଡନ ହୋଇଛୁ ଧୂଳ
ଅସ୍ତବ୍ୟସ୍ତ ସୁଅଳକା ଘନ ସେ
ଅଙ୍ଗଶୋଭ !
ଅପଲକ ନେତ୍ର ଶୁହୁଁ ହର,
ଅତନୁ ଶରେ ତାପିତ        ଚନ୍ଦ୍ରମା ଅଙ୍କ ଦୂଷିତ
ହେଲେ ହେ ଚକୋର ମନ ହର ସେ ।୮।

ପ୍ରଗଲ୍‌ଭତା—

ଆଲୋକ କୃଷ୍ଣ ମୂରତି        କେ କାମେ ହେଲ କରନ୍ତି
ଆନ ରମା କୁଚ ଧର କରେ
ଆଣ୍ଠରେ କରେ ମର୍ଦ୍ଦନ        ଅଧରେ ପୀଡ଼ି ରଦନ
ମୁଖ ମଣ୍ଡେ ଚୁମ୍ବନ ନକରେ ସେ
ଅଙ୍ଗଶୋଭ !
ଅଟ୍ଟହାସ କର୍ଣ୍ଣେ ପ୍ରକାଶ,
ଆଶ୍ଳେଷ ଦେଉଣ ଶ୍ଳେଷେ        କହେ ଦହେ ସ୍ୱକଣ୍ଠ ସେ
ଶୁଚି ରସ ଶୁଚିର ସଂକାଶ ସେ ।୯।

ଔଦାର୍ଯ୍ୟ—

ଅଧୀର କେ ଧୀର ଗତି        ମଦନେ ଦ୍ୱୈଅନ୍ତ ଅତି
ଆନ ବେଶେ କରନ୍ତେ ଭଜନା
ଅରୁଣ ନ କଲ ନେତ୍ର        ଧର ଲୀଳା ଶତପତ୍ର
ନ ପ୍ରହାର ବନସ୍ତ ସର୍ଜନା ସେ
ଅଙ୍ଗଶୋଭ !
ଅଳକା ସେ ଅଶୋଭ ତାହାର,
ଆପଣା ନଖରେ ମାଙ୍ଗ-        ଭଙ୍ଗକୁ ସାମଳ ବେଗ
କହ୍ଲାକ ମଧୁର ବ୍ୟାହାର ସେ ।୧୦।

ଧୈର୍ଯ୍ୟ—

ଅଭିନବାଙ୍ଗନା ଅଙ୍ଗ ଅନଙ୍ଗ ନାୟକ ସଙ୍ଗ
ଶରବ୍ୟରେ ଶୂନ୍ୟ ଉପାସଙ୍ଗ
ଅସମ୍ଭାଳ ହୋଇ ବାଳ ଉଜ୍ଜ୍ୱଳ ପଥେ ସମ୍ଭାଳ
ଅପ୍ରକଟ ବିକାର ପ୍ରସଙ୍ଗ ସେ
ଅଙ୍ଗଶୋଭି !
ଅନଳ ଦହନ୍ତେ ତା ସହ୍ୱଳ,
ଅଶନ ପତନ ବନ ପ୍ରିୟ କୋଳେ ନୋହି ଛନ,
କୃଷ୍ଣ ଚନ୍ଦ୍ର ନିବାସେ ଉଜ୍ଜ୍ୱଳ ସେ ॥୧୧॥

ଶ୍ଳୋକଃ—

ଲୀଳାବନ୍ତାସୋବଞ୍ଚିତ୍ରିବ ଭ୍ରମଃ କଳକଂଚିତମ୍
ମୋଟ୍ଟାୟିତଂ କୁଟ୍ଟମିତଂ ବିବ୍ବୋକୋ ଲଳିତଂ ତଥା
ବିହୃତ ଚେତି ବିଜ୍ଞେୟ୍ୟୋ ଦଶସ୍ତ୍ରୀଣାଂ ସ୍ୱଭାବଜାଃ ।
(ଇତି ନାଟ୍ୟଲୋଚନେ)

ଲୀଳା—

ଆକାଙ୍କ୍ଷା ନାୟକ ବେଶେ ପ୍ରବେଣୀ ଭଙ୍ଗି ବିଭବେ
ଚୂଡ଼ା ରଚି ମୟୂର ପିଞ୍ଛରେ
ଅଙ୍ଗେ କସ୍ତୁରୀ ମଞ୍ଜୁଳ ଚାଟଙ୍କ କାଢ଼ି କୁଣ୍ଡଳ
ଉର ଶୋଭନ ଗୁଞ୍ଜା ଗୁଚ୍ଛରେ ସେ
ଅଙ୍ଗଶୋଭି !
ଅମ୍ବର ପିନ୍ଧି କୃଷ୍ଣ ସଦୃଶ୍ୟ,
ଆଦରଣ ବଦନେ ବମ୍ବ ହିଦ ବାସେ ଦେଉ ଚୁମ୍ବ
କୃଷ୍ଣ ଦେଖି ସଂକୋଚିତ ଦୃଶ୍ୟ ସେ ।୧୨।

ବିଳାସ—

ଅଧରେ କାଳିକା କାନ୍ତ     ଦେଖି ନବ ଗଜସ୍ଥ ଦାନ୍ତ
କରିବାରେ କଲି ଅଭିଳାଷ
ଆଦିତ୍ୟ ଦେଖି ସାରସ     ଯଥା ସୁବାସ ବ୍ୟାକୋଷ
ତଥା ଆସ୍ୟ ପ୍ରସନ୍ନ ଉଲ୍ଲାସ ଯେ
ଅଙ୍ଗଶୋଭା !
ଅପାଙ୍ଗ ସୀମା ଲଂଘେ ଈକ୍ଷଣ,
ଅପଘନ ସ-ପୁଲକ     ହରଷେ ଗ୍ରୀମା ଭଳକ
ହୃଦେ ଦେଲା ଆସନ ସେକ୍ଷଣି ଯେ ।୧୩।

ବିଚ୍ଛିତ୍ତି—

ଆଗତ କଉଁ ସୁନ୍ଦରୀ     ସାଜନ୍ତି ମାତ୍ର କବରୀ
ସିନ୍ଦୂର ବିନ୍ଦୁ ଯେ କପୋଳରେ ସେ
ଅଞ୍ଜନ ରଞ୍ଜନ ନେତ୍ର     ରଜନୀ ଉଜ୍ଜ୍ୱଳ ଗାତ୍ର
ଓଷ୍ଠ ରଙ୍ଗ କରି ତାମ୍ବୂଳରେ ସେ
ଅଙ୍ଗଶୋଭା !
ଅଚ୍ଛ ପିନ୍ଧି ସୂକ୍ଷ୍ମୀନ ବସନ,
ଅଳ୍ପ ଆକଳ୍ପରେ ହର     ମଣ୍ଡକ ହରିଲା ହର
କଳା ତୋଷେ ଚକୋରେ ଯେସନ ସେ ।୧୪।

ବିଭ୍ରମ —

ଅଚ୍ୟୁତ ବନାଗମନେ     ଲୁମାଣି ଯେ ତୋଷ ମନେ
ଧାଇଁଲେ ଆଲୋକ ଉତ୍ସୁକରେ ସେ
ଆଭରଣ ପୂରେ ରଖି     ବେଶ ହୋଇଲେ କେ ସୁମୁଖୀ
ବିପର୍ଯ୍ୟସ୍ତ ଭୂଷଣକୁ କଟିରେ ସେ
ଅଙ୍ଗଶୋଭା !
ଅନୁରାଗ ହର୍ଷ ସଂଭ୍ରମରେ,
ଅଳକ୍ତ କଲି ଅଞ୍ଜନ     ଅଞ୍ଜନ ଘଲେ ରଞ୍ଜନ
ପାଦ ମଣ୍ଡେ ହାର ଉତ୍ତମରେ ସେ ।୧୫।

କିଳକିଂଚିତ—

ଅନୁରାଗ କୃଷ୍ଣ ସଙ୍ଗେ        କେ କୁମାରୀ କରୁ ରଙ୍ଗେ
ଜଣାନ୍ତ ନଷେଧେ ଗ୍ରହଣରେ
ଅଶ୍ରୁ ମ୍ଳାନରେ ରୋଦିତ        ମୁଖେ ବାସ ଆଚ୍ଛାଦିତ
ହସେ ଚିନ୍ତି ତା କଥା ମନରେ ସେ
ଅଙ୍ଗଶୋଭ !
ଅମର୍ଷ ହୃଦରେ ବଢ଼ିତ,
ଆତଙ୍କିତ ହାସ ପୁନ        ଦେଖିବ ପର କେ ଆନ
କୃଷ୍ଣଙ୍କୁ ଦେଖି ହୋଏ ମୋହିତ ସେ ।୧୬।।

ମୋଟ୍ଟାୟିତ—

ଅଚ୍ୟୁତର କର୍ମଗୁଣ        କେ ରମା କର ଶ୍ରବଣ
ପ୍ରେମ ଚିତ୍ତେ ସେ ଭାବ ଭାବନା
ଅଭିକ୍ଷଣ ବିଜୃମ୍ଭିତ        ତନୁ ପୁଲକେ ପୂରିତ
କରେ ମନୋଭବ ସମ୍ଭାବନା ସେ
ଅଙ୍ଗଶୋଭ !
ଆରମ୍ଭେ କର୍ଣ୍ଣ କଣ୍ଡୂ ଉଦ୍ଗତ,
ପ୍ରବଚନ ସେ ସମୟେ        ଜଡ଼ ଆଶ୍ରିତ ପର୍ଯ୍ୟୟେ
କାମ ଚେଷ୍ଟା ନୁହଇ ବାରିତ ସେ ।୧୭।

କୁଟ୍ଟମିତ—

ଅବଳା ପଲ୍ଲବ ଶେଯେ        ସ୍ୱପ୍ନ କଳ୍ପ କେ କୁଞ୍ଜେ
ଆନ ଦେଖି ମଦନେ ପ୍ରମତ୍ତ
ଅଚ୍ୟୁତ ସ୍ୱୈପର ତତ୍ତ        ଆଚରିବେ କର ରତି
ଚିନ୍ତ କଳ ପ୍ରବୃତ୍ତର ମତ ସେ
ଅଙ୍ଗଶୋଭ !
ଅଧର ଦଂଶିଲ ବଦନରେ,
ଆପୀଡ଼ିତ କଲେ କୁଚ        ଆଉ କରେ ଧରି କଚ
ସସଂଭ୍ରମ ହସ ମନରେ ସେ ।। ୧୮ ।

ବିବ୍ବୋକ—

ଆଳାପ ନବ-ବୟସୀ ପାଶେ କଲ କେ ବୟସୀ
ଗୋବିନ୍ଦ ପ୍ରୀତି ତୋ ଅଭିମତ
ଆତୁର ଯା' ଦରଶନେ ଗୃହୁ କହିଲେ ତ୍ରସନେ
ନ ଗୃହ୍ଣ ନ ହସ୍ତ ଅଙ୍କ ମତରେ
ଅଙ୍ଗଶୋଭି !
ଆଦରେ ଯାଚିଲେ ପୁଷ୍ପହାର,
ଅବଲୋକନ କରୁ କୋପ ନାମକୁ ଖରୁ
ସାର୍ଥକରୁ ସତ୍ୟ ସ୍ୱେ ବ୍ୟାହାର'ରେ ।୧୯।

ଲଳିତ—

ଆସେ କେ ଗୋପ କୁମାରୀ ସୁକୋମଳା ସୁକୁମାରୀ
ମାର୍ଗେ ପୁଷ୍ପ ଦଳର ପତନେ
ଅଙ୍ଗ୍ରିର ହଂସକ ଧ୍ୱନ ଯୁବାରେ କରେଣ ଦାମୀ
ଭ୍ରୂ-ସ୍ଥଳପଦ୍ମେ ପୂଜେ ଯତନେ ସେ
ଅଙ୍ଗଶୋଭି !
ଅଳ ପଦ୍ମେ ସୁବାସରୁ ଧାମେ,
ଅଙ୍ଗଭଙ୍ଗୀରେ ନବାଦରେ ରଞ୍ଜିତ ବଳୟ କରେ
ନାଚେ ଭୂରୁ ମୁଖ ସୁଧା ଧାମେ ସେ ।୨୦।।

ବିହୃତ—

ଅବଳାକୁ ବରହରେ ହରି କହେ ବରହରେ
ଅଙ୍ଗ ତୋ ଶିରିଷ ସୁକୁମାର
ଅତି ପୀଡ଼ା ବିଭବରି ସହୁଛୁ ମତେ ନ ବରି
ନିରନ୍ତରେ ଶର ମାରେ ମାର ସେ
ଅଙ୍ଗଶୋଭି !
ଅଧୋମୁଖେ ନୟନ ଢେଳାଇ,
ଆଘ୍ରାଣ ନଳା କମଳ କରନ୍ତେ ଶୁଖିଲା ଦଳ
ଗନ୍ଧ ପୂରର ପକାଇ ପକାଇ ସେ ।।୨୧।

ଶ୍ଳୋକଃ—

ମଦଶ୍ଚ ତପନଂ ମୌଗ୍ଧ୍ୟଂ ବାଂଷ୍ପଶ୍ଚ କୁତୂହଳମ୍ ।
ହସିତଂ ଚକିତଂ କେଳି ଋଷ୍ଟ୍ରୋପ୍ତାଣାମନୁହ୍ଦବକାଃ ॥

ମଦ—

ଅଙ୍କୁରିତ ଯଉବନୀ    ଦନେ ସଂପୁଟକ ଯେନ
କୁଚ ଭୁଲେ ଭୁଲେ ବଜନରେ
ଅସମ ଜାଣି ଲଳନା    ପାଞ୍ଚେ ପ୍ରେ ମେରୁ ତୁଳନା
ମୁଁ ବଢ଼ିଛୁ ବକ୍ଷେ ଯତନରେ ସେ
ଅଙ୍ଗଶୋଭି !
ଆଲମ୍ବନ ସ୍ତନାକୁ ଅନାଇଁ,
ଅନଙ୍ଗ ସୌଭାଗ୍ୟ ମଦ    ଅତ ଯୌବନ ସମ୍ପଦ
ଲଭି ହାସେ ଭୃଙ୍ଗରେ ଯେନାଇଁ ସେ ॥୧୨॥

ତପନ—

ଅଚ୍ୟୁତ ବନ ଗମନେ    ବଚ୍ଛେଦ ତାପିତ ମନେ
ଲୋଟଇ ପଲ୍ଲବ ଶଯ୍ୟନରେ
ଅନଳ ତାପକୁ ପାଇ    ପୁନ ଉଠଇ ବସଇ
ଅଙ୍ଗ ଲେପେ ଚନ୍ଦ୍ର ଚନ୍ଦନରେ ସେ
ଅଙ୍ଗଶୋଭି !
ଅଧିକରେ ଦହେ ସେ ଲେପନ,
ଅମୃତାଂଶୁ ପୁନ ରାହେ    ତପଭାନୁ ହେଲା ଗାହେ
ଇଚ୍ଛା ନଦ୍ରା ଦେଖିବ ସ୍ୱପନ ସେ ॥୧୩॥

ମୌଗ୍ଧ୍ୟ—

ଆଳକ କେ ବମ୍ଭାଧସ୍ତ କହଇ ପଦକ ଧରି
ରତି ନାୟକ ବୋଲି କାହାରେ
ଅଛୁ ଶୁଣି ଭୁଲେ ରତି ନାୟକ ରମ୍ଭେ ବୋଲନ୍ତି
ସ୍ୱେ ସଂଶୟ ଛେଦ ଭୁ ବ୍ୟାହାରେ ସେ
ଅଙ୍ଗଶୋଭି !
ଆଳି ବୋଲେ ନଧ୍ୱନେ ରତି,
ଅଟେ ନାୟକ ଦୟିତ ରତି ନାୟକ ବଖ୍ୟାତ
ମଦନ ଯେ ହୃଦୟ କରନ୍ତି ସେ ॥ ୨୦ ॥

ବକ୍ଷେପ—

ଅତର୍କିତେ କୃଷ୍ଣ ଆସି ପ୍ରବେଶ ପ ଣେ ସୁକେଶୀ
ବସିଥିଲା ବେଣୀ ରଚନରେ
ଅଞ୍ଜନ ଲଞ୍ଜି ହସ୍ତେନେ ରଞ୍ଜିଲା କଞ୍ଜ ନୟନେ
ଭାଲ ଅର୍ଦ୍ଧ ଚନ୍ଦ୍ର ଶୋଭନରେ ସେ
ଅଙ୍ଗଶୋଭି !
ଅଧେ ପୁଷ୍ପହାର ସୁବେଣୀରେ,
ଅତି ସସଂଭ୍ରମେ ଉଠି ବସ୍ତ୍ରୀରେ ପଲ୍ଲବୋଷ୍ଠୀ
ବୋଧ କଲା ରହସ୍ୟ ବାଣୀରେ ସେ ॥୨୧॥

କୁତୂହଳ—

ଅଙ୍ଗନା ଅଙ୍ଗ ଲେପନ କୁଙ୍କୁମ ଉପଲେପନ
ହଉଥିଲା ବସି ଭଦ୍ରାସନେ
ଅହ ଶେଷରେ ଗୋବନ୍ଦ ଘେନ ଗାବ ସଖାବୃନ୍ଦ
ଆସନ୍ତେ ଚଞ୍ଚଳ ବଂଶୀ ସ୍ୱନେ ସେ
ଅଙ୍ଗଶୋଭି !
ଆସେ ମଞ୍ଜୁ ଚରଣ ଅଙ୍କରେ,
ଉମ୍ମୁକ୍ତ ରୂପସୀ ପଡନ ପରି ରେ ମାର୍ଗ
ମଣ୍ଡେ ମୁଖ ଘଷି ଘଷି କରେ ସେ ॥୨୨॥

ହସିତ—

ଅଭିନବ ପୁଷ୍ପବନ୍ତ ଦେବା ଛଳରେ ସୁବନ୍ତ
ପୁଷ୍ପ ବାଣ ଦେଲା କାମ କରେ
ଅଙ୍ଗଦେଶେ ଅଧିକାର ଦେଲ କର ଅଙ୍ଗୀକାର
କଣ କହୁ ଅଜସ୍ର ଶଙ୍କରେ ସେ
ଅଙ୍ଗଶୋଭି !
ଆରୋହିଲା ଉଭଜ ଅମାତ୍ର,
ଅନ୍ତେ କାମ ବଢ଼ ପଣ ଚନ୍ଦ୍ର ହସଇ ଆପଣ
ଚରଣକୁ ଚନ୍ଦ୍ରହାସ ମାର ସେ । ୨୭ ।।

ଚକିତ—

ଅଟବୀରେ ପୁଷ୍ପ ତୋଳ ଭ୍ରମୁଥିଲେ ନବ ବାଳୀ
କୃଷ୍ଣ ରହୁ ଦେଖନ୍ତି ଚରମେ
ଆନ କେ ବୋଲେ ନାଗର ଶୋଭ ତୋ ପୁଷ୍ପଭାରର
ଶୁଣି ଚମକିଲା ସଭ୍ରମେ ସେ
ଅଙ୍ଗଶୋଭି !
ଆଳରେ ଆଲିଙ୍ଗକୁ କରେ,
ଅଭିମଣି ସୁବେଣୀରେ ସିଞ୍ଚାଡ଼ ଦସ୍ତେ ପାଣିରେ
ଅବଲୋକେ ଚଞ୍ଚଳ ଦୃକରେ ସେ ।୨୮।

କେଳି—

ଅଟବୀରେ ଅଟନ କେ କରୁ ଚରଣ କଣ୍ଟକେ
ବ୍ୟଥା ଲଭ୍ ଦେଖାଇ ଆଳକ
ଅଚ୍ୟୁତ ପ୍ରେକାଳେ ଭଣି ମୁଁ କାଢ଼ି ଦେବ ସୁକେଶୀ
ବୋଲୁ ଚନ୍ତେ ଦୟିତ କେଳକ ସେ
ଅଙ୍ଗଶୋଭି !
ଅଙ୍କାସନ କର ବଲ୍ଲଭର,
ଆଉଜ ବକ୍ଷ ସୁଦନ୍ତି ପ୍ରିୟତମ ପାଦ ଧର
କାଢ଼ିବାର ହୋଇ ହେନ୍ଦକର ସେ ।।୨୯।।

ଅତ୍ୟନ୍ତ ମୁଗ୍ଧା କନ୍ୟକା ଗୋବିନ୍ଦ ଦେଖିଲେ ଯେବେ କା
ସଲଜ୍ଜେ ନ ଚାହାନ୍ତି ସମ୍ମୁଖରେ
ଅଧୋମୁଖେ ରହି ବାଣୀ ନ କହନ୍ତି ଚାହିଁ ଶୁଣି
ଇଷଦ୍ଧାସ ଜାତ କରି ଖରେ ସେ
ଅନ୍ତହାସେ !
ଆଲୋକନ୍ତି ରହି ପ୍ରଚ୍ଛନ୍ନରେ,
ଅନ୍ୟେ ହୋଇ ଦତ୍ତ ଅକ୍ଷି ଗୁଣ କର୍ମକୁ ସୁମୁଖୀ
ସାଦରେ ଶୁଣନ୍ତି କଥନରେ ସେ ॥୩୦॥

ଅବଳା ସକଳେ ମିଳି ବନେ ଧୂଳି ଗୃହ ଖେଳି
ଦୈବ ସମୟେ ମିଳିଲେ ନାରଦ
ଅଚ୍ୟୁତ ଗୁଣ ମହତ ବୀଣା ନିଗମେ ବଦନ୍ତି
ଦେଖି ବାଳୀ ପାଞ୍ଚିଲେ ବରଦ ସେ
ଅବିଳମ୍ବେ !
ଆରୋହାଇ ଧୂଳି ଆସନରେ,
ଅର୍ଘ୍ୟ ଆଦି ଷଡ଼ଧୂଳି ଅଭିଥି ଗୌରବରେ ବାଳୀ
ତୋଷ କଲେ ଧୂଳି ଅଶନରେ ସେ ॥୩୧॥

ଅତି ଆନନ୍ଦେ ବିରଜ ରଜ ଭୁଞ୍ଜି ତପୀରାଜ
ମନୋରଥ ସିଦ୍ଧି ରସ୍ତୁ ବଦ
ଅପରାଧ ହେଲା ସତ୍ୟ ଧୂଳି ଭୁଞ୍ଜିଲ ପ୍ରସକ୍ତା
ଗୃହେ ଦେଲୁଁ ବୋଲି ପାଦ ବନ୍ଦ ସେ
ଅଙ୍ଗଶୋଭ !
ଆଗ୍ରେ ଦେଖି କହେ ତପୀବର,
ଆଶିଷ୍ୟ ହୋଇ ବଶ୍ୟ ବଶରେ ହୋଇଲୁଁ ବଶ
କୃଷ୍ଣ ବର ହେବେ ଯେଣୁ ବର ସେ ॥ ୩୨ ॥

ଅଭିବାଞ୍ଛିତକୁ ଶୁଣି    ମୁଦେ ବୋଲନ୍ତି ତରୁଣୀ
ଅନୃତ ଆମ୍ଭର ସମ୍ଭାବନା
ଅସମ୍ଭାବିତ ବଚନ    ଭେଟିବ କି ବର୍ତ୍ତମାନ
ଇଷ୍ଟି ବୋଲେ ଚେତ ସ୍ୱେ ଭାବନା ଗୋ
ଅଙ୍ଗଶୋଭ !
ଆମ୍ଭେ ଖେଳ ଯାଉଛୁ ଖେଳାଇ,
ଅଟେ ନାମ ଶକଟାଦା    ଖେଳନ୍ତେ ଭେଟିବ ନାଦା
ସତ୍ୟା ବୁଝ ନ ପିବ ପକାଇ ଗୋ ॥୩୩॥

ଆପଣେ ସେ ପାଲ୍ଲି ସାରି    ଦେଇ ଖେଳର ବେହାର
କଣ୍ଠ ସବ ହୋଇଲେ ଅନ୍ତର
ଆରମ୍ଭିବା ବେଳେ ଖେଳ    ଆସି ମଦନ ଗୋପାଳ
ଲୁଚି ଦେଖି ମଦନେ କାତର ସେ
ଅଧୋକ୍ଷଜ !
ଅବଲୋକ ମଧୁମଙ୍ଗଳକୁ,
ଅଙ୍ଗନା ବ୍ରୀଡ଼ା ଚଢ଼ାଇ    ତୁମ୍ଭେ ସେ ପାଇ ଖେଳାଇଁ
ଯାଇ ବେଗେ ଦଣ୍ଡ ମଙ୍ଗଳକୁ ସେ ॥୩୪॥

ଆସେ କାସ ଶ୍ୱାସ ତଜ    ଅଦୃଶ୍ୟ ପରି ସେ ଦ୍ୱିଜ
ନେଇ ଅଗ୍ରେ ଦସ୍ତେ ଅଙ୍ଗୁଳିକ
ଅଧୋକ୍ଷଜ ନାମେ ଡାକ    ଚରଣ ଖଞ୍ଜେ ବିଲୋକ
ଖେଳ ଯେନ ବୋଲଇ ବାଳୀଙ୍କି ସେ
ଅଙ୍ଗଶୋଭ !
ଆଶ୍ଚର୍ଯ୍ୟ ଶୁଣି ସକଳେ ହସି,
ଅଗ୍ରଜ କୃଷ୍ଣ ସ୍ୱେ ସାର    ବେନି ଚନ୍ଦ୍ର ଅଳଙ୍କାର
ପାରି କୁଞ୍ଜେ ଖେଳୁଛ ରହସି ଗୋ ॥୩୫॥

ଆମ୍ଭେ ହେଲୁଁ ପୁଣ୍ୟବ୍ରତ          କରିବୁଁ ଯେ ଉବ ବ୍ରତ
କୃଷ୍ଣଙ୍କୁ ବରାଇବ ଖେଳରେ
ଆମ୍ଭ ଉରେ ରଖି ଆଣି          ଗଜମୋତି ମାଳ ଜଣି
ମଣ୍ଡାଇବ ଉରଜ ସ୍ଥଳରେ ସେ
ଅଧୋକ୍ଷଜ !
ଆସି ପରବେଶ ହେଲେ କାଳରେ,
ଅଧୋମୁଖେ ରହି ହସି          ଲଭି ଅବ କୁଚଣାଦଶି
ନାରିକେଳ ଲକ୍ଷ ଚଉଳରେ ସେ ।। ୩୬ ।।

ଆଲୋକ ବାମତା ଦ୍ୱିଜ          ବୋଲେ ନ ଚେଜନ୍ତୁ ଲଜ
ଜଳରେ ରହିବ ପୂରତରେ
ଅଙ୍ଗନା ଶୁଣି ତରସ୍ତ          ଖେଳଲେ ସେ ବଂଶୀହସ୍ତ
ବଧିକ ବଧି ଚନ୍ଦ୍ର ଚତ୍ତ୍ୱରେ ସେ
ଆଦ୍ୟ ଖେଳେ !
ଅବଳା ହାରନ୍ତେ ମେ,ତି ହାର,
ଅଧୋକ୍ଷଜ ଉରେ ମଣ୍ଡେ          ବୋଲଇ ପ୍ରେଥର ହୋଇଁ
ପାଲଟା ବାସ ବହି ବାହାର ସେ ।।୩୭।।

ଆରମ୍ଭନ୍ତେ ଖେଳ ପୁନ          ହାରିଲେ ନନ୍ଦ ନନ୍ଦନ
ବନ୍ଧୁ ହସ୍ତ କନ୍ୟା ଜଣିମାରେ
ଆସି ପ୍ରେକାଳେ ଜରତ          ଚମ ତା କନ୍ଧୁ ଭାରତି
ଗ୍ରାସ କଲା ମୁଖ ଚନ୍ଦ୍ରମାରେ ସେ
ଅଭ୍ର ପଥ !
ଅନଳରେ ଭ୍ରମେ ସବୁ ଜଣ
ଅଙ୍ଗନା ଗମିଲେ ଜବ          ଶ୍ରୀ ଶ୍ୟାମସୁନ୍ଦର ଦେବ
ବଳ କେବଳ ଶ୍ରୀ ଜଗନ୍ନାଥ ସେ । ୩୮ ।



— ଚତୁର୍ଥ କୁସୁମ —

॥ ଦ୍ୱିତୀୟ ଛାନ୍ଦ ॥

# ହିମନ୍ତ ଋତୁ-କୁମାରୀ ବରଲାଭ

॥ ରାଗ – ବସନ୍ତ ॥*

( ଆଷାଢ଼ ଶୁକ୍ଳ ବାଣୀରେ )

— ଗୀତ —

ଆଗତ ହୋଇଲା ହିମନ୍ତ ଋତୁ
ଆରମ୍ଭେ ବଶ୍ୱକେତୁ ଜପ୍ୟ ହେତୁ
ଅନଳଂ ସ୍ଥାପିତ ହୃଦ କୁଣ୍ଡରେ
ଅଧିକେ ଜନମ ଧୂମ ତୁଣ୍ଡରେ
ଆଜ୍ୟ ହିମକଣ,
ଆହୁତି ତରୁଣ ପଣ୍ଣୁ ପ୍ରୋଷଣ ।୧।

ଅନିଳ ଉତ୍ତରୁ ଆସି ସହାୟ
ଅଗ୍ନି ବୃଦ୍ଧି ଦେହେ ସମିଧ କାୟ
ଅନଙ୍ଗ ନର୍ଦ୍ଧ ସ୍ପୃପଣ ଆଲୋକେ
ଅପଘନେ କର୍ମ ବନ୍ଧିଲେ ଲୋକେ
ଆମୋଦ ସେବନ୍ତି,
ଅଳି ଚୁମ୍ବିଲେ ଦେଖି ରସବନ୍ତୀ ।୨।

---

* ରାଗଲକ୍ଷଣମ୍ ଶ୍ଲୋକଃ—
ବନୋଦଯ୍ୟତ ପୁନଃରବ ଗୌଷ୍ଠ ସୁକଙ୍କଣା ଶ୍ୟାମରଶ୍ମିଲନେନ ।
କର୍ଣ୍ଣେ ଦଧାନା ସୁରପୁଷ୍ପଗୁଚ୍ଛଂ ବସନ୍ତନେଯଂ କଥିତା ବସନ୍ତ ॥ ୧ ॥
(ଇତି ବୃହତ୍ସଙ୍ଗୀତକୌମୁଦ୍ୟାଂ) ॥ ପୋଥିପାଠ ॥

୧ । (କ) ଅନଳ

ଅତନୁ ତ ସାର ବ୍ରତେ ଦୀକ୍ଷିତ
ଅଗ୍ନିହୋତ୍ର କୃପ କୁଣ୍ଡେ ରକ୍ଷିତ
ଅନୃତ ନୋହେ ଯେବ ଧୂମ ଉତ୍ତମ
ଅନ୍ଧ ମୁଖେ ହୋଇଥାଇ ଜନମ
ଅନ୍ତ ପ୍ରଭା ବଳ,
ଅପସରିଲେ ସ୍ୱମନ ଆବଳ ।।୩।।

ଅପହୃତ ହେଲା ଧନ ରକ୍ଷଣ
ଆନ କେ ନୋହିଲେ ଧାନ ରକ୍ଷଣ
ଅମ୍ବର ବହ୍ନାନ ମାତନ ବଧିରେ
ଆତର ବଞ୍ଚିଲେ ମାନ ବଧିରେ
ଆହେ ଚଣ୍ଡଭାନୁ,
ଆଶ୍ରିତ ସହେ ତଥା ଚଣ୍ଡଭାନୁ ।। ୪ ।

ଅଭୂତ କ ଯେବ ହେବାର ଯେପର
ଅର୍କ କମଳା ନନ୍ଦକାଶ ହର .
ଆପଣ ରଜନେ କ୍ଷୀଣ ବାସରେ
ଅନଙ୍ଗ ଧଣ ସେବଲେ ବାସରେ
ଅହିଷ୍ଣୁ ତେଜ,
ଅଟେ ଯେ ଜ୍ୟୋତିର୍ମୟ ଗ୍ରହରାଜ ।। ୫ ।।

ଅଳ୍ପ ଲୋକର ଉଦୟେ ନଷ୍ଟୟ
ଅଧିକେ ଧାତ୍ରିମୟ ମାଟମୟ
ଆତଙ୍କେ ତେଜହୀନ ମହତର
ଅଶିଷ୍ଟ ବାର ତଥା ରୁଚତର
ଅର୍କ ତେଜହୀନ,
ଅହରସେ ଅହରଷେ ପ୍ରକ୍ଷିନ । ୬ ।।

ଅଙ୍ଗ ଅଧିକାର ହେଲେ ସମୃଦ୍ଧି
ଅବଶ୍ୟ ଦୁଷ୍ଟଲୋକ ମଦ ବୃଦ୍ଧି

ଅତି ବୃଦ୍ଧି ତମ ନିଶି ସମ୍ପଦ
ଆଚରନ୍ତି ନିଶାଚର ମୂଢ଼
ଅଦୃଶ୍ୟ ଉତ୍ତମ,
ଅପସରି ଗଲେ ସଜ୍ଜନ ସମ ॥ ୭ ॥

ଆଲୋକନ୍ତି ଯେବେ ସାଧୁ ବିପଦ
ଅତି କୋବିଦ ବିସ୍ମୃତ ଆସ୍ପଦ
ଅତିର ବିଲୋକ କ୍ଷୀଣ ସମ୍ପଦ
ଆକୁଳେ ଚକ୍ର ଚକ୍ରବାକୀ ଖେଦ
ଅସାଧୁ ହସନ୍ତି,
ଅବଲୋକି ପ୍ରତି ସ୍ୱରେ ହସନ୍ତି ॥୮॥

ଅତି କ୍ଷୀଣ ଦିନେ କଥା ଅଦ୍ଭୁତ
ଆଦି ଫଳେ କମଳା ସମ୍ଭୂତ
ଅଧିକ ଉତ୍ପଦ ସିତ ଶମ୍ବର
ଅର୍ଥ ହୋଇଲା ନରଙ୍କୁ ଶମ୍ବର
ଅରି ମିତ୍ର ସମ,
ଅମ୍ବୁ ଶୋଷଣ ହେଲା ଗାତ୍ର ସମ ।୯।

ଆଗାରେ ବାତ ଚନ୍ଦନ ବଧୁରେ
ଅନାଦରେ ବହ୍ନି ଚନ୍ଦ୍ର ବଧୁରେ
ଆକାଂକ୍ଷା ସୁଖ ଭବ ମନ୍ଦାଷାରେ[1]
ଅଙ୍ଗ ଆଚ୍ଛାଦ ସୁଷମ ନିଶାରେ
ଅଗନ କରନ୍ତି,
ଆଖ୍ୟାତ ମଧୁରେ ଯେଣୁ କରନ୍ତି ॥୧୦॥
ଅନଙ୍ଗ ଭ୍ରମ ଆଶୁଚ୍ଛନ୍ତି ଧରି
ଆଧୂତ ଅଙ୍ଗେ ପଦ୍ମବାସୀ ଧରି

---

୧ । 'କ' ପୋଥିରେ ଏ ଧାଡ଼ିଟି ନାହିଁ ।

ଅରଣ ଭୂଷଣ କୃଶ ଜଦସ୍ତ
ଅତ ଉତ୍ତୁଙ୍ଗ କୁଚ ଗିର ବର
ଆଶ୍ଳିଷ୍ଟ୍ୟ କଣୋସ୍ତ,
ଅଚରେ ଦେଲେ ସେ ଭସ୍ମ ପାଶୋର ॥୧୧॥

ଅମରେ ଅସ୍ତ୍ର ଭସ୍ମରେ ଯଥା
ଆଶ୍ରୟ ମେରୁ ଗୁହାକୁ ସ୍ୱେ ତଥା
ଆଶ୍ଳେଷ କ୍ଷୀର ମାର ମାତ ସାର
ଅଙ୍ଗ ହେମାଙ୍ଗୀର ଜର ନସାର
ଆଲେପ ନଶାରେ,
ଅବସ୍ଥବ ପର ରଜମା ସାରେ ॥୧୨॥

ଅଗୁରୁ ଧୂମ ଧୂପିତ ସ୍ୱରଭ
ଅନେକ ଔଧ ସୁରତ ଆରମ୍ଭ
ଅଙ୍ଗନା କଣ୍ଠ ଶବଦକୁ ଶୁଣି
ଅହେ ଶିଖୀ ଡାକେ କପୋତଶ୍ରେଣୀ
ଅଧିକଜା ନଶି,
ଆଦରେ ନାସ ପୁଂସ ପରଶଂସି ॥୧୩॥

ଅଟେ ସ୍ୱେକାଙ୍କ ଯେ ପୁଂସ କାମିନୀ
ଅଙ୍ଗ ଦହେ ହିମାନଳ ଯାମିନୀ
ଅକ୍ଷି କମଳ ନ କର ମୁଦ୍ରିତ
ଅଶ୍ରୁ ଧାରେ କର ବକ୍ଷ ପୂରିତ
ଆସି ଗତ ପ୍ରୀତି
ଅନ୍ତ ନୋହିବାରୁଁ ଅନ୍ତ କରନ୍ତି ॥୧୪॥

ଆଗ୍ରହ କୁମାରଙ୍କି ସ୍ୱେତୁ କାଳ
ଅଚ୍ୟୁତ ସଙ୍ଗ ବନା ହେଲ କାଳ
ଅନଙ୍ଗେ ଚାପିତ ହୋଇ ସକଳେ
ଆହୂତ ଉତ୍ତର ବାତ ଅନଳେ

ଅଛନ ଅଟେଷା,
ଅନ୍ତେ ଯେତେ ସୁଖ କହୁ ନ ଶ୍ରବ ।୧୫।

ଆସି ଦରଶନ ଦେଲେ ନାରଦ
ଅବଳା ବୋଲନ୍ତି ଆହେ ବରଦ
ଅଶନ ଦୃଢ ପକ୍ୱ ନବହରେ
ଆଲୋକ ମାତ୍ରେ କ୍ଷୁଧାକୁ ନ ହରେ
ଅଧିକ ତାପିତ
ଅଲଭ୍ୟ ଦେଖି ହୋଇଲେ ପ୍ରାପତ ।୧୬।।

ଆକାଶେ ଉଦେ ହୋଇ ନବଘନ
ଅବରଷଣେ କମେ ଉପଘନ
ଅଙ୍କୁରିତ ପ୍ରେମବଲ୍ଲୀ ନବୀନା
ଆନ କେ ରକ୍ଷା ଘନରସ ବିନା
ଅଟେ ତପୀବର,
ଆପଣା ସ୍ଥାନ ଆନ ହେଲେ ବର ।୧୭।

ଅମ୍ବୁଭୁଜ ବୋଲେ ଆଦ୍ୟରେ କଷ୍ଟ
ଅନୁଭୂତରେ ଲଭ ଫଳ ଇଷ୍ଟ
ଆଦ ହ୍ୱମନ୍ତ ବ୍ରତ ହବିଷ୍ୟାଶି
ଆକଣ୍ଠ ମଗ୍ନ ଯମୁନାରେ ପଶି
ଆଚର ଅଚରେ,
ଅଦ୍ଭୁମତ ଲଭ ଦେବ ଅଚରେ ।।୧୮।।

ଅନ୍ତର ଶିକ୍ଷା ଦେଇ ତପରୂଷୀ
ଅଙ୍ଗନା ଦ୍ୱାର ଦେଲେ ବ୍ରତରୂଷୀ
ଅବଶେଷ ଯାମେ ଥାଉଁ କ୍ଷଣଦା
ଅର୍କଜା ଘଟରେ ମିଳିଲେ ପ୍ରମଦା
ଆଲୋକ ହରଷ,
ଅଟେ କୃଷ୍ଣ ଘନ ରସ ସରସ ।।୧୯।।

ଅସଂଶୟ ଚନ୍ଦ୍ର କୃଷ୍ଣ ମୂରତି
ଅମ୍ବର ତେଜ ଆଲିଙ୍ଗନେ ରତି
ଆତସ ଶତ ଛୁଟ ମାଣି ଯେ ମଣି
ଆଶ୍ଳେଷ ସୁଖ ଲଭିଲେ ରମଣୀ
ଅଧ୍ୟାନ ପ୍ରେମରେ,
ଅବିରତ ରତ କୃଷ୍ଣ ନାମରେ ।୨୦।।

ଅଧିକ ଶୀତେ କମ୍ପେ କଳେବର
ଅନଙ୍ଗ ବାଧାରୁଁ ଯେ ନୋହେ ବର
ଆଶା ନାହିଁ ବର ଯୋଷା ଜୀବନେ
ଅନନ୍ତେ କି ବାହୁଡ଼ିବେ ଜୀବନେ
ଅର୍କ ଉଦୟରେ,
ଅମ୍ବିକା ପୂଜ ଗତ ନିଳୟରେ ।।୨୧।।

ଆଚରି ସ୍ୱେଚ୍ଛାପରି ତପ ବ୍ରତ
ଅଛିଦ୍ରେ ପୂର୍ଣ୍ଣ ପୂର୍ଣ୍ଣିମା ଆଗତ
ଅସ୍ଥିର ଯେ ତପେ ପୁରୁଷୋତ୍ତମ
ଅଙ୍ଗନା ବରଦାନକୁ ସମ୍ଭ୍ରମ
ଆଗତ ଉଷାରେ,
ଅନମ୍ବର ଦେଖି ବର ଯୋଷାରେ ।୨୨।

ଅମ୍ବର ମଣ୍ଡିଲେ ନିପ ଡାଳରେ
ଆରମ୍ଭି ଗାୟନ ବଂଶୀ କଳରେ
ଅଙ୍ଗନାଙ୍କ ନେତ୍ର ଶ୍ରୁତି ଚଞ୍ଚଳ
ଅନ୍ୱେଷଣା କରେ ଦଶ ସକଳ
ଅର୍ଜୁନ ଯୋନକ,
ଆକଣ୍ଠରେ ନୀଳ ଡାଳି ଘଣ୍ଟିକ ।୨୩।।

ତାପ ହତ ହୋଇଥିଲା କମଳ
ଅଙ୍ଗନାଙ୍କ ମୁଖ ପଦ ବିମଳ

ଅନଳ ଯୋଗରେ ଚଳିଲା ପ୍ରାୟେ
ଆନନ ବର୍ଣ୍ଣ ତଥା ଶୋଭା ପାୟେ
ଆଲୋକିଲେ କୂଳ,
ଉପଦ୍ରୁତ ହୋଇଅଛି ଦୁକୂଳ ।୨୪ ।।

ଅନଳ ବିନା ପ୍ରେ ବୃତ୍ତି କାହାର
ଅଦ୍ଭୁତ ଚନ୍ଦ୍ର ନ ସ୍ଫୁରେ କ୍ୟାହାର
ଅବଲୋକନ କେ କଲା କଦମ୍ବ
ଆମନ୍ତ୍ରଣ ଶୋଭା ବାସ କଦମ୍ବ
ଅନନ୍ତ ଗୋବିନ୍ଦ,
ଅତି ପ୍ରସନ୍ନ ମୁଖ ଅରବିନ୍ଦ ।।୨୫।।

ଅପହୃତ ହେଲା ମୂର୍ଚ୍ଛା ସ୍ୱଭାବ
ଅନାୟତ୍ତେ ଧର ପ୍ରଗଲ୍‌ଭ ଭାବ
ଅଳ୍ପ ବାଣୀ ଶୁଣିମାତ୍ରେ ସାଦର
ଅତି ସ୍ପଷ୍ଟରେ ନ ଶୁଣେ ନାଗର
ଅନେକ ଭାରତୀ,
ଅନାୟାସେ ଶୁଣେ ଅଚ୍ୟୁତ ଶ୍ରୁତି ।୨୬।।

ଆମ୍ରେଶ୍ୱର ଯଥା ଉଚାନ୍ତ କାଳେ
ଅମ୍ବର ଲୁଚଇ କୁତୂକ ବଳେ
ଆପଣେ ପିନ୍ଧାଇବା ଅଭିଳାଷୀ
ଆତୁର ଲଜ୍ଜ୍ୟାରେ ପ୍ରେମ ଲାଳସୀ
ଅତି ଯତନରେ,
ଅମ୍ବର ମାଗେ ମଞ୍ଜୁ ଭାରତୀରେ ।୨୭।।

ଅଳ୍ପେ ସେ ହରଷ ଚିନ୍ତ ପ୍ରକାଶା
ଆକାଙ୍‌କ୍ଷା ଜଣିମାରେ ବାଣୀ ଭାଷା
ଅମୃତ ମଧୁର ଭୁଞ୍ଜ ନମିତ୍ତେ
ଅମ୍ବର ମାଗନ୍ତି ବନସ୍ତୁ ମତେ

ଅରଣ୍ୟ ପ୍ରିୟଙ୍କୁ,
ଆଜ ବନୁ ଦୂର କର ଦେବାକୁ ॥୨୮॥

ଅନୁରୁଦ୍ଧ ନେହ ହୋଇ ପ୍ରସନ୍ନ
ଆମ୍ଭଙ୍କୁ ପ୍ରଦାନ କର ବସନ
ଅବନୀପାଳ ପୁତ୍ର ଗୋପେ ହୋଇ
ଅନ୍ୟାୟ ଆଚରିବା ନ ଯୋଗାଇ
ଆନେ ନୋହୁ ଜଣା,
ଅଧିକେ ହେବ ମହତକୁ ଊଣା ॥୨୯॥

ଅବାଲ୍ୟ କାଳୁଁ ଜଣା ଏଭଦ୍ରାର
ଆମିସାଦ୍ଧ ଯେତେ ହୃତ ହେବାର
ଅଳ୍ପ ତରୁଣ ଅବସ୍ଥାକୁ ପାଇ
ଅଛୁ କୁଳବଣ୍ଟି ମନ ଗେରାଇ
ଅଦୃଷ୍ଟ ଅଶ୍ରୁତ,
ଆଜ ନାଶି ଥିବା ବାସ ବହୁତ ॥୩୦॥

ଆଦ୍ୟରୁଁ କର୍କଟି ଆଢନର ଫଳ
ଅପହୃତ କଶ ହୋସ୍ୟେ ପେଷଳ
ଅଭ୍ୟାସ କର ଭୂମ୍ଭେ ସେହ୍ୱ ମତ
ଅବଳା ବସନେ ବଳାଇ ମତ
ଅଟୁଁ ତବ ଦାସୀ,
ଅମ୍ବର ଢଅ କେ ନ ଦେଖୁ ଆସି ॥୩୧॥

ଆଜ ଲଜରୁଁ ରଖିଲେ ଲଳନା
ଆଜ୍ଞା ଅବଶ୍ୟ କରିବୁଁ ପାଳନା
ଅଚ୍ୟୁତ ବୋଲନ୍ତ ରମଣୀମଣି
ଅଭ୍ୟାଖ୍ୟାନ କର ନ ବୁଟି ମଣି
ଆଣେ ପବମାନ,
ଅଛନ୍ତ ଶାଖୀ ସାକ୍ଷୀ ବର୍ତ୍ତମାନ ॥୩୨॥

ଆଣେ ଯେ ହର ପୃଷ୍ପବର୍ଣ୍ଣ ବାସ
ଆଶ୍ଚର୍ଯ୍ୟ କ ସେ ତା'ଠାରେ ବିଶେଷ
ଆମ୍ଭେ ନ ଧରୁଁ ନିଅ ସେ ଦୁକୂଳ
"ଅନାଶ୍ରନ୍ନ ଶୁଣି କନ୍ୟା ସକଳ
ଆଣିମା ଅମ୍ବର,
ଆନନ୍ଦୁ ଶ୍ରେୟ କୃଷ୍ଣ ଦେଖିବାର ।୩୩।

ଅନଙ୍ଗ ଆଗାରେ ନ'ବଣି କର
ଆଛାଦ ଭୁଜବଲ୍ଲୀ କୁଚ ଧର
ଅଭିଷେକ ହେବ କ ମାର-ରାଜ
ଅନେକ ହେମ କୁମ୍ଭ ନେଇ ଆଜ
ଆପରେ ବୁଡ଼ାଇ,
ଅଣି ମାର ସେ ଆଣନ୍ତି ଛଡ଼ାଇ ।୩୪।

ଅଟକ ପର ବିଷଜ୍ୱାଳା ଉରେ
ଆମଗ୍ନି ଥିଲେ କ କାଳନ୍ଦୀ ନୀରେ
ଅଙ୍ଗନା କ ମନୋରଥ ଆଶାସ୍ମୀ
ଆରମ୍ଭି ଥିଲେ ଶମ୍ଭୁ ଜଳଶାୟୀ
ଅଭିମତ ଲଭ,
ଅଚ୍ୟୁତ ପାଣି ହୋଇବ ସୁଲଭ ।୩୫।

ଅମ୍ବୁକଣ ସୁବେଣୀରୁ ପତନ
ଅଶ୍ରୁ କରଇ ଗରଳ ବମନ
ଅବଧୂତ ତ ପ୍ରଫୁଲ୍ଲ ଚମ୍ପକ
ଅତ ବିନ୍ଦୁ ମକରନ୍ଦ ପ୍ରାସ୍ୱେକ
ଅଙ୍ଗ ତପମାସୁ,
ଅନଙ୍ଗ ଦଣ୍ଡ ମଣ୍ଡାଇ ପମାସୁ ।।୩୬।

ଅଣୁ ଉଦର ବନ୍ଧିଅଛି ଯେତୁ
ଅଷ୍ଟନେତ୍ର ଶତକର୍ମା ପଣରୁ

ଅନୁମାନ ନାଭି ଗର୍ତ୍ତ ପ୍ରେ ଭ୍ରାନ୍ତ
ଅସିତ ରୋମାବଳୀ ସ୍ତମ୍ଭ ପୋତ
ଅଛୁ ସ୍ତନ ଗଣ୍ଡି,
ଅନ୍ୟଥା ହେଲେ କଟି ଯାତ୍ରା ଭଜ ।୩୭।

ଅନେକ ଦାହ ହେମ ସିଂହାସନ
ଅନୃତ ନୋହେ ଶୋଭନ ଜଘନ
ଅଛୁ କଟି ସିଂହ ଉଦ୍ଧେ ବଂକତ
ଆତପତ୍ର କୁଚଦ୍ୱୟ ମୁଦ୍ରିତ
ଅନଙ୍ଗ ନୃପର,
ଅଟେ ଛତ୍ର ସିଂହାସନ ଛୁଟିଏ ।୩୮।।

ଆସନ୍ତେ ସମା ଚରଣ ବିମଳ
ଅବନୀରେ ଫୁଟେ ସ୍ଥଳ କମଳ
ଅଙ୍ଗନା ପ୍ରତ୍ୟଙ୍ଗ ଶୋଭା ଈଦୃଶ
ଅପଲକ କଲ୍ପ କମଳଦୃଶ,
ଅନଙ୍ଗ ନିବାସ,
ଆଲୋକନ ଇଚ୍ଛା ଜଗନ୍ନିବାସ ।୩୯।

ଅଚ୍ୟୁତ ବୋଲନ୍ତି ନବରମଣୀ
ଆଗ ନମସ୍କାର କର ଦ୍ୟୁମଣି
ଅମ୍ବୁଜାରେ ଅରଜିଲ ଅପ୍ରାଧ
ଅମ୍ବର ବିନା ମଜ୍ଜନ ବିରୋଧ,
ଅଧିକରେ ଲାଜ,
ଅନା ଅନ ହେଲେ ସମା ସମାଜ ।୪୦।।

ଆରମ୍ଭ ପ୍ରେକ କରେ ନମସ୍କାର
ଅମ୍ଭୋଜମାରେ କି ପୂଜ ଭାସ୍କର
ଅଚ୍ୟୁତ ବୋଲେ ମନ୍ଦ କୃତ୍ୟ କର
ଅଭ ଅଧିକେ ଅଞ୍ଜଳି ସୁନ୍ଦରୀ

ଅଞ୍ଜଳି କବନ୍ଧ,
ଉଚରେ ଶିରେ ଦେଇ ରବ ବୋଧ ॥୪୧॥

ଅଟେ ରମଣୀ ଶିରୋମଣି ରାଧା
ଅର୍କ ପୂଜନେ ହରେ ମନ ବାଧା
ଅନ୍ତରେ କଟୁ ବଚନ ସୁନ୍ଦର
ଅନାଦୃତରେ ବରଜ କ୍ଷମାଶ
ଅଣି ବେନ କର
ଅଷ୍ଟି ମୁଦ୍ରତେ ମଣ୍ଡି ମସ୍ତକର । ୪୨ ॥

ଅଂଦେହ ଗେହରେ ନେହ ପଥିକ
ଆଲସ୍ୟକୁ କର ମଣିଲୁ ନାକ
ଅଲକ୍ଷ ହେଲେହେଁ ଲକ୍ଷ ବତ୍ସର
ଅଙ୍କୁର ରୋମାଳି ଲେଖା କସ୍ତୁରୀ
ଅଟେ ହେମ ଝୁଲି,
ଅଧିକେ ମର୍କତ ମୀନା ଆବଳି ॥ ୪୩ ॥

ଅଷ୍ଟାପଦ ପଦକରେ ନାୟକ
ଆଖଣ୍ଡଳ ମାଳ ଭତ୍ତ ନାୟକ
ଆଲମ୍ବିତ ଉରେ କଞ୍ଚବ ଘଳି
ଅସିତ ସୂକ୍ଷ୍ମ ଉଦର ରୋମାଳି
ଅଳି ଶିଶୁ ବ୍ରାତ
ଅମ୍ବୁରୁହ ପ୍ରେ କରେ କ ବେଷ୍ଟିତ ।୪୪॥

ଅତନୁ ବବାହ ବେଦୀ ଜଘନ
ଅଙ୍କୁର ତମାଳ ତୋରଣ ଘନ
ଆନନ ପୋତଟୁ ଜଘନ କୂର୍ମ
ଅସିତ ପଙ୍କ ଯୋଗେ ମନୋରମ
ଆସି ଭଗ ରୁକ୍ଷେ,
ଆଦତ୍ତା ସ୍ୱତ କ ରହେ ପ୍ରତ୍ୟକ୍ଷେ ।୪୫॥

ଅଚ୍ଛ ଇନ୍ଦୀବର ହେମ ପାର୍ଶ୍ୱରେ
ଅନଙ୍ଗ ସଙ୍କଳ୍ପ ଜୟ ମନ୍ତ୍ରରେ
ଅନାଙ୍କୁର ଖେଳେ (?) ଅବଲୋକ
ଅଟେ ହେମ ଚଳ ଦଳ ଦଳକ
ଅର୍ଭକ କାଳରେ,
ଅତନୁ କ ମଣ୍ଡିଥିଲା ଭାଲରେ ।୭୬।
ଆଲୋକ ପ୍ରେମନ୍ତ ଶୋଭା ଉଦୟରେ
ଆତୁର କେ ନୋହିବ ବଦୋଦ୍ଧରେ
ଅଟେ ହର ଧୀରୋଦାତ୍ତ ନାୟକ
ଅନାତୁର ବନ୍ଧୁ କାମ ସାୟକ
ଅନ୍ତରେ ବିଷାଦ,
ଆରାଧି ନାହାନ୍ତି ରାଧିକା ପାଦ ।୭୭।
ଅନୁଗ୍ରହ ରାସେଶ୍ୱର ଦେବ
ଆସ୍ମରେ ପ୍ରେମିକା ରାସ ଅସମ୍ଭବ
ଅଭିଜ୍ଞା କାମକଳାରେ ନବୀନା
ଅଟନ୍ତି ମନ୍ତ୍ର ଉପାସନା ହୀନା
ଅଯୋଗ୍ୟ ଚିତ୍ତ କ,
ଆମ୍ଭେ କହିବା ହିତ ଭାରଣକ ।୭୮।,
ଉକ୍ତ ଶୋଭନ ମୂର୍ତ୍ତିକୁ ନ ପାରି
ଅମ୍ବର ବଳମ୍ଭେ ଦିଅନ୍ତି ହରି
ଆତୁର ହୋଇ କେ ଲଜ୍ଜା କାତରେ
ଆନତ ଚାରୁ ପିନ୍ଧେ କଉତରେ
ଉବଗେଛି କୃଷ୍ଣ,
ଅଚ୍ୟୁତ ମୁରଲୀ ବାଦନେ ଦକ୍ଷ ।୭୯।
ଅଟବୀ ଦେବୀ ଆଦେଶରେ ଶୁକ
ଅଯ ହେଲା ବୋଲେ ପୀତ ଅଂଶୁକ
ଅନଙ୍ଗ ସ୍ତୁତି ମଠ ପ୍ରାପ୍ତଷ୍ଠିତ
ଆସ୍ୟ ଦ୍ୱିଜବରେ ଚୁମ୍ବନ ଦତ୍ତ

ଅମ୍ବୁରୁହ ପାଣି,
ଅର୍ଚ୍ଚନ ଉରଜ ପିନାକ-ପାଣି । ୫୦ ।।

ଅବେଷ୍ଟିତ ସ୍ୱମା ଘରଦ ଅଙ୍କ
ଅଷ୍ଟାପଦ ଶକ୍ତି ମର୍କତ ଲଙ୍କ
ଆମ୍ର ଉଲଗ୍ନ ଦେଖା ଦୋଷ ହତ
ଆଜ କହିଲେ ଶୁକ ପ୍ରାୟଶ୍ଚିତ
ଆଚରନ୍ତୁ ଋଷି,
ଆଗତ କାର୍ତ୍ତିକ ପୌର୍ଣ୍ଣମୀ ନିଶି ।୫୧।।

ଅଟେସୀ ଦେବୀ ନାଦମୂର୍ତ୍ତି ଠାରୁ
ଅଭ୍ୟାସ ରାସ ମନ୍ତ୍ର ଶିକ୍ଷାଗୁରୁ
ଆରାଧନା କର ରାଧା ପଦ୍ମର
ଆଗତ ଶରଦ ନିଶି ବିହାର
ଆପେ ବଂଶୀ ଧର,
ଅନ୍ୟଥା ନୋହେ ପ୍ରମାଣକୁ କର ।।୫୨।।

ଅଚ୍ୟୁତଙ୍କୁ ଖୋଜ ମଧୁମଙ୍ଗଳ
ଆସି ଭେଟି ବୋଲେ ତବ ମଙ୍ଗଳ
ଆମଧ୍ୟ ପୃଥୁଳ ଅତନୁ ଆଣି
ଅଭ୍ରଭେଦ କୁମ୍ଭ କୁଚ ନର୍ମାଣି
ଅଧିକରେ ଶୋଭା,
ଆରମ୍ଭ ସ୍ତୁଭରେ ଜଘନ ରମ୍ଭା ।।୫୩।।

ଆଡ଼ମ୍ବର ପୃଥୁ ନିତମ୍ବ ୱାଶା
ଆଣେ ନେତ୍ର ଲୋଳ ମୃଗ ଲକ୍ଷଣା
ଅତନୁ ଧନୁ ଜିଣିଲାନି ଭ୍ରୂରୁ
ଆଦରଣ ଫୁଲ୍ଲ ଆନନ ଗୁରୁ
ଅଧରେ ଝଲକ,
ଅଳପ ହାସ ହୀରକ ଭୁଲକ ।। ୫୪ ।

ଅଲଭ୍ୟ ବହ୍ନ ପାଲଟା ବସନ
ଆଜ ସହସ୍ରଯୋଜନ ପରସନ

ଅଗନ୍ନ କଟି ଗତ କଣ୍ଠବର
ଅତନୁ ସମ୍ପତ୍ତି ସନ୍ତତେ ବର
ଅଛ ଆଜ ପାଇ,
ଆଖିର ମେଳ ରୁଚକ କମ୍ପାଇ ।। ୫୫ ।।

ଯେ ଅବତୀର୍ଣ୍ଣ ଯୌବନ ସନ୍ଧିର —
ଆଖିର କୁମାରୀମାନେ ଯେ କାଳେ
ଆନନ୍ଦେ ବର ଲଭ ଗୃହେ ଚଳେ
ଅପାଙ୍ଗ ଜିଣି ନେତ୍ର କରେ ଗତି
ଅଳ ପ୍ରାପ୍ୟେ ମଣି ନବାରେ ଖ୍ୟାତି
ଆଲୋକ ଶ୍ରେମାଳ,
ଅପଗା ଶୈବାଳ ଲୋଲେ ବୋଲି ।। ୫୬ ।।

ଆଳକ ପଟ୍ଟରେ ମନ୍ଥର ଗତି
ଅଙ୍ଗକୁ ଭାର ନକ ହୋଇଲା ଅତି
ଅନା ବୋଲେ ବକ୍ଷେ କୁଚ ଅଚଳ
ଅଧିକେ ନିତମ୍ବ ଜଂଘ ଯୁଗଳ
ଆଶ୍ରେଷ୍ଠ ଅପାର,
ଅନଙ୍ଗ ବସିଛି ବ୍ରଜକୁମାରୀ ।। ୫୭ ।।

ଚୈତ୍ର—
ଅଜ ଗୌରୀ ପ୍ରିୟ ହରଚାମ୍ବର
ଅତି ସୁମନ ପୂଜ୍ୟ ଦେବବର
ଅଖିଳ ଭୂତେଶ ସ୍ତୁତି ଗାବକ
ଅଶ୍ରପ୍ତୁ ବସ୍ତ୍ର ସୀତ କଳେବର
ଅଙ୍ଘ୍ରି ସେ ଦେବର,
ଅରଣ ଶ୍ୟାମସୁନ୍ଦର ଦେବର ।। ୫୮ ।।



— ପଞ୍ଚମ କୁସୁମ —

# ଆଠ ଚଉପଦୀ

( ଏକ )

— ପୂର୍ବାନୁରାଗ —

|| ରାଗ—ମୁଖାରି । ଏକତାଳି ||

ଅରୁଣ ଅଧର ଗୋ, ଅନୁରାଗ ଧର ଗୋ ।
ଅଧୀନ ପରେ କଣୋଷ । ଅନୁ ନ ପାରୁ ପାଶୋର ||ପଦ||

ଆଗାରେ ପଞ୍ଜର ଶାରି । ଅଲୋକକୁ ସୁକୁମାରି ।
ଆନର ଶୁଣି ସମ୍ବାଦ । ଅଙ୍ଗଣରେ ମଣ୍ଡୁ ପାଦ ||୧||

ଅନଙ୍ଗ ବାଣେ ଉଛନ୍ନ । ଅଲୋକକୁ ଛନ ଛନ ।
ଆସିଥିବେ ପରା ପ୍ରେଣେ । ଆପେ ଯେନ ସଖୀ ଜଣେ ||୨||

ଅଧିକେ ବରଦ ଜନ । ଅଶେଷ ସୁଗ ରଜନୀ ।
ଅତି କୃଶ ବସ୍ତ୍ର ଭାର । ଅଟେ କୁଚ ଧରାଧର ||୩||

ଅନ ଆଗେ ପ୍ରେ ଚରିତ । ଆଖ୍ୟାତକୁ ଖ୍ୟାତବନ୍ତ ।
ଅନଳ ଭସ୍ମରେ ଯଥା । ଆଚ୍ଛନ୍ନରେ ଥାଇ ତଥା ||୪||

ଅତି ଭରେ ଚତୁରାଷ୍ଟ । ଆଲୋକ ସୁଖ ଅଲକ୍ଷ ।
ଶ୍ରୀ ଶ୍ୟାମସୁନ୍ଦର ଦେବ । ଆଖ୍ୟାତେ କସ ସରବ ||୫||



( ଦୁଇ )

— ଅତିଶୟାନୁରାଗ —

( ରାଗ — ଆଶାବରୀ । ତାଳ — ଝଡ଼ତାଳ )

ଆରେ ଅଙ୍ଗନା ! ଅଧିକ ପ୍ରାଣରୁ ତୁ ମୋ ସଙ୍ଗ ।
ଅନଳେ ନୋହିଲେ ଜଳେ ବୁଡ଼ିବ ମୁଁ ଅନୁକୂଳେ
ତୋ ବିଚ୍ଛେଦକୁ ନ ପାରି ସହ୍ଚ ।ପଦ ।

ଆସୁଁ ଆସୁଁ ମୋର ରତି ମାନ୍ତରେ କର ପ୍ରୀତି
ଲଲାଟ ଲେଖନ ଜଣା ନୋହିି
ଅଶୁଦ୍ଧ ହେଲେ କାତର ନୋହି ମୁଁ ପ୍ରେତେ ମାତର
ମାଗୁଅଛି କରିବାକୁ ବନ୍ଧ ।। ୧ ।।

ଅବଶ୍ୟ ଭୂତ ପଞ୍ଚକ ନିଜ ଅଂଶରେ ବ୍ୟାପକ
ତୋ ଗମନ ମାର୍ଗେ ରହୁ ମନ୍ଦ
ଆପ ତୋ କେଳି ସରସି ଆଧାରଶେ ତେଜ ମିଶି
ବାତ ବିଞ୍ଚଣୀରେ ତୋହ୍ନ ଗନ୍ଧ ।।୨।।

ଅଙ୍ଗରେ ରହୁ ଆକାଶ ଦେହାନ୍ତେ ପୁନ ହରଷ
ନ ଦେବେ କି ସେ ବିଧିରେ ସ୍ୱେଦ
ଆଳସ୍ୟ କରନ୍ତୁ ହୃଦେ ଧ୍ୟାନେ ବଶିବୁ ପ୍ରମୋଦେ
ପ୍ରତ୍ୟକ୍ଷେ ବା ନ ପାରିବ ଗୃଦ୍ଧି ।। ୩ ।।

ଅବଲୋକନେ ନୟନ ଶ୍ରବଣ ଶୁଣି ବଚନ
ତନୁ ସୁବାସେ ନାସିକା ମୋହି
ଆଶ୍ଲେଷେ ତ୍ୱକ ଇନ୍ଦ୍ରିୟ ଓଷ୍ଠ ମଧୁ ସ୍ୱାଦୁମୟ
ଶ୍ରୀ ଶ୍ୟାମସୁନ୍ଦର ଦେବ କହି ।।୪।।୦।।

## ( ତିନି )

## — ସାବଧାନାନୁରାଗ —

( ରାଗ—କଳହଂସ । ତାଳ—ଝଡ଼ତାଳ )

ଅରଣ୍ୟେ ପୁଷ୍ପ ତୋଳନ୍ତି ବେନି ଯୂଥେଶ୍ୱରୀ
ଅନ୍ୟେ ଧନ୍ୟା ଶ୍ୟାମଳା ନାମେ ମନୋହାରୀ । ସେ ଅଙ୍ଗନା ॥୧॥

ଅଚ୍ୟୁତ ଚରଣେ ଆସି ଧନ୍ୟା ନେତ୍ର ବୁଜି
ଆସ୍ୟ ବନ୍ଦେ ଶ୍ୟାମଳା ଗଣ୍ଡରେ ଚୁମ୍ବ ସଜି ॥ ୨ ॥

ଆଳି ଜଣେ ଅଚ୍ଛି ବୃନ୍ଦ ଦେଖି ତା ଉରଜ
ଅଳପ ହସି ଦେଖାଇ ସୁସ୍ପଷ୍ଟ କରଜ ॥ ୩ ॥

ଅନଙ୍ଗ ସାୟକେ ବିଦ୍ଧ ହେଲା ତା ହୃଦୟ
ଆରମ୍ଭିଲେ ଖେଳ ଦେନ ସଖୀ ସମୁଦାୟ ॥ ୪ ॥

ଅସ୍ତ୍ରପ ରାମକୁ ନେଇ ବୋଲନ୍ତି ଯେ ମାର
ଆସ୍ୟ ଦେଖି କହିଁ କୁଞ୍ଜେ ପିରତି ରାମାର ॥ ୫ ॥

ଅଳି ନେତ୍ର ଚୁମ୍ବୁ ଅଛି ତା ମୁଖ ସାରସ
ଆଖ୍ୟାତ ଶ୍ୟାମସୁନ୍ଦର ଦେବ କରେ ରସ । ୬ ।

---

## ( ଚାରି )

## — ଅଭିସାରାନୁରାଗ —

( ରାଗ—ମୁଖାରି । ତାଳ—ଝଡ଼ତାଳ )

ସେ ଅଙ୍ଗନା, ଆଶ୍ଚର୍ଯ୍ୟ ରାତ୍ର
ଅଭିସାର ନିଶୀଥରେ ପ୍ରେମେ କରନ୍ତି ।ପଦ।

ଅଧିକ ସୁଧା ଅଙ୍ଗଣ । ଚଳନ୍ତି ପଦରଞ୍ଜଣ
କଣ୍ଟକ ନିର୍କରଣ । ମାର୍ଗେ ଢଳତ ॥ ୧ ॥

ଅବ ଚଢ଼କୁ ଖାଣ୍ଡରେ । ଦେଖି ଚମକେ ଖାଣ୍ଡରେ
ତା ମଣି ଦୀପ ଜ୍ୟୋତରେ । ସୁଖେ ଗମନ୍ତ ॥ ୨ ॥

ଅଟେ ଯେ ରମ୍ୟ ଭବନ । ତାହାକୁ ମଣନ୍ତି ବନ
ରକ୍ଷଣ ହୋଇ୍ଥ ଜୀବନ । ସର୍ବେରେ ପଡ଼ନ୍ତ ॥ ୩ ॥

ଅଲଭ୍ୟ କାନ୍ତ ପ୍ରସାଦ । ଲଙ୍ଘେ ପ୍ରାଚୀର ପ୍ରାସାଦ
ନଷାଦେ ନୋହ୍ଵ ବିଷାଦ । ମନେ ଉଲ୍ଲସନ୍ତ ॥ ୪ ॥

ଅଣଜ ଯାତେ ବଦର । ଗୃହକ ମୀନ୍ତ ଆଦର
ପ୍ରେମାନୁରାଗ ହୃଦର । ଜନଚ ଉତ୍ତ ॥ ୫ ॥

ଅଙ୍ଗନା କାନ୍ତ ବସନ । ବକ୍ଷଭ ପିନ୍ଧି ପ୍ରସନ୍ନ
ରମଣୀ ପିନ୍ଧେ ତେସନ । ନାୟକ କାନ୍ତ ॥ ୬ ॥

ଆଶ୍ରୟ ଶ୍ରୀକୃଷ୍ଣ ଦେବ । ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲଇ କେ ଲକ୍ଷ ଦେବ । ସେ ରାଗ ମନ୍ତ ॥ ୭ ॥

——

( ପାଞ୍ଚ )

— ପୁଂସାଭିସାରାନୁରାଗ —

( ରାଗ— ଆହାରି । ତାଳ—ରୂପକ )

ଅମ୍ବୁଜ ମୁଖି, ଅଧିକେ ମୁଁ ଦୁଃଖୀ ।
ଆସିବାକୁ ନଶି କେତକାରେ ଥିଲ ଲେଖି । ପଦ ।

ଅନ୍ଧକାର ଆଗତରେ ପ୍ରାଚୀର ଲଂଘି ଭିତରେ
ପଶିଲ କାମ କାତରେ ଦ୍ଵାର ଥିଲ ଦେଖି ॥ ୧ ॥

ଅଳପ କବାଟେ ପାଣି ଚୁକିବାରୁ ଘଣ୍ଟା ବାଣୀ
ଉଠିଥିଲୁ ଚଉ ଜାଣି ଜାଣେ ମାତ୍ର ସଖୀ ॥ ୨ ॥

ଆରବ କରୁଁ ନୂପୁର ଚେତ ଶାଶୁ ବୋଲେ ଘ୍ରେର
ଶୁତଲୁ ପଲଙ୍କ ପର ଡରେ ବୁଜ ଆଖି ॥ ୩ ॥

ଆଶା ଚନ୍ଦ୍ରକୁ ଆରୋହି — ବଦରୀ ମୂଳରେ ସହି
କି କଷ୍ଟରେ ଥିଲି ରହି — ଯେହି ଶାଖୀ ସାକ୍ଷୀ ।୪।
ଅଶ୍ରୁ ଯୋଗେ ଜଣା ଥିବ — ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲେ ପଦ୍ମ କଇରବ — ଆସିଥିଲି ରଖି ॥ ୫ ॥

---

( ଛଅ )

— ପ୍ରୀତି ଅନୁରାଗ —

(ରାଗ – ଚିନ୍ତା ମୁଖାରି । ତାଳ – ପଡ଼ତାଳ)

ଅଙ୍ଗନା !
ଅଙ୍ଗ ମୋ ଖଟଦୋଳି, ଅଙ୍ଗ ମଣ୍ଡି ହେମ ଛବି ଝୁଲି । ପଦ ।

ଆଜି ବରଜ ଲଜ ବରଜ ରାମା ଶିଖି ମନସିଜଂ[1] କେଳି
ଅଜଣା ଯେବେ ଜାଜଣା ତେବେ କ୍ଷୁଦ୍ର ଘଣ୍ଟି କଟି ରୁଳି ରୁଳି ॥ ୧ ॥
ଅମୃତ କର ଝଟକ ଚର ମୁଖ ଝଟତରେ ଦେଖାବାଳି
ଅନମିଷର ସମ୍ପଦ ସାର ନେତ୍ରେ ଦଅ କମ୍ପାଇଣ ବାଳି ।୨।
ଅଳପ ବ୍ରୀଡ଼ା ବଞ୍ଚାର ଲୋଡ଼ା ଦେଖିବ ନଚୁଅ ଭ୍ରୂଲତା ବଲ୍ଲୀ
ଆନନେ ମନ ହଂସରେ ମନ୍ଦ- ଗମନା ମନ ବନ୍ଧନ ଶାଙ୍କୁଳି ।୩।
ଅଧିକ ଦୋଷ ମୋ ପ୍ରୀତି ବଶ ବିଶେଷରେ କରୁ ଗୁଣାବଳି
ଅନୁରାଗର ଶ୍ରୀ ଶ୍ୟାମସୁନ୍ଦର ଦେବ ବୋଲେ ପ୍ରୀତିରୁ କେ ବଳି ।୪।

---

( ସାତ )

— ରତି ଭୀତାନୁରାଗ —

(ରାଗ – ପାହାଡ଼ି । ତାଳ – ତ୍ରିପୁଟା)

ଅଚ୍ୟୁତ ଦେଖି ସଖୀ ବେନି ପଚାରି ଆସ ବରଷା କାଳ ମାତରେ
ଅଙ୍ଗ ସ୍ୱେଦ ମାରୁ ଅଳକା ଚନ୍ଦନ ଇନ୍ଦ୍ରଗୋପ କରକା କ୍ଷିତିରେ ॥ ୧ ॥

---

୧ । (କ) ମନସିଜ

ଅନ୍ତୁଟ ପିକ ବଚନ ନୃତ୍ୟ କରୁଅଛୁ କେମ୍ପା ଦମକ ଗ୍ରନ୍ଥରେ
ଅଚଳ କୁଚ ଘୋଡ଼ାଇଥିଲ କରେ ପଦ୍ମାବଳ ଛୁଟା ବଚଡ଼ରେ ॥ ୨ ॥
ଅନଳ ଝଞ୍ଜା ଶ୍ୱ ସ ସୁମନା ସୁବାସ ଚନ୍ଦ୍ରକାନ୍ତା କଂପେ ଖ୍ରନ୍ତରେ
ଆଶୁଗ ଘାତ ହରଣ ପର ଭସ୍ମେ ଗୃହ୍ଵଂ ଦେଉଛ ଚଳକନ୍ତରେ ॥ ୩ ॥
ଆଳାପ ଶୁଣି ବୋଲନ୍ତ ବେଣୁପାଣି ଭସିଥିଲ ଗ୍ଭେର ରନ୍ତରେ
ଆଗତ କେ ପୁର ବୋଲେ ଶ୍ୟାମସୁନ୍ଦର ଦେବ ଆସିଲ ସ୍ୱେ ଘନ୍ତରେ ॥ ୪ ॥

---

( ଅ:ଠ )

— ନବାନୁରାଗ —

( ରାଗ—କାମୋଦୀ )

ଅନୁରାଗୀ ନବ ନବ ସୁକୁମାରୀ ସେ ବୃଷଭାନୁର କୁମାରୀ
ଅର୍ଦ୍ଧାଙ୍ଗ ଦେଖାଇ ଦେହଳରେ ଥାଇ ସ୍ନେହ ନେହ ଶର ମାର ॥ ପଦ ॥
ଅଚ୍ଛନ୍ନ ସ୍ଥାନରେ ରହି ସେ ବରହ କେଶୀ ନବେଶି ନୟନ
ଅନ୍ତକେ ଦେଖି କାନ୍ତ ଦନ୍ତ ରସନା ଦଂଶି କରେ ପଳାୟନ ॥ ୧ ॥
ଅଜାଗେ ପନ୍ଥରେ ଭେଟ ହେଲେ ଥରେ ପୋଛ ମୁଖ ନଶାପତ
ଆମଣା କର ବଳସ୍ଥ ରତ୍ନାକର ରହେ ବମ୍ଭ ଗୃହିଁ ପତ ॥ ୨ ॥
ଅପାଙ୍ଗ ଶିକ୍ଷଣେ ବାଣ କ କାରଣ[୨] ବନ୍ଧିଲୁ ଶୁଣି ସ୍ନେମନ୍ତ
ଅଧର କୋଷରୁ ଚନ୍ଦ୍ରହାସ ସରୁ କାଢ଼ି ଦେଖାଇ କେମନ୍ତ ॥ ୩ ॥
ଆନରେ ନୟନ ଦେଇ ସାବଧାନ କୃଷ୍ଣ ଗୁଣ କୀର୍ତ୍ତନରେ
ଅନ୍ତର ମନ୍ତର ଶ୍ରୀ ଶ୍ୟାମସୁନ୍ଦର ଦେବ ବୋଲେ ଭଜନରେ ॥ ୪ ॥



---

୧ । (କ) କାମ୍ବାଦ
୨ । (କ) ବକାରଣ

— ଷଷ୍ଠ କୁସୁମ —

# ଚଉତିଶା ଲେଖନ

। ରାଗ— ଶଙ୍କରାଭରଣ ।

( ସୀତା ହରଣ ଚଉତିଶା ବାଣୀରେ )

ଆସି ଶିଶିର ଦାସୀର ଶୋଭ କଲା ଛେକ
ଆଗପା ନଳିନ ମୁଖ ମଳିନ ବ୍ୟାପକ
ଅଳ୍ପ ହାସରେ ରଞ୍ଜକ,
ଆଶ୍ରମ ରାମା ଦେଖାଇ କୁନ୍ଦଦନ୍ତ ସ୍ତୋକ ॥ ୧ ॥

ଅମ୍ଭୋଜନୀ ବରହରେ ପ୍ରଖର ମୟୂଖ
ଆଗେ କବଳିତ ହେଲେ କୁଜ୍‌ଝଟିର ମୁଖ
ଅଧିକରେ ଲଭି ସୁଖ,
ଆଚାରେ ଦମନ୍ତ ରତ ପ୍ରଭାତେ ଅଲେଖ ॥ ୨ ॥

ଅଦୃଶ୍ୟ କମଳ ଗିରି ଯୋଡ଼ାଇଲା ବେଗ
ଅବନୀ ବନିତା କୁଚ ଚନ୍ଦନେ କି ଯୋଗ
ଅଭିସାରି ଜାରି ସଙ୍ଗ,
ଆପଗା ଘାଟରେ ବାଟୀରେ ନିଃଶଙ୍କେ ବିଭୋଗ ॥୩॥

ଆତଙ୍କ ରଥାଙ୍ଗ ମୁଦ ନିଶାଚର ଓଘ
ଅନଙ୍ଗକୁ ସ୍ୱ ଯାନ ମକର ଦେଲା ମାଘ
ଆଟୋପ୍ପ ସେ ଖର ବାଘ,
ଅଦ୍ଭୁତ ଆଲୋଚନା ତରୁଣ ପରିଘ ॥ ୪ ॥

ଅଷତ ତନ୍ତୁ ଲୋଧ୍ରକ ବ୍ୟାଜରେ ପ୍ରଦାନ
ଅପ୍ରସର ଇଚ୍ଛା ତନୁ ସେ ତନ୍ତୁ ରାଜନ

ଅଙ୍ଗନାର ଅପଘନ,
ଅଙ୍ଗକୁ ଶୋଚକ ଯଥା ହେମନ୍ତ ତପନ ॥ ୫ ॥

ଆପରେ ତପରେ ସ୍ନାନ ମଦନ ପ୍ରେକ୍ଷ ପାଞ୍ଚ
ଅନେକ ଜନମେ ମିତ୍ର ଶ୍ରମା ରମ୍ୟ କୁଚ
ଅଙ୍କ ପୀଠ ଉର ମଞ୍ଚ,
ଅବିରତ ରତ ସୁରତରେ ବନ୍ଧ ନଚ ॥ ୬ ॥

ଆସେ ବସନ୍ତ ପଞ୍ଚମୀ ଶୀତ ଲତା ଗଚ୍ଛ
ଅଶ୍ରିମ ଅଶ୍ରୁ ଆବେଢ଼େ ନଖାପନ୍ତି ସ୍ୱଚ୍ଛ
ଅଚ୍ଛୁ ଅନଙ୍ଗର ପଚ୍ଛ,
ଅନଳେ ବୋଲେ ତ୍ରିଗୁଣ ଧରି ଆଗେ ଗଚ୍ଛ ॥୭॥

ଆଜ ଆରମ୍ଭି ମାଣିବା ଶୈର ପଣେ ଆଜ
ଅଜାଗ୍ରତେ ଭଦ୍ରଚନ୍ଦ୍ର ତରୁଣ ସମାଜ
ଅଷ୍ଟ ପାଞ୍ଚେ ଦେଲେ ସଜ,
ଅବିର ବ୍ୟାଜେ ଆଶୁଗ ବଧାନ୍ତ ଷଟଜ ॥ ୮ ॥

ଆନନ୍ଦ ଶ୍ରୀମନ୍ତ ପ୍ରେ ଶ୍ରୀ ପୂର୍ଣ୍ଣା ଅର୍ଥ ବୃଦ୍ଧି
ଅଧିକେ ବସନ୍ତ ବେଶ ଶିଖି ଯୋଗେ ଶୁଦ୍ଧି
ଆଣି ଲେମ୍ବୁ ରସ ମର୍ଦ୍ଦି,
ଅଭୁକ ହରିଦ୍ରା ପେଷି କାନ୍ତ ତନୁ ଶୁଦ୍ଧି ॥ ୯ ॥

ଆଲେପିତ ସେ ହରିଦ୍ରା ଅଙ୍ଗେ ଶ୍ୟାମା ଶଙ୍କା
ଅନେକ ବସନ୍ତ ବୃନ୍ଦ ହୋଇଲେ ଅବଙ୍କା
ଅମଳିନ ପୃଷ୍ଠ ସଂଙ୍କା,
ଆମନ୍ତ୍ରନ ମାଳ ବନ୍ଧ୍ୟ କେଶ ଘନେ ବଙ୍କା ॥ ୧୦ ॥

ଅଭିନବ ବାସ ହରିଦ୍ରାର ରସେ ସ୍ଫୁଟ
ଅଙ୍ଗେ ଥିବାରୁ ସନ୍ଦେହ ଅତନୁ ପୁଟ
ଆଦ୍ୟ ଉତ୍ସବ ପ୍ରକଟ,
ଆଣି ବସନ୍ତ ତିଳକ ଲେଖି ଭାଲପଟ ॥ ୧୧ ॥

ଅତି ମୃଦୁ ଶେଯେ ବାସ ବେଶେ ବିମ୍ବଓଷ୍ଠୀ
ଅଙ୍କୁରିତ ଚନ୍ଦ୍ରେ ଅଚ୍ୟୁତ ଆପନ୍ତେ କ ଉଠି
ଆଲିଙ୍ଗିତ ହେବନ୍ତି କଣ୍ଠ,
ଆଧ୍ୟାନ ଶ୍ୟାମସୁନ୍ଦର ଦେବର ବୈକୁଣ୍ଠ ।୧୨।।

— ଗୀତ —

।। ରାଗ — ଚକ୍ରା ।।

(ରସକୁଲ୍ୟା ବାଣୀରେ)

ଅଚ୍ୟୁତ ରାଧେ ପଲଙ୍କ ପହୁଡ଼
ଆଚ୍ଛାଦିତ କଳ୍ପ ଅଗରୁ ଧୂଡ଼ ।
ଅନଙ୍ଗ ସବଳେ ପଡ଼ିଲା ମାଡ଼
ଅପମାନ ହେଲେ ସଖୀଙ୍କୁ ଗୁଡ଼ ସେ ।
ଅନ୍ତେ ରାଧା ଖୋଜା ଜଡ଼ ସେ,
ଅନ୍ଧାରେ ବନ୍ଧୁର ପନ୍ଥେ ପଥ ଧୁଡ଼ି
ଆସନ୍ତି ଜାବଟ ଲେଉଡ଼ି ସେ ।୧।

ଆଗାରକୁ ଅଛି ପ୍ରାଚୀର ବେଢ଼ି
ଅଲଂଘ୍ୟ ଲଂଘାଇଲା ଉଦ୍ଧ୍ୱ ବଢ଼ି ।
ଅତ୍ୟନ୍ତ ମନୋରଥ ରଥ ଚଢ଼ି
ଅଜଣା ଯେ କାମ ଶାସ୍ତ୍ର ନ ପଢ଼ି ସେ ।
ଅସ୍ପନେଷ ଅଛି ଗଢ଼ି ସେ,
ଅଳି ଅରଣ୍ୟରୁ ଆସି ରମେ ସରେ
ଆଇ ପଡ଼ ଫୁଲକଢ଼ି ସେ ।।୨।।

ଅଛି ଗୋଡ଼ାଇ ପଛେ ରଣ ରଣ
ଅଚ୍ୟୁତ ଆସି ରାଧାରେ ଶରଣ ।
ଆଚ୍ଛନ୍ନ ନଣାର ମଧ୍ୟ ଚରଣ
ଆପଣ ପାଣିରେ କଲେ ଗୃହଣ ସେ ।

ଉଠେ ଚେଟି ଆଚରଣ ଯେ,
ଆଳସ ନିଦ୍ରାରେ ନିଷେଧିଲେ ସୀତ
କର ବିମୁଖ କାରଣ ଯେ ।୩।

ଉଠିରେ ହୋଇ ନିଦ୍ରା ଉପହତ
ଅଚ୍ୟୁତଙ୍କୁ ଅବଲୋକ ବସିତ ।
ଆଦରେ ପାଦରେ ହୋଇ ପ୍ରଣତ
ଅଙ୍ଗ ପୋଛିଦେଲେ ଧରି ପଣତ ସେ
ଆଣି ବସନ୍ତ ପୁଷ୍ପତ ଯେ,
ଅଗୁରୁ ଧୂମେ ଧୂପିତ ପୁର କରି
ପରସ୍ପର ଆଲିଙ୍ଗିତ ଯେ ।।୪।

ଅଚ୍ୟୁତ ବୋଲନ୍ତି ଆଜ ମନ୍ମଥ
ଆଜ ମାରକ ମୋର ମନୋରଥ ।
ଅବଶ୍ୟ ବନ୍ଧ ପକାନ୍ତା ଯଥାର୍ଥ
ଅଙ୍କେ ତୋ ବସିବାର ହୋନ୍ତା ବ୍ୟର୍ଥ ସେ ।
ଆସିଲ ଭଜବ ପଥ ଗୋ,
ଅବଳାମଣି ଆଶ୍ୱାସେ ଦୁଃଖ ଶୁଣି
କର ମାର ହୃଦ ପଥ ଗୋ ।୫।।

ଆରମ୍ଭିଲେ ରତି ମଦନ ବାଦ
ଅଧିକ ବଜାଇ ମଞ୍ଜୀର ବାଦ୍ୟ ।
ଅତି ଦୂର ଗଲା ଶୁଣି ସେ ନାଦ
ଅଚ୍ୟୁତ ଶୁଖାଇଲେ ଦେଇ ଖେଦ ସେ ।
ଅନ୍ତରେ ଲଭି ପ୍ରମୋଦ ଯେ,
ଅଙ୍କେ ବସାଇ ବସନ୍ତ ବେଶ ଛବି
ପରଶଂସି ପଦ ପଦ ଯେ ।୬।

ଅଙ୍ଗନା ବୋଇଲେ କୁଞ୍ଜ ଅବରୋଧ
ଅନୁଭବ କେଳି ହୋଇଲା ବୋଧ ।
ଆଜି ପ୍ରେମିକ ପରବାସେ ସଧ
ଆଲୋକ ଅଟବୀ ଭଟିମା ରୋଧ ସେ ।

ଅତନୁ ଲୀଳା ଲବଧ ଯେ,
ଅଙ୍ଗୀକାର କର ଧର ବୋଲେ ପିବା
ନକଟେ ନାହିଁ ବରୋଧ ଯେ ।୭।

ଅଧିକ ପିନ ଉରେ ଆଲିଙ୍ଗନ
ଅଙ୍ଗେ ଅଙ୍ଗେ ଦୁଗ୍ଧ ଜଳ ବଧାନ ।
ଅଚଳ ଉରଜ ହୃଦେ ନଧାନ
ଆଣି କୌଶେୟ ନଶାର ପିଧାନ ସେ
ଅଲେଖ ସୁଖ ଶପୂନ ଯେ,
ଅଟରେ କୁକୁଟ ମୁକୁଟ କୁଟେ କ
ନନଦେ କଳ୍ପ ଛେଦନ ଯେ ।୮।
ଅଚ୍ୟୁତ ସଭୟେ ତେଜ ତଳପ
ଆପଗାକୁ ଗଲେ ଜନ କଳାପ ।
ଅନୁଗତ କଲେ ମୂଞ୍ଜଣ ଚାପ ସେ
ଆଳଚପୁ ମିଳ ଗାଧା ସଙ୍ଗୀତ ଯେ ।
ଆସ୍ୟରେ ହାସ ଅଳପ ଯେ,
ଅନ୍ୟେ ଇଙ୍ଗିତ ଚେଷ୍ଟାରୁ ଜାଣି ଗୁଢ଼୍
କ୍ଷତ ହୋଇନାହିଁ ଲୋପ ଯେ ।୯।
ଆଜ ଦେହର ପଣେ ମଦନ ରେଫ
ଅଭିନବ ଗୁଣ ସାଜ ଦ୍ୱିରେଫ ।
ଆଲୋକ ଭୟୁ ଧର ହୃଦ-ଗୁମ୍ଫ
ଆସିଥିବେ ପୀଡ଼ା ଲକ୍ଷଣ ଗୁଲ୍ଫ ସେ ।
ଅଚଳ ଉରଜ ଗୁମ୍ଫ ଯେ,
ଆଶ୍ରୟ କରଥିଲ ନାଭି କୁରଙ୍ଗ
ଦେଖ ଚାର ଚନ୍ଦ୍ରଶଫ ଯେ ।୧୦।।

ଆନ ବୋଲେ ଆଜ ଯାପେ ରାଜୀବ
ଆଶ୍ଚର୍ଯ୍ୟ ମାତ ଚୋଷେ ଅଳ ଧବ ।
ଆଜ ନ ବଶୋର ପଦ୍ମମା ଭାବ
ଆସି ନନ୍ଦିତ ରୂପ ଦେଖିଥିବ ସେ ।

ଆତୁରରେ ଦେଇ ଚୁମ୍ବ ଯେ,
ଅଧିକେ ବସନ୍ତ କେଶର ସୁଷମା
ବନ୍ଧୁଥିବ ଅବୟବ ଯେ ॥୧୧॥

ଆନ ବୋଲେ କାଳ ବେଶ ଆରମ୍ଭ
ଅନ୍ୟଥା ବୃଥା ନୋହୁ ହେଲ ଶୁଭ ।
ଅଟେ ଗୌର ରତି ଯେ ସୁଖ ଲଭ
ଅମର ନାଗ ଆଦରେ ଦୁର୍ଲ୍ଲଭ ସେ ।
ଅନୁଭବ ପଦ୍ମନାଭ ଯେ,
ଅଟେ କବିବର ଶ୍ରୀ ଶ୍ୟାମସୁନ୍ଦର
ଦେବ ବର୍ଣ୍ଣନେ ସୁଲଭ ଯେ ।୧୨।

— ଗୀତ —

॥ ରାଗ – କାମୋଦୀ ॥[୧]

( ଯଦୁସିଂହ ଚଉତିଶା ବାଣୀରେ )

ଅନୁକୂଳ ଆରମ୍ଭ ସ୍ଥାପେ ମଙ୍ଗଳ କୁମ୍ଭ
ଫାଲ୍‌ଗୁନ ମନୋରମ ଯେ
ଅରୁଣ କିଶଳୟ ଧଣ୍ଡା କଲେ ଉଦୟ
ବସନ୍ତ ନୃପ କାମ ଯେ
ଆହେ ଧୀରେ, ଆରାମ ଲତା ଦ୍ରୁମେ ଯେ,
ଆଶ୍ୱାସି ସୈନ୍ୟରାଜ ପ୍ରସାଦ ଦେଇ ସାଜ
ବଶ କଣିମା କାମରେ ॥ ୧ ॥

ଅବଳା ବୟଃସନ୍ଧି ପରି ବସନ୍ତ ବଧି
ଆରାମ ଶୋଭାମୟ ଯେ
ଅଙ୍କୁରିତ ଉରଜ ନବଗୁଚ୍ଛ ବରଜ
ଶୋଭା ବୃଦ୍ଧି ଉଦୟ ଯେ

---

୧ । (କ) କାମ୍ଭୋଦ

ଆହେ ଧୀରେ, ଅଟେ କେତକୀ କାମ୍ୟ ଯେ,
ଅଳି ନେତ୍ର ଚଞ୍ଚଳ          ହାବ ଯୁତେ[1] ମଞ୍ଜୁଳ
ବଚନ ବନ ପ୍ରିୟ[2] ଯେ ॥ ୨ ॥
ଆସି ପ୍ରବେଶ ଶିବ          ବହିରେ ଯୋଗ ଶିବ
ଶ୍ରବଣା ସୋମବାର ଯେ
ଅନ୍ତ ଯୋଗ ଆଗତ          ଷଷ୍ଠ ବରଷେ ଖ୍ୟାତ
କଲେ ଚଣକ ବାର ଯେ
ଆହେ ଧୀରେ, ଆଶ୍ୱିର ନୃପବର ଯେ,
ଅମ୍ବିକା ବନ ସର୍ବେ          ଗମେ ଯାହା ଉତ୍ସବେ
ଶୁଣି ହେଲେ ତତ୍ପର ଯେ ॥ ୩ ॥
ଅନମାନ କେ ଦ୍ରବ୍ୟ          ଭରି ବାହାର ଜବ
ବ୍ରଜବାସୀ ସକଳ ଯେ
ଅଚ୍ୟୁତ ରାମ ଆଦ୍ୟ          ପନ୍ଥେ ଭୋଜନ ରାନ୍ଧ
ପ୍ରବେଶ ଶିବ ସ୍ଥଳ ଯେ
ଆହେ ଧୀରେ, ଅରଣ୍ୟର ମଞ୍ଜୁଳ ଯେ,
ଆଲୋକ ପରଶଂସି          ସ୍ପଷ୍ଟ ଫଳ ବିଶେଷି
ରାଧାଦି ରାମା କୁଳ ଯେ ॥ ୪ ॥
ଅନାଶନରେ ଶିବ          ଗଙ୍ଗାରେ ସ୍ନାନ ନବ
ବ୍ରଜ କୁମାରୀ ସର୍ବେ ଯେ
ଆରାଧି ବୃନ୍ଦା ନାନ୍ଦୀ-          ମୁଖୀ ଚରଣ ବନ୍ଦ
ମନ୍ତ୍ର ଗ୍ରହଣ ଜବ ଯେ
ଆହେ ଧୀରେ, ଅଚ୍ୟୁତ ଯୋଗ୍ୟ ହେବ ଯେ,
ଅଙ୍ଘ୍ରି ରାଧାର ସେବ          ଅନୁଗ୍ରହକୁ ଲଭ
ଯେବନଲେ ଭକ୍ତି ଭାବ ଯେ ॥ ୫ ॥

---

୧। (କ) ହାସ ଯୁତେ
୨। (କ) ପ୍ରିପ୍ରିୟ

ଆନନ୍ଦ ସାଣା ଗୀତ ଆନନ୍ଦ ରସ ସଙ୍ଗୀତ
ବୃନ୍ଦା ଶିକ୍ଷାରେ ବଶ ଯେ
ଆସିର ନୃପ ଆଦ ରତ ନାଗର ବଧି
ଚୋଷି ଅମ୍ବିକା ଈଶ ଯେ
ଆହେ ଧୀରେ, ଅଙ୍ଗନାଙ୍କୁ ବସ୍ତୁ ବେଗେ ଯେ,
ଅନେକ ଦେଶୁଁ ଆସି ଅନିମିଷରେ ରସି
ଆଲୋକ ହୃଷିକେଶ ଯେ ॥ ୬ ॥

ଅନ୍ଧ ନଶିରେ ନନ୍ଦ ଶୟନେ ଥିଲେ ପଦ
ଗିଳନ୍ତି ଆଶୀବିଷ ଯେ
ଆଗିରଙ୍କ ଆୟୁଧ ଘାତରେ ନୋହେ ବଧ
ଅଧିକେ ଅମରଷ ଯେ
ଆହେ ଧୀରେ, ଆକୁଳିତ ବିଶେଷ ଯେ,
ଅଚ୍ୟୁତ ନନ୍ଦ୍ରା ହତ କରନ୍ତେ ପଦଘାତ
ମଳ୍ଳ ନନ୍ଦ ନିର୍ବିଷ ଯେ ॥ ୭ ॥

ଅନ୍ତେ ଗନ୍ଧର୍ବ ପତ ଶାପୁଁ ହେଲା ମୁକତ
କୃଷ୍ଣ ପାଦ ସାରସ ଯେ
ଅର୍ଚ୍ଚନରେ ଗନ୍ଧର୍ବ ବିଦ୍ୟାକୁ ଦେଇ ସର୍ବ
ଗଲା ନିଜ ନିବାସ ଯେ
ଆହେ ଧୀରେ, ଆଲୋକ ଅବକାଶ ଯେ,
ଅନ୍ତର୍ଦ୍ଧି ରୁଁ ମାଗି ବିଦ୍ୟା କୁମାରୀ ବାରେ ବୃନ୍ଦା
ବାଣ୍ଟି ଦେଲେ ସରସ ଯେ ॥ ୮ ॥

ଆପେ ନନ୍ଦ ନନ୍ଦନ ଶ୍ୱେନ ପୃଷ୍ଠ ଚନ୍ଦନ
ସେ କୁମାରୀ ନିବହ ଯେ
ଆଚରିଇଲେ ନାନ୍ଦୀ- ମୁଖୀ ସହ ବୃନ୍ଦାହ
ସେ ଗାନ୍ଧର୍ବ ବିବାହ ଯେ
ଆହେ ଧୀରେ, ଅଟବୀ ଶୋଭାବହ ଯେ,
ଅଚ୍ୟୁତ ରହ କେଳି ରାଧା ବଚନ ପାଳି
ଜାତ ସୁଖ ସନ୍ଦୋହ ଯେ ॥ ୯ ॥

ଅଷ୍ଟମୀ ଦେଖା ପୂର୍ବ      ପର ନବାନ୍ଦେ ସର୍ବ
ଯେ ବିଧାନ ଅସଂଖ୍ୟ ଯେ
ଅଚ୍ୟୁତ ପ୍ରିୟ ବାଳୀ      ଶ୍ରୀରାଧା ଚନ୍ଦ୍ରାବଳୀ
ବିଦେଶୀ ରାମା ଲକ୍ଷ ଯେ
ଆସି ତହିଁ, ଆରାଧିଲେ ପ୍ରତ୍ୟକ୍ଷ ଯେ,
ଶ୍ରୀଅଷ୍ଟ କୃଷ୍ଣ ବର      କହେ ଶ୍ୟାମସୁନ୍ଦର
ଦେବ ଛନ୍ଦ ପଦ୍ମାକ୍ଷ ଯେ ।। ୧୦ ।।



## — ସପ୍ତମ କୁସୁମ —

# ଡଗ ଲେଖନ

। ଦଶ ଡଗ ବୃତ୍ତେ ।

ଅମ୍ବିକା ବନ          ଗହଳ ଜନ
ଅତୁଳ ହାଟକୁ ସ୍ୱର୍ଗ ସମାନ ।
ଅଙ୍ଗ ଓଡ଼୍ରଙ୍ଗ          ବଙ୍ଗ ତେଲଙ୍ଗ
ଆସି ଛପନ ଦେଶ ଲୋକ ସଙ୍ଗ ।୧।

ଆଲୋକ ପାଠ-          ଗ୍ରଣୀ କେ ଝଟ
ଅନ୍ତକେ ମିଳ ବାଣୀ କଲ୍ପ ସ୍ଫୁଟ ।
ଅବମା ଭୂତ          ବକ୍ଷରେ ସ୍ଥିତ
ଆସିଛୁ କର କରିବାକୁ ଦତ୍ତ ।୨।

ଅଙ୍ଗନା ଚିତ୍ତ          ଜାଣି କଥିତ
ଅନୁଗ୍ରହ ନେମୁ ପାଠ ବରତ
ଆତ୍ମଜା ବର          ଗିର ସୁନ୍ଦର
ଆଲୋକ କେ ଝଟ କହଇ ଗିର ।୩।

ଆସିଛୁ ପୀତ          ଅଙ୍ଗ ନମିତ
ଆତୁର ଯା ମାରେ ହୁଅଇ ଚିତ୍ତ ।
ଅମ୍ବୁଜ ଦୃଶୀ          କଣ୍ଠେ ଦେ ଘଷି
ଅଚ୍ଛୁ ତ୍ରିଯାମା ମଧ୍ୟ ଦେଖ ଆସି ।୪।

ଅତି ଜଭିତ          ସୁହରେ ଘାତି
ଆଲୋକ ନାଗର କହେ ଘରଣି ।
ଅଚ୍ଚୁ ବିବେକ ଗୋ          ଆଣ ମସ୍ତକ
ଅନ୍ୱେଷଣା ଦ୍ରବ୍ୟ ସୁହକାରକ ।୫।

ଆଳାପ ଶୁଣି　　ଜରତ ଭଣି
　ଅନେକ ସୂତ୍ର ଅଛୁ ମୁହିଁ ଜାଣି ।
ଅଛୁ ବେଶରେ　　ସୂତ୍ର ମୋ ଠାରେ
　ଅଦଭୁତ ଦେଖାଇ ବିବାସରେ ।୬।

ଅଳେକ କର　　ସୁନାର ନାଷ୍ଟ
　ଆଦର କର ନାଗର ପତ୍ୟର ।
ଅଛୁ ସୁବର୍ଣ୍ଣ　　କେତକ ବାନ
　ଅଧିକ ରଞ୍ଜ ଇଚ୍ଛା ବର୍ତ୍ତମାନ ।୭।

ଅବଳା ବାକ୍ୟ　　ଅଛୁ ପଦକ
　ଅନରୁପେ ନ ମିଳଇ ନାୟକ ।
ଆଗରେ ମିଳ　　ତାମ୍ବୁଳ ବାଳ
　ଅଳ୍ପ ବୟସୀରେ କହେ କେ ଭଲ ।୮।

ଅଧର ସ୍ୱାଗ　　ପାଇ ସରାଗ
　ଅଧିକ ସ୍ୱାଦୁ ପାନ ହିଅ ବେଗ ।
ଅଛୁ କି ସୁଧା　　ପୁଙ୍ଗରେ ଶ୍ରଦ୍ଧା
　ଅଟରେ ସ୍ୱାଦୁ ବୁଝ୍ ବୋଲେ ମଧ୍ୟା ।୯।

ଅଳେକ ମାଳା-　　କାର ଅବଳା
　ଆସି କେ କହେ ଦେଖି ଅଳଅଳା ।
ଆସିଲି ଖଟେର　　ଗୋ ଚନ୍ଦ୍ରା ମନରେ
　ଅନୁଦିନ ମଲ୍ଲି ସୁମନ ଶରେ ।୧୦।

ଅବଳା କନ୍ଧି　　ଜାନ୍ତି ତ ନାହିଁ
　ଅମ୍ଳାନ ଯୋଗ ସର୍ବଦାରେ ମୁହିଁ ।
ଆବାସେ ମୋର　　ପ୍ରେକ୍ଷ ବେଷର
　ଅନବରତେ ଶୋଭା ସୁଂ ନାଗର ।୧୧।
ଆଳୋକ ଘଷ　　କେ କଲା ପ୍ରକାଶ
　ଆସି ଗୁଡ଼କାର ରମଣୀ ପାଶ ।
ଅଛୁ ମନାସି　　ଗୋ ଦେବଙ୍କୁ ଆସି
　ଆଜ କରିବ ଭୋଗ ଚଉ ରସି ।୧୨।

ଅବଳା ଧୀରେ ବୋଧିଲ ଶିରେ
ଆମଧୁର ସାକର ସୁଖ ଜାରେ ।
ଆଶ୍ୱାସ ପାଶେ ଯାଇ କେ ଭାଷେ
ଆକାଙ୍‌କ୍ଷା ଗୋରସ ଦେବୁ ବଶେଷେ ॥୧୩॥

ଅବଳା ଶୁଣି ଇଙ୍ଗିତେ ଭଣି
ଅଧରେ ରଖିଅଛୁ ଆଗୁ ଜାଣି ।
ଆନ୍ତର ପଦ୍ମ କଳସ ଦ୍ୱଦ୍ମ
ଅଛୁ ଉଦ୍ଧେ ଯ,ହା ଛୁଟବ ନଦ୍ମ ॥୧୪॥

ଅମ୍ବର କାର ବନିତା ସାର
ଆଗେ କେ କହେ ଥାନ ଲୋଡ଼ା ମୋର ।
ଅବଳା ବୋଲେ ଥାନ ନ ମିଳେ
ଆସ ବାସକୁ ଦେଖା,ଇବ ଭଲେ ॥୧୫॥

ଆଳାପ ଯେତେ କେ କାମ ଆରତେ
ଆସି ଲୋହକାର ସୀମା ପୂରତେ ।
ଆକାଙ୍‌କ୍ଷା ମୋର ଗୋ ଯେତେ ମାତର
ଅବଲୋକବ ଚନ୍ଦ୍ରହାସ ଚୋର ॥୧୬॥

ଅବଳା ବୋଲେ ପ୍ରଦ୍ୟୁମ୍ନ ବଳେ
ଆସିଲେ ରହ ଦେଖାଇବ ଭଲେ ।
ଆସି କୁସଳ ସୀମା ମଞ୍ଜୁଳ
ଅବଲୋକ କେତୁ କହେ ଶୀତଳ ॥୧୭॥

ଅଛଇ କାହ୍ନିଁ ଗୋ ଲୋଡ଼ଇ ମୁହିଁ
ଅଧିକ ସେହ ପାଣ ଥିବ ଯହିଁ ।
ଆଳାପ ଧୀର କଲ ପସର
ଆଲୋକ ଯେଠାରେ ମହତ ସର ॥୧୮॥

ଆସି ନାଗର ରଙ୍ଗା ଶାବର
ଅବଳାକୁ ବୃହିଁ କହଇ ଗିର ।
ଅଛୁ କ ଚହ ଦେଖନ୍ତା ନେହ
ଅଧିକ ସରେ ସୁଶୋଭନ ଗାହ ॥୧୯॥

ଅବଳା ଭଣେ ଶଙ୍ଖ ମୁଁ ଜାଣେ
ଆଲୋକ ରାଗ କୁଙ୍କୁମ ପ୍ରମାଣେ ।
ଅମ୍ବୁଜ ମୁଖ ଚନ୍ଦ ଦୃଷ୍ଟ୍ୟେଷ
ଆଜ ସର୍ବତୋମୁଖ କୁଞ୍ଜେ ଦେଖ ।୨୦।

ଆରକୁଟାଦ ରାସ ସମ୍ବାଦ
ଅବଳା ରଖିବା ଦେଖି କେ ବଦ ।
ଅନ୍ତୁ କ ଜାଣି ଗୋ କୁଣ୍ଡ ନର୍ମାଣି
ଆଗ୍ରହେ ସେ ବଜାରେ ନାହିଁ ଆଣି ।୨୧।

ଅର୍ଛଦ ମାଳ ଚନପ୍ପା ବାଳ
ଆଲୋକ ରୂପ କେ କହଇ ଭାଳ
ଅଧରଶନ ଦେଲେ ଈଶାନ
ଅର୍ଦ୍ଧଚନ୍ଦ୍ର ଦେବ କରନ୍ତୁ ମନ ।୨୨।

ଅଙ୍ଗନା କନ୍ଥ ସେ ରାଜା ଯାଇ
ଆନ ରାଜା ଦେଲେ ପାରନ୍ତୁ ଦେଇ ।
ଅଶ୍ୱ ବାନ୍ଧୁର କରି ବର୍ବର
ଅଶ୍ରୁ କଣ୍ଡଆଳେ ଦେଲେ ସୁନ୍ଦର ।୨୩।

ଅନେକ ମାତି ପାଦ ପ୍ରକଟି
ଅରୁଣ ରୁଚି ଫୁଲ ଯେବେ ଫୁଟି ।
ଆପି ବନ୍ଧଙ୍କ ସ୍ବଂସ ଆଲୋକ
ଆମ୍ର ମୂଳେ ବୋଲେ ଅଛୁ ଲୋକାଙ୍କ ।୨୪।

ଆମ୍ବ ଦୃପତ ପାଖରେ ଗତ
ଆସି ଜଗନ୍ତ ଯେ ଦେବର ପତ ।
ଆସନ୍ନ ଗୌର ଚେଷ୍ଟା ମୋହର
ଅଦୃଶ୍ୟ ଚକ୍ଷୁ ନଶାରେ ଅମ୍ବାର ।୨୫।

ଅଟନ୍ତି ଆସି ଅନେକ ଦେଶୀ
ଉଦ୍ଭଳାସ ଦେଖି ଭାଷା ନ ଆସି ।
ଆଣି ଚଟକ କରେ ଆଲୋକ
ଅଧିକ ନଖ କ୍ଷତ ବଢ଼ିତକ ।୨୬।

ଅବଳା ସ୍ତନ                    କାଞ୍ଚନ ଘଟ
ଅଳପ ଫେଡ଼ ବସନେ ସଘନ ।
ଅମ୍ବୁଜ ବେ                    ତୁମ୍ଭେ ଆଲୋକେ
ଅବଳା ବୋଧେ କଣ୍ଟ୍ରସ୍ଥ ତିଳକେ ।୨୭।*

ବହୁଷକ—
ଅବମାଣ ବେ                    କାମ ଆଡଙ୍କେ
ଆଗଳକା ଦାବେ ହଷି ନିଃଶଙ୍କେ ।
ଅନ୍ୟ ଦେଶର                    ରାମା ରୁଚର
ଆଣି ରମଣେ ଘେନ ସାଡ଼ିଘର ।୨୮।

ଆଳାପ ଗୀତେ                    ସେ ରତେ ଭୂରତେ
ଅମୃତ କେ ଭୁଞ୍ଜାଇଲ ଦର୍ପିତେ ।
ଆପେ ମନ୍ଥଷୀ                    ପେଷିଲ ଦାସୀ
ଆସି ବୁଝି ସବ ଚରିତ ରସି ।।୨୯।।

ଆପେ ବାର୍ତ୍ତା କ                    ସେ ପୁଚ୍ଛି ବଳକ
ଅଳ ପଦ୍ମ ଭେଜ ତୁମ୍ଭେ ବାର୍ତ୍ତା କ ।
ଆଲୋକ ନୃପ                    ସେ କଦେ କୋପ
ଅଳସ୍ତୁ ହଂସର ପଦ୍ମ କଳାପ ।୩୦।

ଅଛୁ ବଡ଼ତ                    ଚହାନ୍ତ ସୃତ
ଅଭସ୍ଥ ଯୋଗୀ ସେ ଉଛିଷ୍ଟ ଗର୍ତ୍ତ ।
ଅଙ୍ଗ୍ରିରେ ନତ                    ହେଲ ନୃପତ
ଅବୋଧ ରମା ନୋହିଲ ଭୂପତ ।୩୧।

ଆକ୍ରସିକା ଯେ                    ଦୁଷ୍ଟ ସତକେ
ଅଙ୍ଗ ଭୁଣ୍ଡିକ ଫେଡ଼ ଫେଡ଼ ଶେଯେ ।
ଆସନ୍ତେ ଅଙ୍ଗ                    ସେ ଚନ୍ଦ୍ରମା ମୁଣ୍ଡି
ଆଲିଙ୍ଗନ କରୁ ହରଷ ଗୁଣ୍ଠି ।୩୨।।

* "ଶୃଙ୍ଗାରେଽସ୍ୟ ସହାୟା ବଟଭେଽବଦୂଷତାଦ୍ୟାସୁ ।।"
(ଭଡ ସାହିତ୍ୟେ) ।। ପୋଥିପାଠ ।।

ଆରମ୍ଭେ ନୃତ୍ୟ କଲ ସେ କୃତ୍ୟ
ଅଧିକେ ଚାଲ ଚାଳି ହେଲ ସତ୍ୟ ।

ପୀଠମର୍ଦ୍ଦ । ସେ ପୀଠମର୍ଦ୍ଦ କଳା କୁଶଳା—

ଆଳି ସକଳ ଆଗେ ପେଷଲ
ଆସି କହଇ ସେ ନୋହେ କୁଶଳ ॥୩୩॥
ଅମରଷ କ କର ପଣ୍ଡିକା
ଅଳଙ୍କାର କାବ୍ୟ ଅଛୁ ବାଂଲକ ।
ଅପୂନେ ଯାଇ ଶପ୍ତନେ ଥାଇ
ଅଙ୍ଗନା ପୃଷ୍ଠ ନ ଥିଲ ଦେଖାଇ ॥୩୪॥
ଅରି ମଦନ ଥାଉ ସେ ମାନ
ଅନେକ ଛଦ୍ମ ହେବ ହୃଷ୍ଟ ମନ ।
ଆଶୁଗ ଘାତ ହୋଇଲେ ପତ
ଆତୁରେ ଭଜବ ଆନ ଯୁବତ ॥୩୫॥
ଅଛନ୍ତି ଆସି ଯାହା ଉର୍ବଶୀ
ଅମୂଲ୍ୟ ସୁନ୍ଦରୀ ନବ ରୂପସୀ ।
ଅବଳାମଣି ସଖୀ ମୁଖୁଁ ଶୁଣି
ଅପହତ ମାନ ହେଲ ସେ କ୍ଷଣି ॥୩୬॥

ଉଟ—

ଅମ୍ବୁଜାନନ କାନ୍ତେ ମାନନ
ଆସି ସେକ ଦାଷ କହଇ ଯେନ ।
ଆମ୍ଭେଶ୍ୱରକୁ ଗୋ କର କୋପକୁ
ଅକାରଣେ ଚନ୍ଦ୍ର ମନ୍ଦ ଦେହକୁ ॥୩୭॥
ଅମ୍ଭ ଛନ୍ଦକୁ ଜନମ କଷ୍ଟ
ଆପସେ ଶୁଣା ନ ଥିଲ ଇନ୍ଦ୍ରୋରୁ ।
ଅବ କଳନା କର ଭୂଳନା
ଅଛୁ କେତେ ପତ ପ୍ରେମ ଲଳନା ॥୩୮॥

ଅଧିକ ରୂନ ହୋଇଲେ ପାନ
ଅବଶ୍ୟ ତାପ କରଇ ବର୍ଦ୍ଧନ ।
ଅବଳା ଦେଖ ସୀତ ମୟୂଖ
ଅବଲୋକ ଚନ୍ଦ୍ର ପରାଗ ମୁଖ ।୩୯।
ଅଚ୍ଛୁ ତା ଆଣି ଗୋ ତୋ ମୁଖ ଜିଣି
ଅନା କାନ୍ତ ମୁଖ ରଜନୀ ମଣି ।
ଅବଳା ହାସ କଲା ପ୍ରକାଶ
ଆଳାପ ଶୁଣି ତେଜିଲା ବରସ ।୪୦।
ଚେଟ—
ଅଟେ କୋପିନୀ କେ ମତ୍ତ କାଶିନୀ
ଆସି କେ ଚତୁର ବୋଲେ କାମିନୀ ।
ଅନଙ୍ଗ ପର ଦେଖିଲ ଠାର
ଆନ ନଶି ଜନଗହଳରେ ।୪୧।
ଆଲୋକ ଚନ୍ଦ୍ର- ଜିବସ୍ତା ଚନ୍ଦ୍ର
ଅନେକ ବଧି ବାଣଗଣ ସାନ୍ଦ୍ର ।
ଅନେକ ଦେଶ ଅବନୀ ଈଶ
ଅତୁଲ ହାଟ ନୋହିଥିଲା ଦୃଶ ।୪୨।
ଆସ ସୁକେଶି ଦେଖିବୁ ବସି
ଅବନୀ ଗୃହଁକୁ ଯାବାକୁ ଆସି ।
ଅଛୁ ସୁମନ୍ଥ ନେମି ଯଥାର୍ଥ
ଅବଳା ଗମେ ବାଣୀ ମଣି ତଥ୍ୟ ।।୪୩।
ଅଗ୍ରେ ପେଷଲ ଜନ ଗହଳ
ଆଣି ଦେଖାଇଲା ଭଗ୍ନ ଦେଉଳ ।
ଅନ୍ତର ହୋଇ ଚତୁର ଯାଇ
ଅବଳା ଛନ୍ଦ ଚତୁରେ ଅନାଇ ।୪୪।
ଆସି ବଲ୍ଲଭଂ ମଣେ ସୁଲଭ
ଆଲିଙ୍ଗନ କଲାବେଳେ ଆରମ୍ଭ ।

୧ । (କ) ଭଲଭ

ଆକାଶେ ଆସି ହାବେଳି ମିଶି
ଅଧିକେ ଚମକେ ଚମରୁଦ୍ଧୃଣୀ ।୪୫।
ଆଶ୍ଳେଷ ବେଳ ମନେ ସୁଖ ଘେନ
ଆନନ ହିଜରାଜେ ଚୁମ୍ବଦାନ ।
ଅନ୍ତରେ ଚିନ୍ତ ବର ସୁବର୍ଣ୍ଣ
ଆରମ୍ଭିଲ ଚେଟ କେମନ୍ତ ଘାତ ।୪୬।
ଅତି ଗହଳ କୁଚ ଯୁଗଳ
ଅଙ୍ଗେ ଲଗୁ କେ ମଣିଲ ଶୀତଳ ।
ଅଭିଲାଷରେ ଚୁମ୍ବ ମୁଖରେ
ଅନାୟାସେ ସ୍ତନ ରସିକ ଧରେ ।୪୭।
ଅଧୋକ୍ଷଜ ସେ ରାଧାରେ ରାଜେ
ଅନ୍ତ ହୋଇଲେ ଯାହା ବଜାଯ୍ୟ ବ୍ରଜେ ।
ଅମର ବର ହରିଚାମ୍ବର
ଆଶ୍ରୟ ଶ୍ୟାମସୁନ୍ଦର ଦେବର ।୪୮।

— ଅଷ୍ଟମ କୁସୁମ —

# ଭୋଜି ମନାସ ଲେଖନ

॥ ରାଗ—କେଦାର ॥

(ନୀଳାବନ୍ତ, କ କରବ ସଖି କହ—ପ୍ରେ ବାଣୀରେ)

ଅଛୁ ଝିଲ ହଂସକେଳି ଛେନା ଲଡ଼ୁ ସରପୁଳି
ଅଧାମ ଗୋଟିକା ପାରିଜାତକ ଯେ, ଛାଟଡ଼ା ସରପାପୁଡ଼ି ।
ଅମୂଲ୍ୟ ସର ବଟ୍ଟୁଳ ମୋହନ ଭୋଗ ରମ୍ଭାଳ
ଅମୃତ କେଳି ଖଇର ଚୁର କୋର ଯେ, ନଳାଦ୍ରି ବଲ୍ଲଭ ଶୋଳ ।୧।

ଅଧାମ କର୍ପୂର କେଳି ଦୁଧ ଲଡ଼ୁ ସରପୁଳି
ଅମୃତ ସାଗର ପାରିଜାତକ ଯେ, ସରମଣ୍ଡା ହଂସକେଳି ।
ଅମୃତ କେଳି ମୁଗୁଡ଼ି ମୋହନ ଭୋଗ ତିପୁର
ଅଛୁ ନାଗଫୁଣ ବଲ୍ଲଭ ଝିଲ୍ଲି ଯେ, ମିଠାଇ ସରପାପୁଡ଼ି ॥୨॥

ଅପୂର୍ବ ଖଇର ଚୂର ଛେନା ଲଡ଼ୁ ମୋତିଚୁର
ଅଛୁ ଝିଲ୍ଲି ଦୁଧ ଲଡ଼ୁ ଗୋଟିକା ଯେ, ସର ଚାପୁଡ଼ି ଯେ ସାର
ଅଛୁ ନବମାତ ପୁଳି ପାରିଜାତ ହଂସକେଳି
ଅମୃତ କେଳି ଛାଗଡ଼ା ମୁଗୁଡ଼ି ଯେ, ମିଠାଇ ବଫା ତିପୁର ।୩।

ଅଧାମ ଖଇର ଚୂର ବଫା ଅମୃତ ସାଗର
ଅଛୁ ଗୋଧୂମ ଫେଣି ଦଧି ରମ୍ଭାଳ ଯେ, ସାଠ କୋର ମୋତିଚୂର
ଅମୂଲ୍ୟ କର୍ପୂର କେଳି ମୋହନ ଭୋଗ ତିପୁର
ଅମୃତ କେଳି ଦଧି ଲଡ଼ୁ ମିଠାଇ ଯେ, ଗୋଟିକା ସରପାପୁଡ଼ି ।୪।
ଅଛୁ ଝିଲ ସରମଣ୍ଡା ପାରିଜାତକ ଛାଗଡ଼ା
ଅମୃତ କେଳି ମୋତିଚୁର ମିଠାଇ ଯେ, ଝିଲ୍ଲି ମିସର ଖରଡ଼ା
ଅମୂଲ୍ୟ ସର ବଟ୍ଟୁଳ ଛେନା ମୁଗୁଡ଼ି ରମ୍ଭାଳ
ଅମୃତ ସାଗର ମୋହନ ଭୋଗ ଯେ, ଫେଣି ଖୈରଚୁର ଶୋଳ ।୫।

— ଗୀତ —

( ରାଗ — ଗଡ଼ମାଳଶ୍ରୀ )

ଆଖଣ୍ଡଳ ମାଳ କେଶି,
ମାଳଃଦ୍ରି ବକ୍ଷରେ ତୋ ମନ ରସି ଯେ
ଆଜ ନର୍ମାଣିମି ବସି । ଅଙ୍ଗନା ଗୋ ! ।୧।

ଅଧିକେ ତବ ବକ୍ଷଭ,
ନାଗବର ନାଗପୂଣ ବକ୍ଷଭ ଯେ
ଅଗାରେ ନୋହେ ଦୁର୍ଲ୍ଲଭ । ଅଙ୍ଗନା ଗୋ ! ।୨।

ଆସ୍ୟ ନନ୍ଦେ ସରସିଜ,
ସରସ୍ଥଳରେ ତୋ ସେନେହ ଆଜ ଯେ
ଅଛୁ ପରା ସ୍ତରେ ହେଜ । ଅଙ୍ଗନା ଗୋ ! ।୩।

ଅଙ୍ଗ ନନ୍ଦେ ନବମାତ,
ନବମାତ ସ୍ଥଳ ପାଇଁ ତୋ ଚିତ୍ତ ଯେ,
ଆଜ କରବ ରଚିତ । ଅଙ୍ଗନା ଗୋ ! ।୪।

ଆଣି ଉରେ ଉର ଯୋଡ଼ୁ,
ଚେତନା ଲଡ଼ୁକୁ ତୁ ମନରେ ନୋଡ଼ୁ ଯେ
ଆଣିଦେବ ପସ୍ତୁ ଛୁଡ଼ୁ । ଅଙ୍ଗନା ଗୋ ! ।୫।

ଆକାଙ୍‌କ୍ଷା ତୋ ଦୁଧ ଲଡ଼ୁ,
ଦୁଗ୍‌ଧ ଜଳ ପରି ବପୁରେ ଜଡ଼ୁ ଯେ
ଆଣିମି ନପୁ ବେନ ବଡ଼ୁ । ଅଙ୍ଗନା ଗୋ ! ।୬।

ଆଳସ ହଂସ-ଗମନା,
ହଂସ କେଳ ପାଇଁ ନୁହ ବମନା ଯେ
ଆଜ ହୋଇବ ଚେତନା । ଅଙ୍ଗନା ଗୋ ! ।୭।

ଇଚ୍ଛୁ ତୁ ଶୋଭା ଉଦଧି,
ଦଧି ଲଡ଼ୁ ପାଇଁ ବଳରୁ ବୁଦ୍ଧି ଯେ
ଅଳପ କେ ହେବ ସିଦ୍ଧି । ଅଙ୍ଗନା ଗୋ ! ।୮।

ଅମଣ୍ଡନ ଆଚ ଦାଗ,
ସାଚ କୋଦ୍ର ପାଇଁ ଦେଉଛୁ ଚୋଗ ଯେ
ଆଣିମି ନୟନ ଚାଗ । ଅଙ୍ଗନା ଗୋ ! ॥ ୯ ॥

ଅଟୁ ତୁ କର୍ପୂର ଦାସୀ,
କର୍ପୂର କେଳରେ ଶତ୍ରୁ ଲାଳସୀ ଯେ
ଅନ୍ତ ଶୀତଳେ ସେ ଶଶୀ । ଅଙ୍ଗନା ଗୋ ! ।୧୦।

ଆଣିମି କନ୍ୟା ଲଲାମ,
ଲୋଡ଼ା କରଅଛୁ ଗୃହୁ ଅଧାମ ଯେ
ଅଧିକ ସ୍ୱାଦୁର ଧାମ । ଅଙ୍ଗନା ଗୋ ! ॥ ୧୧ ॥

ଅନଫା ଯୋଗ ଜାତକ,
ବଫାକ୍ସ ପାଞ୍ଚିଲ୍ ମନେ ବବେକ ଯେ
ଆଶ୍ଚର୍ଯ୍ୟ ତୋ ପୁରେ ନକ । ଅଙ୍ଗନା ଗୋ ! ।୧୨।

ଅବଳା ତୁ ମୋ ନାୟିକା,
ଲାଳସା ରସାଳ ସାର ଗୋଟିକା ଯେ
ଆସି ବଢ଼ ଘଟିକା । ଅଙ୍ଗନା ଗୋ ! ॥ ୧୩ ॥

ଆମଣ୍ଡନ ଛନ ପୁଷ୍ପ
ଭାବନା କରନ୍ତୁ ମନେ ତପୁର ଯେ
ଆଳୟରେ ଅଛୁ ପୂର । ଅଙ୍ଗନା ଗୋ ॥ ୧୪ ।

ଅବଳା ନ କନ୍ତୁ ଫେଡ଼,
ଚନ୍ତା କରଅଛୁ ସର ପାପୁଡ଼ ଯେ
ଅଣାଇମି ଆଜ ଲୋଡ଼ । ଅଙ୍ଗନା ଗୋ ! ॥ ୧୫ ।

ଆକଳ୍ପ ତୋ ଧୀର ବୁଡ଼ା,
ଗାଞ୍ଚ କରଅଛୁ ସର ଖରଡ଼ା ଯେ
ଅଛୁ ରମ୍ଭା ଦଳ ପୁଡ଼ା । ଅଙ୍ଗନା ଗୋ ! । ୧୬ ।

ଅନ୍ତେ ଦରଷ ସଂଗ୍ରହ,
ସର ବଦ୍ଧୁଳକୁ କନ୍ତୁ ବିଗ୍ରହ ଯେ
ଅଛୁ ସଖୀରେ ପଗ୍ରହ । ଅଙ୍ଗନା ଗୋ ! । ୧୭ ।

ଅପାଙ୍ଗ ତୋ କାମ ଖଣ୍ଡା,
ମନେ କରୁଅଛୁ ସ୍ନେହ ସର ମଣ୍ଡା ଯେ
ଅଛୁ ପର କେତେ ଗଣ୍ଡା । ଅଙ୍ଗନା ଗୋ ! ॥ ୧୮ ॥

ଅବଳା ବଳ ବୁଝିଲି,
ମାନସରେ କ୍ରୀଡ଼ା କରଇ ଝିଲ୍ଲି ଯେ
ଅବଧି ଆଣିମି ଢାଲି । ଅଙ୍ଗନା ଗୋ ! ॥ ୧୯ ॥

ଅଧିକରେ ହୋଇ ପ୍ରେମୀ,
ଇଚ୍ଛା କରୁଅଛୁ ସଜ ଝୁଲିମି ଯେ
ଅଙ୍ଗ ମଧ୍ୟରେ ଆଣିମି । ଅଙ୍ଗନା ଗୋ ! ॥ ୨୦ ॥

ଅନ୍ତରେ ନ ରଖ ବ୍ରୀଡ଼ା,
ଇଚ୍ଛା କରୁଅଛୁ ପର ତାଗଡ଼ା ଯେ
ଅନ୍ୟ ଭାବ ପଦ୍ମ ଲେଡ଼ା । ଅଙ୍ଗନା ଗୋ ! ॥ ୨୧ ॥

ଅଚଳୁର ରସ ଫେଡ଼ି,
ତୋ ମନ ହରଇ ଛେଳା ମୁଗୁଡ଼ି ଯେ
ଅବଶ୍ୟ ଦେବ ସଜାଡ଼ି । ଅଙ୍ଗନା ଗୋ ! ॥ ୨୨ ॥

ଆମ୍ବୁଦୁ ରସ ଜାତକ,
ଅଧିକ ଲୀଳାରେ ପାରିଜାତକ ଯେ
ଆକାଙ୍କ୍ଷା ଭାରଜାତକ । ଅଙ୍ଗନା ଗୋ ॥ ୨୩ ॥

ଅପଦୃଶ୍ୟ ରସାଳସି,
ରୋଧୂମ ଫେଣିରେ ମତ୍ତ ଢଳସି ଯେ
ଆଣିମି ଅଗାରେ ପଶି । ଅଙ୍ଗନା ଗୋ ! ॥ ୨୪ ॥

ଅପୂର୍ବ ରମ୍ଭା ଜଘନା,
ରମ୍ଭାଳ ଦଧିକ କରୁ ଶୋଚନା ଯେ
ଆଶୁ କରୁଛୁ ରଚନା । ଅଙ୍ଗନା ଗୋ ! ॥ ୨୫ ॥

ଅଟଇ ମନୋହର ସେ,
ଅମୃତ ସାଗରେ ତୋ ମନ ରସେ ଯେ
ଅଧିକରେ ତୃଷ୍ଣା ନାଶେ । ଅଙ୍ଗନା ଗୋ ॥ ୨୬ ॥

ଅଖିଳ ମନ ମୋହନା;
ମୋହନ ଭେଗକୁ ଜଳୁ ସ୍ୱଜନା ଯେ
ଅଚଳେ ଦେବ ନୟନା । ଅଙ୍ଗନା ଗୋ ! ॥୨୭॥

ଅମୂଲ୍ୟ ମୋତି ଦଶନା,
ମୋତିଚୁର ପାଇଁ ରୁଷି ବସନା ଯେ
ଆଜ ଗୃଖିବ ରସନା । ଅଙ୍ଗନା ଗୋ ! ॥୨୮॥

ଆଲୋକ ଧଇର୍ଯ୍ୟ ଚୂର,
ଆଦର କରନ୍ତୁ ଖଇର ଚୂର୍ଣ୍ଣ ଯେ
ଅଛି ମନ୍ଦରେ ପ୍ରଚୁର । ଅଙ୍ଗନା ଗୋ ! ॥୨୯॥

ଅତନୁ ଦେଉ ଉଠାଇ,
ଅଛି ତବ ମନେ ଗୃହ୍ଣ ମିଠାଇ ଯେ
ଅବଧି ଦେବ ପଠାଇ । ଅଙ୍ଗନା ଗୋ ! ॥୩୦॥

ଅମୃତ ଅଧରେ ଗୃହ୍ଣ,
ମଧୁ ବନ ରଙ୍ଗେ ମୁଖ ପ୍ରଗୃହ୍ଣ ଯେ
ଅମୃତ କେଳି ବଗୃହ୍ଣ । ଅଙ୍ଗନା ଗୋ ! ॥୩୧॥

ଅଧୋକ୍ଷଜ ଲୀଳା ରସ,
ଶ୍ରୀ ଶ୍ୟାମସୁନ୍ଦର ଦେବର ଭାଷ ଯେ,
ଅବରତ ମନେ ଘୋଷ । କୋବଦେ ହେ ! ॥୩୨॥

ଆଦ୍ୟେ ଶ୍ରୀ ଯମୁନା ସୂତ୍ର,
ନନ୍ଦ ପୁରେ ରାଧା ପାକ ରଚନ୍ତି ଯେ
ଅପ୍ରୂପ ପ୍ରକଳ୍ପ ହନ୍ତ । କୋବଦେ ହେ ! ॥୩୩॥

ଅଷ୍ଟ ପୋଷ୍କର ବର୍ଣ୍ଣନେ,
ରାଧା କୃଷ୍ଣ ବେନ ବଚ୍ଛେଦ ବନେ ଯେ
ଆଶ୍ଳେଷ ଶ୍ଳେଷ ବଚନେ । କୋବଦେ ହେ ! ॥୩୪॥

ଆଦ୍ୟ ବୋଲି କୁଞ୍ଜ ରେତ,
ଦ୍ୱିଷ୍ଟପ୍ରେ କାଳୀପ୍ନ ଦର୍ପକୁ ହରି ଯେ,
ଅନନ୍ତ ଗୋପଙ୍କୁ ତାରି । କୋବଦେ ହେ ॥୩୫॥

ଅଳଙ୍କାର ଆଦ୍ୟ ଗ୍ରନ୍ଥ,
ଦ୍ୱିଷ୍ଟପ୍ନେ ଶ୍ୱମନ୍ତ କନ୍ୟା ବରଦ ଯେ
ଅଷ୍ଟ ସଗେ ଚଉପଦ । କୋବଦେ ହେ ! ॥ ୩୬ ॥

ଅଚ୍ଛୁ ଚଉତିଶା ରସ,
ଶିଶିରେ ବସନ୍ତ ପଞ୍ଚମୀ ବେଶ ଯେ
ଅମ୍ବିକା ବନ ପ୍ରବେଶ । କୋବିଦେ ହେ ! । ୩୭ ।

ଅଷ୍ଟ ଢଗରେ ବିଶେଷ,
ପୀଠମର୍ଦ୍ଦ ଆଦି ବାଗ ବିଳାସ ଯେ
ଅଷ୍ଟମେ ଭୋଜ ମନାସ । କୋବଦେ ହେ ! । ୩୮ ।

ଇତି ଶ୍ରୀ ଅନୁରାଗ କଳ୍ପଲତା ବସ୍ତୁ ପ୍ରବନ୍ଧ ସମ୍ପୂର୍ଣ୍ଣ ।

॥ ଶ୍ରୀମଦ୍ ଗୌରଚନ୍ଦ୍ରାୟ ନମଃ ॥



# ସପ୍ତମ ସ୍ତବକ

— ପ୍ରଥମ କୁସୁମ —

## ସ୍ତୁତି ପ୍ରକାଶ ଲେଖନ

।। ରାଗ—ମଙ୍ଗଳ ଗୁର୍ଜ୍ଜରୀ ।।*

(ଦ୍ୱଳଦ ଘେନଣ ଚନ୍ଦ୍ର ଅନ୍ତଃପୁର ନାରୀ — ଯେ ବାଣୀରେ

ଶ୍ଳେଷ—

ଅଜସ୍ର ନମାମି ଈଡ଼୍ୟ ଦେବୀ ଭାର୍ଗବୀରେ
ଅଜ ମଣ୍ଡଳ ସୁମନ ମାଳିକା ଛନ୍ଦରେ ।। ୧ ।।

ଆଳସ୍ୟ କମଳ ଧୀରେ ଗାତରେ ଶୋଭନ
ଅମ୍ବୁରୁହ ଧର ହର ମୁଦ ବର୍ଦ୍ଧନ ।। ୨ ।।

ଆଶ୍ୱ ଆଶ୍ରିତ ଜନର କଦନ ଛେଦନ
ଅଗାଧ ଅପରିଶ୍ରାନ୍ତ ମହିମା ବଦନ ।। ୩ ।।

ଅଧିକେ ବାରଣ ଇନ୍ଦ୍ରେ ହୋଇ ସେବମାସୁ
ଅଷ୍ଟାପଦ କଟକ ଭେଦନେ ରମଣୀସୁ ।। ୪ ।।

ଅଖିଳ ଜନ ବନ୍ଦନ୍ତୁ ରୂପ ବରଦରେ
ଅନଘା ଯେ ପରିଶୁଦ୍ଧା କ ସ୍ତୁତି ତତ୍ତ୍ୱରେ ।। ୫ ।।

---

ରାଗ ଲକ୍ଷଣମ୍ ଶ୍ଳୋକଃ—
ଶ୍ୟାମା ସୁକେଶୀ ମଲୟଦ୍ରୁମାଣାଂ ମୃଦୁଲ୍ଲସତ୍ପଲ୍ଲବତଳ୍ପମଧ୍ୟେ ।
ଶ୍ରୀତେ ସ୍ୱରାଣାଂ ଦଧତୀ ବକ୍ଷ୍ରଗଂ ତନ୍ୱୀମୁଖୀ ମଙ୍ଗଳଗୁର୍ଜ୍ଜରୀୟଂ ।।
(ଇତି ବୃହତ୍ସଙ୍ଗୀତକୌମୁଦ୍ୟାଂ) ।।ପୋଥିପାଠ।।

ଅଷ୍ଟୁଣ୍ଡବାଦରେ ନୋହେ ମହିମା ଗୋଚର
ଅଳ୍ପ ବର୍ଣ୍ଣିମାରେ ଶକ୍ୟ ହେବ କ ମୋହର ।୭।
ଅତରେ ବଗୁଣ ହୋଏ ଶୀଳାଦ ଯେ ଗୁଣ
ଅଷ୍ଟ ଯାହା ବକ୍ଷସ୍ଥରେ ବମୁଖୀ ଆପଣ ॥ ୭ ॥*
ଅନୁରାଗ ପାଦର ଯେ ଗୁଣ ହୋଏ ଦୋଷ
ଆଳସ୍ୟ ଦୋଷ ହୁଅଇ ସ୍ୱରଭ ପ୍ରକାଶ ॥ ୮ ॥
ଅତ ଭୃଙ୍ଗଙ୍କ ପୁରୁଷ ଉଦ୍ୟମୀ ଉତ୍ତମ
ଅଙ୍ଗ ଗଣନାରେ ଧୀର ମହତ ଅଧମ ॥ ୯ ॥
ଅନୁରାଗ ନଗରରେ ସ୍ୱେଚ୍ଛର ଅନେକ
ଆଶ୍ଚର୍ଯ୍ୟକୁ ଦେଖାଇ ପାଳନା କର ଲୋକ ॥୧୦।
ଅବରତ ସେ ଦେବାର ଚରଣେ ବନନ୍ତ
ଅମୃତାଳପ୍ତା ଗଙ୍ଗାରେ ଆରମ୍ଭିଲ ଗ୍ରନ୍ଥ ।୧୧॥
ଆହେ କୃପା ଅକୂପାର ଦେବ ନାରାୟଣ
ଅନୁକମ୍ପା କର ପ୍ରେମ୍ବା ସହତ ଆପଣ । ୧୨ ॥+
ଅବରତ ହୃଦ ସ୍ଥାନ ସ୍ୱର୍ଦ୍ଧ୍ୱନ ହେବାରୁ
ଅମ୍ବରୁଦ ସଜମାତ ହୋଇଲ ନାଭରୁ ॥ ୧୩ ॥
ଆଳସ୍ୟ କରାଇ ତନ୍ୱୀ ମନୋରମା ରମା
ଅବଲୋକନରେ ହୃଷ୍ଟ ଅସମା ସୁଷମା । ୧୪ ।
ଅଭ୍ର ବପୁରେ ଚଞ୍ଚଳା ଚଞ୍ଚଳାର ଛବ
ଅରବନ୍ଦ ପଦ ମକରନ୍ଦ ସଙ୍ଗେ ଦେବୀ । ୧୫ ॥

---

ଶ୍ଳୋକ —
* ଯଦେବୀ ବୈଗୁଣ୍ୟମାସ୍ୱାଦ ଶୀଳାଦ୍ୟାସକଳାଗୁଣାଃ ।
ପରାଙ୍ମୁଖୀ ଜଗଦ୍ଧାତ୍ରୀ ଯସ୍ୟ ତ୍ୱଂ ବକ୍ଷବସ୍ତ୍ତଭ ॥ ୧ ॥
(ଇନ୍ଦ ବକ୍ଷୁ ସୂତ୍ରେ) ॥ ପୋଥପାଠ ॥

+ ଲକ୍ଷ୍ମୀ ସରସ୍ୱତୀ ଗଙ୍ଗାତପ୍ରୋଗ୍ଧର୍ଯାଃ ହରେଃ ମତା ।
(ଇନ୍ଦ ବ୍ରହ୍ମବୈବର୍ତ୍ତେ) ॥ ପୋଥପାଠ ॥

ଅବଲମ୍ବ କର ହରିବାକୁ ଭବ ଦୁଃଖ
ଅନ୍ତରେ ଗଲି ଶରଣ ଅନୁଗ୍ରହ ରଖ ॥ ୧୬ ॥

ଶୃଙ୍ଗାର ଉଦ୍ଦୀପନ—

ଅଥ ଉଦ୍ଦୀପନ ଭାବ କରିବ ପ୍ରକାଶ
ଅତି ରମ୍ୟ ବୃନ୍ଦାବନ କୁସୁମେ ସୁବେଶ ॥ ୧୭ ।

ଅଳି ଝଙ୍କାର ଚୂମ୍ବରେ ବିକାର ବର୍ଦ୍ଧନ
ଅତନୁ ଗୁଣ ଟଙ୍କାର ଶଂକା ରହେ ମନ । ୧୮ ॥

ଅତିକାଷ୍ଟେ ଜାତ ହୋଇ ହସେ ଛୁରିଅନା
ଅଳି ବୋଲେ ଚନ୍ଦ୍ରଣକୁ କାମ ଛୁଷଅନା । ୧୯ ।

ଅତି ମୁକ୍ତ ଧନୁ ମୁକ୍ତ ଆଶୁଗର ପ୍ରାପ୍ତେ
ଆମୋଦରେ ହୃଦରେ ଭେଦନ୍ତେ ଭସ୍ମ ଦସ୍ତେ । ୨୦ ।

ଅରଣ୍ୟ ପ୍ରିୟ ଗଣକ ବୋଲେ କୁହୁ କୁହୁ
ଅନଙ୍ଗ ଅନ୍ଧାର ନେଟେ ଘୋଟେ କହୁ କହୁ । ୨୧ ।

ଅନିଳ ମଳୟ ଅଚଳରୁ ଡେଇଁପଡ଼ି
ଅତି ମନ୍ଦେ ଆସେ ରେବା ନଦୀ ଜଳେ ବୁଡ଼ି । ୨୨ ।

ଅଙ୍ଗୁ ଚନ୍ଦନ ସୁବାସ ଜାଣି ପୁରାତନ
ଆତୁରେ ହରଇ ପୁଷ୍ପବନ୍ତି ବାସ ପୁନ ॥ ୨୩ ॥

ଆଲେକ କାନ୍ତ ବିକଚ ମୁଖ ପଦ୍ମକାନ୍ତ
ଅର୍ଘ୍ୟ ମକରନ୍ଦ ହୃଷ୍ଟ ସଂଗୃହ ପ୍ରେକାନ୍ତ । ୨୪ ।

ଅର୍କଜା ପୁଳିନ ବନ କୁଞ୍ଜ ବ୍ୟବସ୍ଥିତ
ଆମୋଦିତ ପୁଷ୍ପ ତଳୁ ଅନଳୁ ବନ୍ଦିତ ॥ ୨୫ ॥

ଅରୁଣ ପଲ୍ଲବ ଦ୍ରବ୍ୟ ସୁରଙ୍ଗ ବିତାନ
ଅଟେ ମୋତି ଝାଲର କଳିକା ବିଦ୍ୟମାନ । ୨୬ ।

ଆମନ୍ତ୍ରିନ କୁସୁମଂ ତୋରଣ ଯେ ପୃଷ୍ଟିତ
ଅତିର ସେ ପୁଷ୍ପରସେ ହେବାର ସିଞ୍ଚିତ ॥ ୨୭ ॥

---

୧ । (କ) କୂମ'

ଆକଲ୍ପରେ ନବ ବରାଙ୍ଗନା ଶୋଭମାପୁ
ଅନଙ୍ଗ ଜପୁ ପଞ୍ଚସ୍ୱ ବେଣୀ ରଚମାପୁ ।। ୨୮ ।।

ଅନୃତ ନୂହଇ ଝୁମ୍ପା ବାନା ଥାଇ ବାନ୍ଧ
ଅତନୁ ମୁଦ୍‌ଗର ଖୋସା କେତେବେଳେ ସିନ୍ଧି ।। ୨୯ ।

ଅନ୍ତ ରହସ୍ୟ ବଶରେ ଚୂଡ଼ାକୁ ନିର୍ମାଣି
ଅକ୍ଷି ମୀନ ଧରେ ମାର ମର୍କଟକୁ ବେଣୀ । ୩୦ ।

ଆବେଷ୍ଟିତ ସେବତ୍ତି ମାନଅଁ ଫୁଲମାଳ
ଆଲମ୍ବିତ ଝୁମ୍ପି ଝରା ଦଶଇ ମଞ୍ଜୁଳ ।। ୩୧ ।।

ଆଙ୍ଗ ମାଙ୍ଗ ଭାଙ୍ଗ ସାଜ ତିଳକ ରଚନା
ଅଞ୍ଜନ ଲଞ୍ଜି କୁନ୍ତରେ ହରଣ ଲୋଚନା । ୩୨ ।।

ଅଧର ରଙ୍ଗ ତାମ୍ବୁଳେ ଶୋଭେ ମନ୍ଦ ହାସ
ଅମୃତାଂଶୁ ନନ୍ଦେ ମୁଖ ଝଳର ପ୍ରକାଶ । ୩୩ ।।

ଆଲାପ କଣ୍ଠ ହଲଇ ମୁଖ ଶଶଧର
ଆଧୂତ ଝୁମ୍ପି ଝଲକା ଅଳକା ଦେଶର । ୩୪ ।

ଅସିତ ସୁଚ୍ଛୀନ ସାଢ଼ି ଧଡ଼ି ଫୁଲ୍ଲି ପଡ଼ି
ଅସ୍ୟ ଜରି ଲତା ଅଙ୍ଗେ ଯାଇଥାଇ ଜଡ଼ି । ୩୫ ।

ଅତରେ ମାର୍ଜନା କରି ବୃନ୍ତ ଅବସୂବ
ଅତନୁ ପଟ୍ଟହ ପାଦ ନୂପୁରର ରବ । ୩୬ ।।

ଅଚ୍ୟୁତର ନଟବର ବେଶ ହରେ ଚିତ୍ତ
ଅଙ୍ଗ ନୀଳ ଜଳଦରେ ଚନ୍ଦନ ଚର୍ଚ୍ଚିତ ।। ୩୭ ।

ଅବତଂସ ଯେ ଚନ୍ଦ୍ରକ ଚୂଳ ବନମାଳ
ଆଲମ୍ବିତ ଗୁଞ୍ଜାହାର ବସନ୍ତ ଦୁକୂଳ ।। ୩୮ ।।

ଅରୁଣ ଅଧରେ ହାସ କଳବଂଶୀ ଗୀତ
ଅଷ୍ଟଦଶ ଚିହ୍ନ ପଦ ଅବନୀ ଅଙ୍କିତ ।। ୩୯ ।।

ଅଙ୍ଗ ଭଙ୍ଗୀରେ ବୟସ ମେଳରେ ତାଣ୍ଡବ
ଆପେ ଗୋ ଦୋହନେ କ୍ଷୀର ବନ୍ଦୁ ଅବପୂବ । ୪୦ ।

ଅଙ୍ଗ ସୌରଭ ଅସ୍ତ୍ରପ ବନାଶାଦ ଗୁଣ
ଅଧିକେ ଧୀର ଲଳିତ ନାୟକ ଲକ୍ଷଣ ॥ ୪୧ ॥

ଅସ୍ତମିତ ଦ୍ରାଗଙ୍ଗନା ସଙ୍ଗତ ପ୍ରକାଶ
ଅବଲୋକ ତାରକାର ସୁ ଝଲକ ହାସ ॥ ୪୨ ॥

ଅମୃତ କର କରରେ କୁମୁଦ ରମାରେ
ଆଲିଙ୍ଗନ କରୁ ହସେ ଛୁଟି ସୁଷମାରେ ॥ ୪୩ ॥

ଅତି ଘାଗ୍ରିମୟ ନଭେ ହରିଣ ଲାଞ୍ଛନ
ଅରଣ୍ୟ କୁଞ୍ଜ ଧବଳ ଛବିରେ ଶୋଭନ ॥ ୪୪ ॥

ଆଶବ ପାନରେ ସୁଖ ପ୍ରଣବ ମାନସ
ଆଗତ ଗତରେ ଦୁତ କହ ପ୍ରେମ ଭାଷ ॥ ୪୫ ॥

ଅଥ ଶ୍ରୀରାଧାର ଯେ ସ୍ୱପକ୍ଷ ପ୍ରତିପକ୍ଷ
ଅଟନ୍ତି ତଟସ୍ଥ ପୁନ କେ ସୁହୃଦ ପକ୍ଷ ॥ ୪୬ ॥*

ଅଷ୍ଟସଖୀ ଯେ ପରମ ପ୍ରେଷ୍ଠ ସେ ସ୍ୱପକ୍ଷେ
ଅଟେ ଶ୍ୟାମଳାଦ ପାଳି ପ୍ରେ ସୁହୃଦ ପକ୍ଷ ॥ ୪୭ ॥

ଆଖ୍ୟାତ ତଟସ୍ଥ ମାତ୍ର ଅଟେ ଭଦ୍ରାବାଳୀ
ଆପଣ ଯେ ପ୍ରତିପକ୍ଷ ଜାଣ ଚନ୍ଦ୍ରାବଳୀ ॥ ୪୮ ॥

ଅଥ ସୁ ରମଣୀୟ ଯେ ପ୍ରେ ରମଣୀତୟ
ଆଖ୍ୟାତ କରିବ ଶୁଣ ଯୌବନ ବୟସ ॥ ୪୯ ॥

ଅଛନ୍ତି କଳାବତ୍ୟାଦ ସ୍ଥିତ ବୟଃସନ୍ଧି
ଅଭିନବଂ ଯୌବନରେ ଧନ୍ୟାଦ ଯେ ବଧି ॥ ୫୦ ॥

ଅତି ରମ୍ୟ ଶ୍ରୀରାଧା ଦ୍ରବ୍ୟକୁ ଯୌବନରେ
ଅଛନ୍ତି ଚନ୍ଦ୍ରାବଲ୍ୟାଦ ଯୌବନ ପୂର୍ଣ୍ଣରେ ॥ ୫୧ ॥

---

* ସ୍ୟାତ୍ ସ୍ୱପକ୍ଷ ସୁହୃତ୍ପକ୍ଷ ତଟସ୍ଥ ପ୍ରତିପକ୍ଷକଃ ।
ବୟସ୍ୟାଷ୍ଟଃଶ୍ୟାମଳାଦ୍ୟୌ ଭଦ୍ରା ଚନ୍ଦ୍ରାବଳୀ କ୍ରମାତ୍ ॥୧॥
(ଇତି ଉଜ୍ଜ୍ୱଳନୀଳମଣୌ) ॥ ପୋଥିପାଠ ॥

୧ । (କ) ଅଭିନବ୍ୟ

ଆଦ୍ୟ ସ୍ତବକରେ ରାଧା ଦେବୀଙ୍କର ରତି
ଅନୁରାଗ ଭାବ ରାଗ କରିଥାଇ ଖ୍ୟାତି ॥ ୫୨ ॥

ଅଟଇ ସମର୍ଥା ରତି କୃଷ୍ଣ ସୁଖେ ସୁଖୀ
ଅଣୁମାତ୍ର ସେ ସମ୍ବନ୍ଧ ବିନା ମହାଦୁଃଖୀ ॥ ୫୩ ॥

ଅଧିକରେ କୃଷ୍ଣ ସୁଖ ତାତପର୍ଯ୍ୟବନ୍ତି
ଅଟେ ମଧୁ ସ୍ନେହ ବର ମଞ୍ଜିଷ୍ଠାରେ ହତି ॥ ୫୪ ॥

ଅଧିରୂଢ ରୂଢ ଆଦ ନ କଲି ଉଚିତ
ଅତି ଗ୍ରନ୍ଥ ବିସ୍ତର ଭୟରୁଁ କରି ଚିତ୍ତ ॥ ୫୫ ॥

ଆଲୋକ ଉଜ୍ଜ୍ୱଳ ନୀଳମଣି ମାଧବାଢ
ଅଶେଷରେ ବୁଝିବ ପଣ୍ଡିତ ପ୍ରେମବାଦୀ ॥ ୫୬ ॥

ଅଭିନବ ଉତ୍ପଳ କୋମଳ ବପୁ ସାଧୁ
ଆସ୍ୱାସ ଚକୋର ନେତ୍ର ସୁଖକାରୀ ବିଧୁ ॥ ୫୭ ॥

ଆଶ୍ରୟ ସେହି ଦେବର ଚରଣ ରାଜୀବ
ଅନ୍ତରେ ଶ୍ୟାମସୁନ୍ଦର ଦେବର ରାଜବ ॥ ୫୮ ॥



— ଦ୍ୱିତୀୟ କୁସୁମ —

# ଆଠ ପୋଇ – ବସନ୍ତ ଋତୁ

( ଏକ )

ଆସି ପରବେଶ ମଧୁ କାଳ ହେଳା ମଧୁମତ୍ତରେ ବାଉଳ ହୋଇବାତ ।
ଅତି ଭୃଙ୍ଗ ସ୍ଥୂଳ ଶିଳି ଶ୍ରୀଖଣ୍ଡ ଅଚଳ ଚଞ୍ଚଳରେ ଡେଇଁ ମନ୍ଦାପାତ ॥ ୧ ॥

ଅଣ୍ଡି ଭ୍ରଜ ନନ୍ଦନନ୍ତ କାବେଶ ବଢନ୍ତି ସ୍ରୋତରେ ମଳି ଆସଇ ଧୀରେ ।
ଅଣି ଋତୁ ଯେ ଅଂଗମ ବମାକୁ ସୁନେମ ପୁଷ୍ପବର୍ଣ୍ଣ କଳା ଔଷଧିରେ ॥ ୨ ॥

ଅଧ୍ୱେ ଣେକ କୋକିଳଠାରୁ ବାର୍ତ୍ତାକଳ ଶୁଣି ସେ ଚନ୍ଦନ କ୍ଷୀଣ ବାସେ
ଅତି ଆତୁରତା ମତ ହର ପୁଷ୍ପବର୍ଣ୍ଣ ସୁବାସ ବେଶରେ ଭ୍ରମି ଆସେ ॥ ୩ ॥

ଅବଲେକ ଉଦଭୂତ ହାସକୁ ସଂଭୂତ ଦର ମୁକୁଳରେ ମୁଦ୍ଧା ହସେ
ଅଙ୍ଗ ମୁକୁଳରେ ମଧା ପ୍ରଲେପ ଭ୍ରସିଦ୍ଧା ଅତି ସ୍ଫୁଟ ହାସ ପରକାଶେ ॥ ୪ ॥

ଅପହୃତ ବାସ ମଧୁ ଯୋଗରେ ସେ ସାଧୁ ଅଧୃତ ବାତେ ଅସ୍ଥିର ପଦ ।
ଅଳିକାଳ ବାଣୀ ପ୍ରେମେ ମଧୁ ପିଇ ଭ୍ରମେ ଝଙ୍କାର ନୋହେ ଅନର୍ଥ ପଦ ॥ ୫ ॥

ଅଭିନବ ଦଳ ତଳପରେ କେ ମଞ୍ଜୁଳ ବାସ ମଲ୍ଲୀ ପୁଷ୍ପ ଭସେ ବେଶ ।
ଆଗମନ କୁଞ୍ଜ ଭୃଙ୍ଗର କରଇ ବସ୍ତର ଉତ୍କଣ୍ଠିତା ଭାବେ ଗୃହେଁ ବଶ ॥ ୬ ॥

ଅଙ୍ଗ ଅନଳେ କମ୍ପିତ କେ ଖଣ୍ଡିତା ବତ ପରାଗ ଅଙ୍କିତ ବପୁ ଦେଖି
ଅତି ଗୁଞ୍ଜନ ଛଳରେ ଗୃହେଁ ମଞ୍ଜୁଳରେ ବୋଧି ମାନ ବ୍ୟାଧି ହତେ ସୁଖୀ ॥ ୭ ॥

ଅଚ୍ଛୁ ଆଚର ଉଲଠ ରତି ମଧୁଲଠ ତଳେ କେ ଫୁଟି ଉପରେ ବଶେ ।
ଅଟେ ଦୋଳିତ ଆଶୁରେ ଚଢି ରି ପରରେ ଶ୍ରୀ ଶ୍ୟାମସୁନ୍ଦର ଦେବ ଭାଷେ ॥ ୮ ॥

## — ଗୀତ —

( ଆଷାଢ ଶୁକ୍ଳ ବାଣୀରେ )

ଅନଙ୍ଗ ବସନ୍ତ ସଖା ସାକରେ
ଅନ୍ତେ ବିଶ୍ୱ ଜୟ ଭରସା କରେ
ଆମ୍ର ସପ୍ତଚ୍ଛାଦ ବାଣ ପ୍ରକରେ
ଅଶୋକ ଅମ୍ବରୁହ କ୍ଷିପ୍ର କରେ ।
ଆଣି ଦର୍ପକରେ,
ଅର୍ପିତ କରିବାରୁ ଦର୍ପ କରେ ॥ ୧ ॥

ଆତପତ୍ର ରୁଚ ପୁଣ୍ଡରୀକରେ
ଆଖ୍ୟା ଶିରୀଷ ଗୃମରେ ନକରେ
ଆନ୍ଦୋଳନ ହୋଇ୍ଲେ ଚନ୍ଦ୍ର କିଂକରେ
ଅତୁଳା କେତକୀ ଶବଳା କରେ ।
ଆସି କିଂଶୁକରେ,
ଅଭିନବ ଦଳ ମେଖଳା କରେ ॥ ୨ ॥

---

( ଦୁଇ )

ଶ୍ଳେଷ—
ଅଛି ମନ୍ତ୍ରି ନୃପେଶ୍ୱର ଦନ୍ତି ବାସେ ମାର ଚ୍ୟୁମଗଣ କାନ୍ତେ ବୀରୁ ବେଶ
ଆଶୀବିଷ ବିଷରେ ଯେ ଆଶୁଗ ବିରଜେ ବିରହୀ ବିନାଶେ ପରବେଶ ॥ ୧ ॥
ଅଗ ମାତଙ୍ଗ ପ୍ରକରେ ଢକ୍କା ସ୍ତବକରେ ଭୃଙ୍ଗନାଦ ବାଦ୍ୟ ସ୍ଥିରେ ବେଗ ।
ଆଖ୍ୟା ପ୍ରିୟ ଯେ ବନରେ ଭେରୀ ପଞ୍ଚସ୍ୱରେ ବାତନ ରଚ କର୍ମାଟପୁ ହଗ ॥ ୨ ॥
ଆପେ ଚଢ଼ି ମୀନ ଯାନ ଅତନୁ ଶୋଭନ ଆଶୁଗ ସଗୁଣ ରୂପପାଣି
ଆଦ୍ୟ ଅଭ୍ରମଧ୍ୟେ ପୂନ କରି ସାରପାନ ତରୁଣଙ୍କ ଦଶା ନୋହେ ଜାଣି ॥ ୩ ॥
ଆଳି ଆଶବରେ ମତ୍ତ ତଥା ପରଭୃତ ପୁଷ୍ପ ମଧୁ ଯୋଗ ସଖା ମଧୁ
ଆସି ମନ୍ଦ ସଦା ଗତ ବାତୁଳ ଯେ ଖ୍ୟାତ ବାନ୍ଧୁଣି ସେବନ ମିହ ବିଧୁ ॥ ୪ ॥

ଅତ ନୋହିଲ ଅଛନ୍ତି ମହାଷର ହତ ବରହ୍ମି ବନାଶ ସମୂଳରେ
ଅଛୁ ରାଜ୍ୟଙ୍କ ସମୂର୍ଦ୍ଧ ସ୍ୱାମୀ ଚେଜ ବୃଦ୍ଧ ଅମାତ୍ୟ ସୁହୃଦ ପ୍ରବଳରେ ।। ୫ ।।
ଅଥ କୋଷ ଚତୁଃଷଷ୍ଟି କଳା ବମ୍ବଓଷ୍ଟୀ କୂଟ ଦୁର୍ଗ ରାଷ୍ଟ୍ର ପୁର ଭନ
ଅଟେ ବଳ ଗ୍ରାମଗଣ ଭନ ଶକ୍ତି ଜାଣ ପ୍ରଭବ ଉତ୍ସାହ ମନ୍ତ୍ର ଯେନ ।। ୬ ।।
ଅତ ଅମାନଆ ଯୋଗୀ ସକଳ ବଯୋଗୀ ହଗ ବଳେ ଦେଖିଲ ଭେଦର
ଅମ୍ବୁଜହ ହୃଦେ ହର ଆସନକୁ କରିଥିଲେ କରାଇଲେ ଯୋଗୀ ଦୂର ।। ୭ ।।
ଅଣି ଅବଳା ବସାଇ ମାନସ ରସାଇ ହରଣାକ୍ଷୀ ହେଲ ହର ବାଣୀ
ଅଙ୍ଗେ ବଭୂତର ଛଳ ଶ୍ରୀଖଣ୍ଡ ମଞ୍ଜୁଳ ଶ୍ରୀ ଶ୍ୟାମସୁନ୍ଦର ଦେବ ଭଣି ।। ୮ ।।

— ଗୀତ —

(ଆଷାଢ ଶୁକ୍ଳ ବାଣୀ)

ଆଲୋକ ବଯୋଗୀ ବଦେଶ ଛୁଡ଼ି
ଆସନ୍ତି ରମା ଧ୍ୟାନେ ପଥ ଦୃଢ଼ି
ଆକଣ୍ଠଧାର ଭବ ଅକୂପାର
ଅନ୍ତରେ ପଥିକ ନ ପାଇ ପାର ।
ଅଶୋକ କାଣ୍ଡରେ,
ଆସୁ ଆସୁ ପଡ଼ି ପଳାଇ ଡରେ ।୧।।
ଅପି କଂଶୁକକୁ ଗୃହ୍ବଁ ବସିଛି
ଅରୁଣ ହଶେ ପ୍ରେ କାମୀ ରକତ
ଆମ୍ରକାଣ୍ଡ ଦେଖି ହୃଦ କରନ୍ତି
ଅଙ୍ଗନା ବର କ ଥିବ ବରନ୍ତ ।
ଅବଧି ବାସର,
ଉତ୍ତରମିଲେ ଭେଦବ ପ୍ରେ ଶର ।୨।।

---

୧ । (କ) ପଦ ଦୃଢ଼ି

( ଭଜନ )

ଆସୁଁ କେ ଦେଖେ ମାର୍ଗରେ ଚର୍ଚ୍ଚର ରଙ୍ଗରେ ଖେଳ ରଚେ ଅତି ମନୋହାରୀ
ଅନ୍ତେ ସେହି ରାଗ ଜଡ଼େ ଗତ କରେ ବୃନ୍ଦେ ପ୍ରିୟା ଖେଳ ସଙ୍ଗ ଇଚ୍ଛା କରି ॥ ୧ ॥

ଅରେ ନାଗେଶ୍ୱର କଳ ମଦନ କାହୁଳି ଦେଖି କେ ଚମକ କରେ ରତି
ଆଲୋଚନା ପୂର୍ବପରି ପୟୋଧର ଧରିଥିଲା ହୋଇଥିବ ପୁଷ୍ପବତୀ ॥ ୨ ॥

ଅଟେ ତୁଙ୍ଗ ଧରାଧର କାହା ପୟୋଧର ଆରୋହଣରୁ ମନ୍ଥର ଗଳି
ଅଷ୍ଟ ପଦ୍ମ ଅଶ୍ରୁଧାର ଦେଇଥିବ ପଦ ଲଦାଇ ଅଙ୍ଗୀ ତ ନଖ ଭଳି ॥ ୩ ॥

ଆସିଥିଲି ଯେ ନର୍ମଣି ରାମା ରମ୍ୟ ବେଣୀ ଫିଟାଇ ନ ଥିବ ଟମା ପ୍ରେମରେ
ଅବଲୋକ ମାନବତୀ ହେବାର ଯୁବତୀ ଲେଖିଥିଲି ବନ୍ଧ କରମରେ ॥ ୪ ॥

ଅନୁଭୂତ ଭୃତପତି ପରଶର ଖାତ କୁଚ ଶମ୍ଭୁ ଛୁଇଁଥିବ ଭ୍ରାନ୍ତି
ଆଜ୍ଞ ଥିବାରେ ଜୀବନ ନୋହିବ ଜୀବନ ଭବମୁଖୀ କେବେ ପରବାସୀ ॥ ୫ ॥

ଅବଧିର ଦିନ ଗଣି କୈବର ତରୁଣୀ ସୁବେଶ ସଜାଡ଼େ ଅନ୍ନଥାଳି
ଆଣି ଗଣକ ପଚାରି କେ ମନେ ବିଚାରି ବଳିଭୁକରେ ଦିଅଇ ବଳି ॥ ୬ ॥

ଆସି କଉଁ ପରବାସୀ ଅଙ୍କରେ ସୁକେଶୀ ଧରି ବୋଲେ ଥିଲୁ ଭାଗ୍ୟ ବଳେ
ଅନଙ୍ଗର ଚ୍ୟୁତ ଶରୁ ବଞ୍ଚିଲି ରମ୍ଭୋରୁ ଶୁଣି ସେ ବୃନ୍ଦେଁ ଲ ଅଶ୍ରୁ ଢୋଳେ ॥ ୭ ॥

ଆର୍ତ୍ତି ଆର୍ତ୍ତିବରେ କାହା ନାରୀ ଦେଖି ନାହା ଦୁଃଖେ ଭଙ୍ଗ ଭାଗ୍ୟ ପରଶଂସେ
ଅଭିନବ ଯୋଗ ସିଦ୍ଧି ଚେତିଲା କେ ବିଧି ଶ୍ରୀ ଶ୍ୟାମସୁନ୍ଦର ଦେବ ଭାଷେ ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀ )

ଅଳଙ୍କାରେ ଶଠ ନାୟକ ଧୃଷ୍ଟ
ଅନୁକୂଳ ଯେନ ଦକ୍ଷିଣ ପୃଷ୍ଠ
ଅଚ୍ୟୁତ ସେହିଁ ଲକ୍ଷଣାକୁ ଧରି
ଅମୃତ ମାଣ୍ଡରେ ରସିଲେ ନାରୀ

ଆପେ ଚନ୍ଦ୍ରାବଳୀ,
ଆଦରେ ମଙ୍ଗଳା ଶ୍ୟାମଳା ପାଳ ।୧।

ଅଟେ ଧୀର ମଧ୍ୟା ଅଧୀର ମଧ୍ୟା
ଅଖ୍ୟାତ କେହ୍ନ ଧୀରା ଧୀର ମଧ୍ୟା
ଅଛନ୍ତି ଧୀର ପ୍ରଗଲ୍ଭା କେ ରାମା
ଅଧୀର ପ୍ରଗଲ୍ଭା କେ ମନୋରମା
ଅଧିକରେ ତହିଁ,
ଅଟେ ଧୀରା ଧୀର ପ୍ରଗଲ୍ଭା କେହ୍ନ ।୨।।

---

( ଗୀତ )

ଶଠ ନାୟକ—
ଅଧୋକ୍ଷଜ ପୁଷ୍ପାୟୁଧ ବାଣେ ହୋଇ ବଦ୍ଧ ଯେକ ଗୋପୀରେ ସୁରତେ ରସି
ଅଙ୍ଗ ତାଳ ତା କୁଙ୍କୁମ ଅଙ୍କରେ ସୁଷମ ଯେକ ରମଣୀ ଭେଟିଲେ ଆସି ।୧।

ନାୟିକା ମଧ୍ୟା ଧୀରା—
ଅବଲୋକ ସେ କଥିତ କୃଷ୍ଣଚନ୍ଦ୍ର ସତ ପୂର୍ଣ୍ଣ ଉଦେ ହେଲାପରି ଦଶ
ଅଭିନବ ଯେ କୁଙ୍କୁମ ଅରୁଣ ସୁଷମ ଅଙ୍କିତ ହୋଇଛୁ ତନୁଦେଶ ।। ୨ ।।
ଆନନ୍ଦିତ କୁମୁଦିନୀ ପରି ରେ ମୋଦିନୀ ହେଲାକ ସମ୍ଭୋଗ ମୋହିତ
ଅନୁକମ୍ପାରୁ ବ୍ରସନ ଦେଲା ପରା ଘନ ପିରିତିରେ ନୋହି ଆଚ୍ଛାଦିତ ।। ୩ ।।

ଦକ୍ଷିଣ ନାୟକ—
ଅଚ୍ୟୁତ ଯେ ଯେକ ବାଳା ସଙ୍ଗେ ରତି କେଳି ଅନ୍ତେ ପୁନ ଯେକ ରାମା ପାଶେ
ଅନୁରାଗ ପ୍ରବଳରେ ଗୃହ ପଟଳରେ ତୋଷନ୍ତେ ନ ଯେନ ରୋଷେ ଭାଷେ ।। ୪ ।।

ନାୟିକା ମଧ୍ୟା ଅଧୀରା—
ଆସିବାକୁ କେହି ସତ ବଳିଲା ଅଚ୍ୟୁତ ସେ ପ୍ରେମ ରମଣୀ ପାଶ ଛାଡ଼ି
ଅବକାଶ ମୋର ଭାବ ହୃଦେ ନକ ଲବ ପୂରି ରହିଛୁ ତା ପ୍ରୀତି ଜଡ଼ି ।। ୫ ।।

ଆସ କରବ ସୁବେଶ ବୋଲ ଯାହା ଭାଷ ଭ୍ରମେ ସେ ରମଣୀ ପରା ମଣି
ଆଲେକରେ ବଣେ ବଣେ ସେହ୍ନ ରମା ବସେ ମୋ ବଷୟେ ହୋଇ ସୂର୍ଣ୍ଣମଣି । ୬ ।

ଧୃଷ୍ଟ ନାୟକ—

ଅଧରରେ ଅଞ୍ଜନକୁ ଦେଖି କେ ଶ୍ଳେଷକୁ କରବା ସ୍ୱହ୍ନି ବଲ୍ଲଭ ଭାଷେ
ଅନ୍ତେ କହିଁ ହେତୁ ଯେନ ହୋଇଛୁ ମାନିନୀ ମୁଖ ଟେକ ଅନା ସବରଷେ ॥ ୭ ॥

ଅଶ୍ରୁଜାଳରେ ପଙ୍କିଳ କରୁ ଗଣ୍ଡସ୍ଥଳ ବୋଧିଲେ ନ କହ ପ୍ରୀତି ବାଣୀ
ଅବସ୍ଥିତ ତୋହପର କେତେ ମୋ ସୁନ୍ଦରୀ ଶ୍ରୀ ଶ୍ୟାମସୁନ୍ଦର ଦେବ ଭଣି ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀ )

ନାୟିକା ମଧ୍ୟା ଧୀର ଅଧୀରା—

ଅବଳା କହେ ଅପରାଧୀ ମୁହିଁ
ଅଛନ୍ତି ମନୋହାରୀମାନେ କହି
ଆଳାପ କା ଆଗେ କରବ ବସି
ଅନ୍ତେ ଚନ୍ଦ୍ର କଥା ଅଶ୍ରୁ ବରଷି
ଅତ ବଙ୍କ କାନ୍ତ,
ଆସି ପ୍ରବୋଧନା କଲେ ନିତାନ୍ତ ॥ ୧ ॥

ଅଛୁ ସମସ୍ତ ବଷୟ ଗୋଚର
ଅଶ୍ରୁ ମୁଞ୍ଚିଲେ କ ଗଳ ଭୂମର
ଅଛନ୍ତି ରମଣୀ ମସ୍ତକ ମଣି
ଅନ୍ତର ଲବ ଯାର ଯୁଗ ମଣି
ଅନ୍ତେ କ କାରଣ,
ଅଧିକ ତାପ ହେବ ଅକାରଣ । ୨ ॥

( ପାଞ୍ଚ )

ପ୍ରଗଲ୍‌ଭ ଧୀରା—

ଅବଲୋକି ବନମାଳୀ ଭଦ୍ରା ଚନ୍ଦ୍ରାବଳୀ ଉଦାସୀନ ହୋଇ ସୁରତରେ
ଆଦରକୁ କରିନେଇ ଆସନେ ବସାଇ ତୋଷନ୍ତି କୁସୁମ ତାମ୍ବୂଳରେ ॥ ୧ ॥
ଅନ୍ତେ ସାନ ଥାଇ ପୁରି ଅପ୍ରକଟ କରି ବଞ୍ଚାଇ ବିଳମ୍ବ କରେ କାଳ
ଆଲିଙ୍ଗନ ଯେ ଚୁମ୍ବନ ନ ଦେଇ ବଚନ ରଚନେ ଛୁପି ନ କରେ କୋଳ ॥ ୨ ॥

ପ୍ରଗଲ୍‌ଭା ଅଧୀରା—

ଆସି ଶ୍ୟାମଳା ପାଶରେ ମିଳୁ ସେ ଶ୍ରେଷ୍ଠରେ ନ ଗୃହ୍ଣି ଅବମା ନଶ୍ୱାସଇ
ଅଧୋକ୍ଷଜ ଗୃଷ୍ଟୁ ବାଣୀ ରମଣୀ ନ ଶୁଣି ନିଷ୍ଠୁର ବଚନ ପ୍ରକାଶଇ ॥ ୩ ॥
ଅଟେ ସହଜେ କୋପନା କରଇ ତର୍ଜନା ବିଶେଷେ ମାନ ନିଦାନ ପାଇ
ଆଣି କର୍ଣ୍ଣ ମାଳୋତ୍ପଳ ଅବତଂସ ଫୁଲ ଗୋବିନ୍ଦ ବପୁରେ ପ୍ରହାରଇ ॥ ୪ ॥

ପ୍ରଗଲ୍‌ଭା ଧୀରା ଅଧୀରା —

ଅନ୍ୟ ରମଣୀ ସୁରତ ଚିହ୍ନରେ ଅଙ୍କିତ ହେବାର ଦେଖି ମଙ୍ଗଳା କହି
ଅଟ ନାୟକ ବିଧିରେ ସୁବର୍ଣ୍ଣ ତନୁରେ ଜଡ଼ିବା ଅନ୍ତର ହେଲ କହି ॥ ୫ ॥
ଅଟେ ସୁନାରି ସେ ଯେଣୁ ମରକତ ତନୁ ରତି ଚିହ୍ନ ନଖ ରେଖା ଦେଇ
ଅଧିକରେ ତ ମଞ୍ଜୁଳ ହେଲ ବହୁମୂଲ୍ୟ ଯେଣୁ ମୋ ମାନସ ମୋହ ହୋଇ ॥ ୬ ॥

ମୁଗଧା ମାନ—

ଆସି ମୁଗ୍‌ଧା ମନୋହାରୀ ପାଶେ ମିଳୁଂ ହରି ନ କହି ବଚନ ମାନ ଜାତେ
ଅଶ୍ରୁ କରଇ ଜନନ ପଙ୍କଜ ନୟନ ମୁଖ ପୋଛି ପୋଛେ ବସନାନ୍ତେ ॥ ୭ ॥
ଅଟେ ମଧ୍ୟା ପ୍ରଗଲ୍‌ଭାର ଲକ୍ଷଣ ବେଭାର ଭିନ ଭିନ ବୁଝ ବିଜ୍ଞ ବାର
ଏଣୁ ମୁଗ୍‌ଧା ମାନ ଯେକ ବିଧି କହେ ଠିକ ଶ୍ରୀ ଶ୍ୟାମସୁନ୍ଦର ଦେବ ଧୀର ॥ ୮ ॥

— ଗୀତ —

( ଆଷାଢ ଶୁକ୍ଳ ବାଣୀରେ )

ଅଳି ଚୁମ୍ବି ଦେଉ ସୁମନସରେ
ଆପୀଡ଼ିତ ହୋଇ ସୁମନ ଶରେ

ଅଲ୍ପ ନ ରଖି ମାନ ମାନସରେ
ଅକଥନ ଲୀଳା ମାନ ନ ସରେ
ଆଶ୍ଳେଷ ବେଶରେ,
ଅନୋନ୍ୟହେ ପୁଂସ ଭ୍ରାନ୍ତ ବଶରେ ।୧।

ଅତ ଉଲ୍ଲାହ ଚର୍ଚର ଖେଳରେ
ଆପେ ଚନ୍ଦ୍ରାବଳୀ ଆଳି ମେଳରେ
ଅଛନ୍ତି ଶ୍ୟାମଳା ମଙ୍ଗଳା ପାଳି
ଆଖିଖ କନ୍ୟା ଧନ୍ୟା ଭଦ୍ରା ବାଳି
ଅଚଳସ ମୁଣା (?)
ଅବର ଭର କୁରଙ୍ଗୀ ଈକ୍ଷଣା । ୨ ।।

---

( ଛଅ )

ଅବଲୋକ ଥିଲେ ବହୁ ବେଶ ରାମା ସେତୁ ଭନେ ଛବରେ ଅମ୍ବିକା ବଚନ
ଅତ ଶ୍ରଦ୍ଧା ଶତ୍ତେ ମଧ୍ୟା ପ୍ରଗଲ୍‌ଭା ସୁମଧ୍ୟା ମୂର୍ଦ୍ଧା ସେହୁ ବେଶ ସୁଶୋଭନେ । ୧ ।।
ଅଟେ କେ ଉତ୍କଳ ରମା ସୁବେଶ ସୁଷମା ଗଉ୍ଡା ଯୁଡ଼ା କେ ଲୋଟଣୀ ଜୁଡ଼ା
ଆମଣ୍ତ୍ରନ ମାଳ ଝରା ମାନଆଁରେ ଚୋରା ତଥା ମଥା ବାନ୍ଧି ଲଭେ ବ୍ରୀଡ଼ା ।। ୨ ।।
ଅଟେ କେ କଳଙ୍କ ବେଣୀ କର୍ଣ୍ଣାଟ ସୁକେଶୀ ସୁ ଖୋସା ଟେକ ବନ୍ଧ ଖୋସା ରାନେ
ଅର୍ଦ୍ଧ ଚନ୍ଦ୍ର ରତ୍ନ ହେମ ଶଚା ମନୋରମ କର୍ଣ୍ଣଫୁଲ ଝୁମ୍ପି କାଞ୍ଚୀ ଖଞ୍ଜେ । ୩ ।।
ଆଣି ଅଣି ଗୁର୍ଜ୍ଜରଜା ମହାରାଷ୍ଟ୍ରଜାତ ରତ୍ନ ବେଣୀ କେ କୁସୁମେ ଶୋହେ
ଅଙ୍ଗ ଆଦ ବଙ୍ଗ ଯେତେ ଛବ ଅନୁମତେ ଗୋବନ୍ଦ ନୟନ ମନ ମୋହେ ।। ୪ ।
ଅଭିନବ ବେଶ ଦେଖି ଅପଲକ ଆଖି ବନ୍ଧନ ହୋଇ ଲାବଣ୍ୟ ପାଶେ
ଅବଳା ଯେ ଲାଜ ନଜମୁଖ ସରସିଜ ମୁକୁଳ କର ପ୍ରବେଶ ପାଶେ । ୫ ।।
ଆବେଷ୍ଟିତ ମନୋହାରୀ ବୃନ୍ଦ ହେଲେ ହର ଅବର ଉଣାଇ ହସି ମନ୍ଦେ
ଅଙ୍ଗ ହୋଇ କମ୍ପମାନ ପାଠ ମୂର୍ତ୍ତିମାନ ଘନ ବପୁରେ କ ରାଗ ଉଦେ ।। ୬ ।।

ଅତି ରଣିତ କଙ୍କଣ କବା ରଣ ରଣ ରଣରେ ବଜାଇ ଖାଇ ବାଦ୍ୟ
ଅପାଙ୍ଗରେ ଖର ବାଣ ଭ୍ରୂଲତା କମାଣ ସନ୍ଧି ବନ୍ଧ ଗମା ଲବ ବାଦ ॥ ୭ ॥

ଅଚ୍ୟୁତଙ୍କୁ ହୋଇ ବଳ ସେ ମଧୁମଙ୍ଗଳ ସୁବଳ ଫଗୁ ନଯୋଜ ଲଭେ
ଆରକତ କ ଉତ୍ତୁଙ୍ଗ କୁଚ ମାତୁଳଙ୍ଗ ଶ୍ରୀ ଶ୍ୟାମସୁନ୍ଦର ଦେବ କହେ ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀ )

ଆପଣେ କଳ କୁଟ୍ଟୁଣି ସନ୍ତରେ
ଅବର ବରଷାଇ ନିରନ୍ତରେ
ଅଧିକେ ଘନ ଜଘନ ସନ୍ଧରେ
ଅଲକ୍ଷ ଲକ୍ଷ କୁଚ ଅସନ୍ଧରେ
ଅରୁଣ କ ରମ୍ଭା,
ଅରୁଣ କରେ ଉଦେ ଗିରି ଶୋଭା ॥୧॥

ଅବର ଆଙ୍କରେ କେ ଅସମ୍ଭାଳ
ଆମୁକ୍ତ ମାଖା କବଖ ସୁମାଳ
ଅବଳା ବଦଶେ କ ରଚାନ୍ତ ଗମା
ଅଷି ବିଭବ ପ୍ରଭବ ସୁଷମା
ଆବନ୍ଧ ସୁକାଞ୍ଚି,
ଅଞ୍ଚଳ ଦୃଢେ ବାନ୍ଧେ ପୁନ ପାଞ୍ଚି ॥୨॥

---

( ସାତ )

ଆଭୂଷଣରେ ଫନିର ପିଚକା ସେ ମୀରଜାକ୍ଷୀମାନେ କଲେ ବରଷଣ
ଅର୍କ ଜ୍ୟୋତିରେ ରଚନ ଝଟକ ସତନ ପ୍ରାବୃଟେ ଜ୍ୟୋତିରିଙ୍ଗଣ ଗଣ ॥ ୧ ॥

ଅପେ ହେମ ନଳ ଧରି ହରି ପୁନ ମାରି ଜଘନ ସନ୍ଧିରେ ପୟୋଧରେ
ଅବରତ ଅବର ତ ହେଉଅଛି ପାତ ବିଶେଷରେ ସ୍ୱେଦ୍ୱ ଶୋଭା ଧରେ ॥ ୨ ॥

ଅତି ଉଚ୍ଚ ପୟୋଧର ଗଇରିକ ଧର ଶୃଙ୍ଗୁଳ ଜୟ କି ସଂପୁଟକ
ଅତନୁର ଲକ୍ଷ ଶର ଘାତରେ ରୁଧିର ବହଇ ଶଙ୍କର ସୁପ୍ରଶକ ॥ ୩ ॥

ଆଜ ମହୀ ପୁଷ୍ପବଣ୍ଟା ଜଳପରି ଛାତି କୁସୁମ ସଙ୍ଗରେ ଋତୁ ମଧୁ
ଆଣ ରମଣୀ ପାଟକ-ବଧୂ କି ନଟକ ପାଠ ଦିଦ୍ଧେ ଚୋଷେ ଅକବଧୂ ॥ ୪ ॥

ଆପେ କାହାର କଞ୍ଚୁକ ଫିଟାଇ ଚୂଚୁକ ଧରନ୍ତେ ପଳାଇ ହସି ହସି
ଆଣି ଅମ୍ବର ଲେପନ୍ତି କରଜେ ପୀଡ଼ନ୍ତି ଚମକି ବୋଲେ ଇଷି ଇଷି ॥ ୫ ॥

ଆସି କହିବା ଛଳରେ କେ କର୍ଣ୍ଣ ମୂଳରେ ଚୁମ୍ବ ଦେଇଗଲା କି ମାଧୁର୍ଯ୍ୟ
ଆସିବାରେ ଯିବାରେ କେ ଗୋବିନ୍ଦ ପ୍ରତି କେ ସ୍ତନ ଠେସି ଦଏ ଜବାଧର୍ଯ୍ୟ ॥ ୬ ॥

ଆଣେ ଭିଡ଼ନ୍ତେ କାହାକୁ କମ୍ପାଇ ଦେହକୁ ଛଡ଼ାଇ ପୀଡ଼ଇ ନଖ ମୁନ
ଆଣି ଅମ୍ବର ଫିଙ୍ଗଇ କେ ପଳାଇ ଯାଇ ପାଲଟି ଅନାଇଁ ପୁନଃ ପୁନ ॥ ୭ ॥

ଅଭିନବ ସୁକୁମାରୀ ବରଜ କୁମାରୀ ମୁଗ୍ଧା ଭାବ ଖେଳ ମନ ଜାଣେ
ଅଛି ପ୍ରଗଲ୍‌ଭ କେ କହେ ଜାଣିମା ଯେ ରହେ ଶ୍ରୀ ଶ୍ୟାମସୁନ୍ଦର ଦେବ ଭଣେ ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀ )

ଆଲୋକ ପ୍ରେ ଋତୁବର ସୁଷମା
ଅଧିକ ବେଶ ବୃଷଭାନୁ ଜେମା
ଅଟେନ୍ତ୍ର ବଧିରେ ଲାବଣ୍ୟ ଧାମା
ଆକଳ୍ପ ଯୋଗରେ ଅନ ଉପମା
ଅତି ମନୋରମା,
ଅଲଙ୍କାରେ ରମ୍ୟ ଦର୍ଶିଲା ଷମା ॥ ୧ ॥
ଆଚରି ଚର୍ଚ୍ଚରି ଖେଳ ବିଶେଷ
ଅମ୍ବର ଶୁକ୍ଳରେ ବଧୂ ସଂକାଶ
ଅରୁଣତର କେ ରୁଚି ପଲାଶ
ଅତର ସଦୃଶେ ପୁରଇ ବାସ
ଆଳିଚୟ ପାଶ,
ଅଛି ମୂ ସଜର ମୁଣ୍ଡା ଅଶେଷ ॥ ୨ ॥

( ଅ:୦ )

ଅପସର ମେଳେ ରାଜେ ପୁଲୋମଜା ବଜେ ନନ୍ଦନକୁ ଯେହ୍ନେ ମନୋରମା
ଅଙ୍‌ଘ୍ରି ସ୍ଥଳ କମଳରେ ମାର୍ଗ ମଞ୍ଜୁଳରେ ପୁଷ୍ପଦଳେ କୃଷ୍ଣ ପ୍ରିୟତମା ।। ୧ ।।

ଅଭିନବ ପୁଷ୍ପବନ୍ତ ଶୋଭନ ବ୍ରତତୀ ଭୃଙ୍ଗ ଚୁମ୍ବ ଦେଖି ହୃଦ ସଳ
ଅନ୍ତେ ଗୋବନ୍ଦର ପ୍ରୀତି ଚିନ୍ତନେ ସ୍ମରଣେ ଉହ୍ଲାଦ ଚିତ୍ତ ମନ୍ଥର ସ୍ଖଳ ।। ୨ ।।

ଅନିରୁଦ୍ଧ ମୁଖ ସୁଖେ କୃଷ୍ଣଚନ୍ଦ୍ର ଦେଖେ ବଲ୍ଲଭ ଯୁବତୀ ସହସ୍ରରେ
ଆବେଷ୍ଟିତ ହୋଇ ଖେଳ ରଚି କୁତୂହଳ ହାସ ପରିହାସ ବିଶେଷରେ ।। ୩ ।।

ଅପାଙ୍ଗର ଶରେ ଭେଦ କରି କୃଷ୍ଣ ହୃଦ ଲେଉଟିଲେ ଭଙ୍ଗ ଉହ୍ଲାଦରେ
ଅପଗା କି ଅକୂପାର ସଙ୍ଗକୁ ଆତୁର ଉଜାଣି ବହିଲା ଚପଳରେ ।। ୪ ।।

ଅଧୋକ୍ଷଜ ଥିଲେ ଯହିଁ ବାହୁଡ଼ିଲେ ରାଇ ହସ୍ତରୁ ପତନ ହେଲା ବଂଶୀ
ଅର୍କ ତନୁଜା ପ୍ରତିରେ ବିଷାଦ ମତିରେ ଅଙ୍ଗନାଙ୍କ ସଙ୍ଗ ତେଜି ବସି ।। ୫ ।।

ଅତି ସୁଗନ୍ଧ ସଧୀର ବହଇ ସମୀର ବନମାଳୀ ବସି ସ୍ୱେକାନ୍ତରେ
ଅଙ୍ଗେ ମକର କେତନ ବାଣ ପଡ଼େ ଘନ ଇଷ୍ଟି ସ୍ପୃଷ୍ଟି ଘାତ ନିତାନ୍ତରେ ।। ୬ ।।

ଅନ୍ତେ ରାଧା ରୂପ ଧ୍ୟାୟି କିଛି ନ ରୁଚଇ ଆଉ କି ଭେଟିବି ବର ନାରୀ
ଅଳ୍ପ ଦାସର ପ୍ରସାଦ ମୋ ସବୁ ସମ୍ପଦ କଟାକ୍ଷକୁ ଥାଇ ଅନୁସରି ।। ୭ ।।

ଅନ୍ୟ ଶୁଖାଇ ଲେଉଟି ଗଲେ ଯେ ପାଲଟି ନ ଗୃହଁ ଯେବେ କେ ଆଣିଦେବ
ଆଜ କି କଲା ବିଧାତା ଯେହ୍ନେ ମାତ୍ର ଚିନ୍ତା କହଇ ଶ୍ୟାମସୁନ୍ଦର ଦେବ ।। ୮ ।।



## — ତୃତୀୟ କୁସୁମ —

# ବୋଲି ଲେଖନ

॥ ପ୍ରଥମ ବିଭାଗ ॥

( ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ )

ଅନୁବନ୍ଧ—

ଅନ୍ତରେ ବାହାରେ ଯେତିକା ଦିଶେ ରାଧା ରୂପ
ଅରଣ୍ୟ ପ୍ରିୟର କଳ ବାଣୀ କଳାପ
ଅନୁରାଗ ଭୁଲେ ଲକ୍ଷ ନାହିଁ ସଂସାର
ଅଙ୍ଗ ସଉରଭ ମଣେ କୁସୁମ ସାର ॥ ୧ ॥

— ଗୀତ —

( କେଦାର ରାଗେଣ ଗୀୟତେ )

ଅଛି ନବେଣୀ ବଳତ କେତକୀ କୁସୁମେ
ଅଶ୍ରୁ ଜାତ ହୋଇ ପୁନ ରୋମ ଉଦଗମେ
ଅଳି କେଳି ଦେଖି ଫୁଲେ ହୃଦ ପଡ଼େ ସଳ
ଅଧିକ କୂଜନ ବ୍ୟାଜେ ବାଜେ କାମ ଖଳ ।ଘୋଷା।
ଅମ୍ବୁରୁହ ଧରି କରେ ଚୁମ୍ବନ ରଚନ
ଅରୁଣ ନବ ପଲ୍ଲବେ ଦଂଶିତ ଦର୍ଶନ ॥ ୧ ॥

## — ଶଙ୍ଖଚୂଡ଼ ବଧ ବୋଲି —

( ଭୂତକେଳି ବାଣୀରେ )

ଅଚ୍ୟୁତ ଅନ୍ତକେ ଦୂତ ଯେତିକାଳେ ପ୍ରବେଶ
ଆତୁର ହରଷେ ହରି ବଚନ ପ୍ରକାଶ ॥ ୧ ॥

ଅ.ସିଦ୍ଧିଲେ ଓ୍ଵାହ୍ନରେ ରାଧା ଗବେଶ୍ବର
ଅାଶ୍ରିଶ ମେଳରେ ଖେଳ ଦେଖି ଅପସର ॥ ୨ ॥

ଅନୁକୂଳ.କଦମ୍ବରେ ଯଦ୍ୟପି ବହୁରେ
ଆମ୍ରକାଳ ସୁଖ ଭବ ଆଶୋର ନ ପାରେ ॥ ୩ ॥

ଅତି ମୁକୁଳାଢ଼ୀ[୧] ଯେତେ କୁସୁମ ପ୍ରଧାନ
ଅନ୍ୟୋନ୍ୟମା ବଯୋଗ ନ କରେ ସମାଧାନ ॥ ୪ ॥

ଆଚ୍ଛନ୍ନ ଶ୍ରୀରାଧା ପ୍ରୀତି ପଟଳରେ ଅତି
ଅଦୃଶ୍ୟ ସକଳ ସୁଖ ଧଇର୍ଯ୍ୟ ପଦ୍ଧତି ॥ ୫ ॥

ଅାରେ‌ଵ୍ଵ ମଦନ ରମା ନୟନ ମୀନରେ
ଆବଦ୍ଧ ହୃଦୟ କରି ଗଲି ସିତନରେ ॥ ୬ ॥

ଅଧରୁ ଅମୃତ ଦେଇ କରାଇ ଅମର
ଅପହୃତ ପ୍ରାଣ ନୋହୁ ପୀଡ଼ିତ ଶରୀର ॥ ୭ ॥

ଅତନୁ ଜଳନଧି କ ଦୃଢ଼ କୋଳ ଦେଇ
ଅନୁକମ୍ପା କରି ତାରୁ କର୍ଣ୍ଣଧାର ହୋଇ ॥ ୮ ॥

ଅନାଳ ପୁଷ୍ପ ସୁଗନ୍ଧ ବନ୍ଧୁ ଗମେ ଯଥା
ଅଚ୍ୟୁତ ସନ୍ଦେଶ ଘେନ ଦୂତୀ ଗମେ ତଥା ॥ ୯ ॥

ଆସିଲେ ଯେ ଗୋବିନ୍ଦ ବଷାଦେ ଖେଳ ତେଜ
ଆଭୀର କନ୍ୟା କାନନେ ଭ୍ରମେ କୃଷ୍ଣ ଖୋଜ ॥୧୦॥

ଅଟନ୍ତି କ ଗଣ ବଣା ପ୍ରେୟସୀ ଚନ୍ଦ୍ରାବଳୀ
ଅନ୍ୱେଷଣା କରି ପ୍ରେଷଣେ ଭେଟେ ବନମାଳୀ ॥୧୧॥

ଅମୃତ କର ରୁଚିର ଆନନ୍ଦ ଦାୟକ
ଅନାଦର ହ୍ଵମାଗମ କାଳରେ ଅଧିକ ॥ ୧୨ ॥

ଅବେଚକ ତଥା ଚନ୍ଦ୍ରାବଳୀ ଦର୍ଶନ
ଅଧିକ ବଷାଦେ ତେଜ ନଗ୍ରାସ ସ୍ଵସନ ॥ ୧୩ ॥

---

୧। (କ) ମୁକୁଆଢ଼

ଆଦ କାରଣ ସ୍ନେହାଙ୍କ ଯୋଗୁଁ ରାଧା ମାନ
ଆଲୋଚନା ସୁଲୋଚନା ତେଜିବେ ସେମାନ ।୧୪।

ଆଗତ ନିମିତ୍ତେ ଦୂତ ପେଷି କହ୍ନ ବୋଧ
ଅନ୍ତକେ ପ୍ରେମ ଥିଲେ ହେବ ବିଶେଷ ବିରୋଧ ।୧୫।

ଅନଳ ନିବାରଣକୁ ଘୃତ ଉପଚାର
ଅପହୃତ ଶୀତକୁ କି ବ୍ୟଜନ ସଂଚାର ।୧୬।

ଅଳପକୁ ଗଛ ଯେବେ କହିବା ବଚନ
ଅତିଶୟେ ନିଷ୍ଠୁର ପ୍ରେମ ହେବ ସ୍ନେହହୀନ ।୧୭।

ଅନ୍ତିକରେ ଥିବେ ରାଧା ଦେଖିଲେ ପ୍ରମାଦ
ଅଭାଗ୍ୟ କାଳେ ବିପଦ ଉପରେ ବିପଦ ।।୧୮।

ଅନ୍ତରେ ସ୍ୱେମନ୍ତ ହରି କରୁ ବିଚାରଣ
ଅରଣ୍ୟେ ଭ୍ରମନ୍ତେ ବ୍ରଜ କୁମାରୀ ହରଣ ।।୧୯।

ଆସି ଶଙ୍ଖଚୂଡ଼ ନାମେ କିନ୍ନର ଅଧମ
ଅଳକା ଅଳଙ୍କାକୁ କରେ ନେମା କାମ ।।୨୦।।

ଆତ୍ମର ସ୍ୱରୂପ ଧରି ବୋଲେ କୃଷ୍ଣ ମତେ
ଆଜ୍ଞା ଦେଲେ ଯେନପିବି ତୁମ୍ଭଙ୍କୁ ସଙ୍ଗତେ ।୨୧।

ଅଙ୍କନା କୃଷ୍ଣ ବିଚ୍ଛେଦ ତାପରେ ତାପିତ
ଆପ୍ୟାୟିତ କାଣୀ ଗ୍ରୀଷ୍ମେ ହିମାଂଶୁ ଯେମନ୍ତ ।୨୨।

ଅପହୃତ କନ୍ୟା ଗମେ ଉତ୍ତର ଦିଗରେ
ଆସି ଓଗାଳିଲେ ବଟୁ ସୁବଳ ଆଗରେ ।୨୩।

ଆଳାପ କରନ୍ତେ ନିଜ ସ୍ୱରୂପକୁ ଧରେ
ଅଚ୍ଛ ମଧ୍ୟ ଠାରୁ ନର ଦେହ ଶଙ୍ଖ ଶିରେ ।୨୪।

ଅଧିକ ଶ୍ୱାସ ପବନେ ନେଉଅଛନ୍ତି ହରି
ଅରି ଭେଦରେ ପ୍ରେମ ବେନି ସିଂହନାଦ କରି ।୨୫।

ଅବଳା ପ୍ରେମିକାକୁ ବାଣୀ ଭକ୍ତି ଲଭି ହରି
ଆର୍ତ୍ତି ହର ଗୋବିନ୍ଦ ମାଧବ ଦାମୋଦର ।୨୬।

ଅଚ୍ୟୁତ ଅଗ୍ରଜ ଶୁଣି ଶୀଘ୍ରେ କଲେ ଗତି
ଅନ୍ଧ ପଳାଇଲା ଦେଖି ଦ୍ୱିଜରାଜ ଜ୍ୟୋତି ॥ ୨୭ ॥

ଅଚ୍ୟୁତ ପ୍ରେମକାଳେ ଚନ୍ଦ୍ରାବଳୀର ଭୂଷଣ
ଆମ୍ଭେ ଉଦ୍ଧରିବୁଁ ଗୋପ କନ୍ୟାଙ୍କ କଷଣ ॥ ୨୮ ॥

ଆଶୁଗ ଗତିରେ ଶଙ୍ଖଚୂଡ଼ ଭେଟି ହରି
ଆଣ୍ଠେ ତଳୁ ପ୍ରହାରରେ ଜୀବନକୁ ହରି ॥ ୨୯ ॥

ଆଣି ତା ମସ୍ତକ ମଣି ବଳଦେବ ଉରେ
ଆଲମ୍ବିତ କରାନ୍ତେ ସେ ପ୍ରେମ ଶୋଭା ଧରେ ॥୩୦॥

ଅଙ୍ଗନାଙ୍କ ଦର ହର ଦର ହର ବାନା
ଆସ୍ଥ ଆସ୍ଥ ଅଦ୍ଧ ଶେଷ ପ୍ରଦୋଷ ଶୋଭନା ॥୩୧॥

ଆଭୀର କନ୍ୟାଙ୍କୁ ତାର ମାର ଶଙ୍ଖଚୂଡ଼
ଅବଲୋକନରେ ବ୍ରଜବାସୀ ସ୍ନେହ ବଡ଼ ॥ ୩୨ ॥

ଆସି ବ୍ରଜ ସଂସଦରେ ହରିତ ଅମ୍ବର
ଅନଙ୍ଗ ବାଣ ବ୍ରଣରେ କ୍ଷୀଣ କଳେବର ॥ ୩୩ ॥

ଆସିଥିବେ ସଂକେତ କୁଞ୍ଜକୁ ପରା ପ୍ରିୟା
ଅନ୍ତେ ପ୍ରେମା ଚନ୍ଦ୍ର କାମଆର୍ତ୍ତେ କମ୍ପେ ହିୟା ॥୩୪॥

— ଗୀତ —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନୁବନ୍ଧ —

ଅନ୍ତିକରେ ଦୃଷ୍ଟି ମିଳନ୍ତିଂ ରାଧିକା ଅଧୀରା
ଅଶ୍ରୁ ନେତ୍ର ଭୃଙ୍ଗ ମକରନ୍ଦ ଉଦ୍‌ଗାରା
ଅଚ୍ୟୁତ ଚରିତ ସର୍ବ କରେ ପରକାଶ
ଅକ୍ଷର ଫୁଟଇ ଗଦ୍‌ଗଦ ବିଶେଷ ॥୧॥

— ଗୀ ୨ —

( ଶ୍ରୀ ରାଗେଣ ଗୀୟତେ )

ଅନେକ ତାରା ରଜନୀ କୁମୁଦନୀ କେତେ
ଆଭେଗୀ ଯେମନ୍ତେ ଚନ୍ଦ୍ର କୃଷ୍ଣ ସେହ୍ନମତେ ॥ ଘୋଷା ।
ଅବକାଶ ନାହିଁ ଚକୋରୀଙ୍କର
ଆଲୋକ ଆସିଲ ସେପରିରେ କ । ଓରେ ମାଇ ॥୧॥

— ଦୂତୀ ବୋଧ ବୋଲି —

ଅଚ୍ୟୁତ ବ୍ରଜସୁନ୍ଦରୀ ସଙ୍ଗଲୀଳା ତେଜ
ଅଟବୀ ଭ୍ରମନ୍ତି ତବ ରୂପ ମନେ ହେଜ ॥ ୧ ॥
ଅମିତ ଆଚରି ଧୀର ଗତ ଦେଲୁ ଗୁଡ଼
ଅତି ଚଞ୍ଚଳ ଗମନେ ଆସିଲୁ ସେ ତୁଡ଼ ॥ ୨ ॥
ଅଳପ ଯେମନ୍ତ ଥାନ୍ତୁ ଅରଣ୍ୟେ ବଢ଼ାଇ
ଆଦରେ ପାଉଛି ପଥୁଁ ନେଇଥାନ୍ତେ ହରି ॥ ୩ ॥
ଅନୁସରି ପଦ ଅଙ୍ଗ ଗଲେ ବହୁ ଦୂର
ଅରଣ୍ୟେ ପ୍ରିୟର କଳ ପଡ଼େ କ ଉଦୁର ॥ ୪ ॥
ଅମରାଚଳ ତୋ କୁଚ ହୃଦପୁରେ ବନ୍ଧ
ଅବଶ ଇନ୍ଦ୍ରିୟ ସୂର୍ଯ୍ୟ ସୁଚ୍ଛା ଗରେ ରନ୍ଧ ॥ ୫ ॥
ଅଙ୍ଗ ପଞ୍ଚଶର ପଞ୍ଚାଗ୍ନିରେ କରେ ତପ
ଅଧିକ ଜଡ଼ ବେପଥୁ ତବ ଭାବ ଆପ ॥ ୬ ॥
ଆଚରଇ ପୁନ ଜଳ ତପ ମହା କ୍ଲେଶେ
ଅ.ଶାରେ ତିକ୍ଷଣ ଜର ଜର ସେ ଅନଶେ ॥ ୭ ॥
ଅନ୍ୟେ ଧ୍ୟାନ କେବଳ ଉରଜ ସ୍ମର ହର
ଆନ କେ ଜଗତେରେ ନାମ ମନ୍ତ୍ରକୁ ଛୋଡ଼ଇ ॥ ୮ ॥
ଅକ୍ଷି ଶ୍ରବଣାନ୍ତ ତେଜ ସନ୍ଧିରେ ଅଧିକାର
ଅଚ୍ଛନ୍ତି ତବ ବକ୍ଷସ୍ୱେ କରି ଅଙ୍ଗୀକାର ॥ ୯ ॥

ଆଣି କଶଳୟ ତଳ୍ପ ରଚିତ କୁଞ୍ଜରେ
ଅସହ ତାପ ଲେଖନ୍ତି ଅନଳ ପୁଞ୍ଜରେ   ॥ ୧୦ ॥

— ଗାହା —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନବନ୍ଧ —

ଅଚ୍ୟୁତରୁ ମାନ ତେଜ କହ ସୁ ଘରଣି
ଅଳି ଠାରେ ଦେଖି ପୁଷ୍ପବଣ୍ଟର ପୀରତି ॥୧॥

ଅବଧିରେ କି ଆତୁରେ ଦେଉଅଛୁ ରତି
ଅବଳାମଣି ହୃଦୟ ନୁହଇ କରତି   ॥ ୨ ॥

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଅନଙ୍ଗ ମୀନ ଯାନରେ   ଆରୋହି ରତି ସଙ୍ଗରେ
ପନ୍ନଗ ତଳ୍ପର ଖେଳ ଇଚ୍ଛି ଗୋ
ଅନା ବସନ୍ତ ଋତୁରେ   ଚନ୍ଦ୍ରବଲ୍ଲୀ ବିତତିରେ
କିଶଳୟ ଛଳେ ରାଗ ସଞ୍ଚି ଗୋ । ଘୋଷା ।

ଅଚେତନ ହୋଇ ସେହି   କୁସୁମ ହାସରେ ଶୋହି
କାନ୍ତ ମନ ପ୍ରସନ୍ନେ ଉଲ୍ଲାସେ ଗୋ
ଅରଣ୍ୟ ପ୍ରିୟର କଳ   ସଙ୍ଗୀତ ଗୀତ ମଞ୍ଜୁଳ
ପଞ୍ଚମ ସ୍ୱରରେ ପରକାଶେ ଗୋ ॥ ୧ ॥

ଅନଳ ପୁଷ୍ପବଣ୍ଟର   ବାସ ହର ଭ୍ରମେ ରେଣୁ
ଯନ୍ତ୍ର ପରବେଶ ଚିହ୍ନା ହୋୟେ ଗୋ
ଅବକାଶ ଜାଣି ଭୃଙ୍ଗ   ଦକ୍ଷିଣ ନାୟକ ସଙ୍ଗ
ଶ୍ରୀ ଶ୍ୟାମସୁନ୍ଦର ଦେବ ଗାୟେ ଗୋ ॥୨॥

## — ଅଭିସାର ବୋଲି —

ଶ୍ଳୋକଃ—

ଅଭିସାରୟତେ କାନ୍ତଂ ଯା ମନ୍ମଥ ବଶମ୍ବଦା
ସ୍ୱୟଂ ବାଭିସରତ୍ୟେଷା ଧୀରୈରୁକ୍ତାଽଭିସାରିକା ॥
(ଇତି ସାହିତ୍ୟେ)

ଅଭିସାର ବେଶେ ଅଙ୍ଗେ ଲେପ କସ୍ତୁରିକ
ଅପଦେଶ କରୁ କୁଚ ଅଞ୍ଜନ ଚିଉନ ॥ ୧ ॥

ଅଛୁ ମାରକତରେ ମାରକତରେ ଭୂଷା
ଆଦର ମୁଖର ମଞ୍ଜୀରନ୍ତୁ ତେଜ ଯୋଷା ॥୨॥

ଅଧୋକ୍ଷଜ ଭୁଜବତ ମାଗର ମାଳାକୁ
ଅଚଳ କୁଚ ଖେଳାଅ ଆରମ୍ଭି ଲୀଳାକୁ ॥ ୩ ॥

ଶ୍ଳେଷ—

ଅସ୍ତ ଦିନବନ୍ଧୁ ଦେଖି ହରିତ ଅମ୍ବର
ଆସ୍ୟ ମଳିନ ଶଙ୍କୁଳ ଧ୍ୱନି ଆଉ ସ୍ୱର ॥ ୪ ॥

ଅମ୍ବୁରୁହ ନଳରେ ପକାଇ ଅଳିଗୁଞ୍ଜ
ଅନଙ୍ଗ ସଂଯତେ ଉଦେ ଜାମ୍ବୁକ ତାରୁଞ୍ଜ ॥ ୫ ॥

ଅତି ଖଳ ଯଥା ପର ବିପତ୍ତିରେ ମୁଦ
ଅବଲୋକ ହାସ ମୁଖ ହେମନ୍ତ କୁମୁଦ ॥ ୬ ॥

ଅନ୍ଧକାର ସମୂହରେ ବଶୁରେ ବିହର
ଅସିର ବିଭବ ଜନ ଲୋଚନକୁ ହର ॥ ୭ ॥

ଅବଗ୍ଲିତ କଳା ନେଇ କୌଶିକ ଅକ୍ଷରେ
ଅରିଷ୍ଟ ଲୁଚିଲେ ଚତୁକୋଟେ ମନ୍ଦାକ୍ଷରେ ॥ ୮ ॥

ଅମରକ୍ଷେ ତମ କଲା କବଳ ଜଗତ
ଅଛୁ କ ନାହିଁ ସଂଶୟ ସନ୍ଧିଧ ଜଗତ ॥ ୯ ॥

ଅଞ୍ଜନ ଗଜର ବପୁ ବ୍ୟାପିଲା ଧରଣୀ
ଅସିତାମ୍ବର ପିନ୍ଧିଲା କି ବଶୁ ତରୁଣୀ ॥ ୧୦ ॥

ଅସଂଶୟରେ ଶୃଙ୍ଗାର ମୂର୍ତ୍ତିବନ୍ତ ମଣି
ଅବଲୋକନେ ଆତୁର ରମଣ ରମଣୀ ॥ ୧୧ ॥*

ଆପଗା ତୀର ସ୍ୱ ବାଟୀ ଦୂତୀ ଗୃହ ବନ
ଅଚ୍ଛନ୍ନ ସ୍ଥାନ ପ୍ରାସାଦ ଭଗ୍ନ ପିତୃବନ ॥ ୧୨ ॥

ଅଷ୍ଟସ୍ଥାନେ ଶାସ୍ତ୍ର ମତେ ପୁଂଶ୍ଚଳୀ ଧ୍ୱବନ୍ତି
ଅଭିସାର କରି ତୋଷ କରନ୍ତି ଉପପତି ॥ ୧୩ ॥

ଅନ୍ୟ ପୁରୁଷ ସଂକେତ ସ୍ଥାନେ କେତ୍ତ୍ର ଧୂର୍ତ୍ତି
ଆଗନ୍ତୁ ଅସି ରମିଲ ବାଞ୍ଛିତ ଯୋଷିତ ॥ ୧୪ ॥

ଅନ୍ତ ହୁଅନ୍ତେ ସୁରତ ବଚନ ପ୍ରକଟ
ଅବଳା ଆଶ୍ଚର୍ଯ୍ୟ କେଡ଼େ କୃଷ୍ଣ କଲ ଶଠ ॥ ୧୫ ॥

ଅଳଙ୍କାର ମୁକ୍ତା ବୃତ କୁଳଜାଭିସାର
ଆନନ ପ୍ରସନ୍ନ ବେଶ୍ୟା ରଣିତ ନୂପୁର ॥ ୧୬ ॥

ଅମରଷ ପୃଷ୍ଠକୁ ପକାଇ ଠାକୁରାଣୀ
ଅଭିସାରଂ ପ୍ରେ ସମପ୍ରେ ଶୁଣି ଦୂତୀ ବାଣୀ ॥ ୧୭ ॥

— ଗୀତ —

( ଧନାଶ୍ରୀ ରାଗେଣ ଗୀୟତେ )

ଅଭିସାର ବେଶ ହୋଇ      କାମ ତରଙ୍ଗିଣୀ ଧାଇ
ଉଲଟାରେ ବହୁତାରେ ଆତ୍ରେୟ
ଅତି ଉତକଣ୍ଠା ଜାତ      ଆନନ୍ଦେ ସଖୀ ପୁରତ
ଅନୁରାଗେ କୃଷ୍ଣଗୁଣ ଗାଉଥି ॥ କଉତରେ ସଜନ ॥ଘୋଷା॥

ଶ୍ଳୋକଃ — ଯଦାହ ଭରତାଗ୍ରର୍ଯ୍ୟଃ—

ଶ୍ୟାମୋ ଭବତି ଶୃଙ୍ଗାରଃ ସିତଦ୍ୱାସ ପ୍ରକୀର୍ତ୍ତିତଃ ।
(ଇତି ରସିକସର୍ବସ୍ୱେ) ॥ ପୋଥିପାଠ ॥

ଆସିଲ ଯେ ଅନାଦର                    କରମେ ବ୍ରଜସୁନ୍ଦର
ମୁଖ କେସେ କରିବ ଆଲୋକ
ଅବଲୋକ କରୁ ଦୂରେ                    ପାଉଛି ନେମେ ସାଦରେ
ଝୁଠା ମିଠା ବାଣୀ କହୁ ଠେକ । କର୍ଣ୍ଣରେ ସଜନ ।୧।

## — ଉତ୍କଣ୍ଠା ବୋଲି —

ଅଙ୍ଗୁଳି ଅଗ୍ରେ ଧରିବେ ପରା ମୋ ଚିବୁକ
ଅଧୋମୁଖେ ରହୁ ମୁଁ ଯେ ନ କହୁବ ବାକ୍ୟ ।୧।
ଅଙ୍ଗେ ଅଙ୍ଗ ଦୁଗ୍ଧ ଜଳ ସମ ପ୍ରିୟତମ
ଆଚରି ଚୁମ୍ବ ରଚନେ ଜାତ ହେବ ପ୍ରେମ । ୨ ।।
ଅପହୃତ କାଞ୍ଚଲାରେ ସୁରାକ୍ଷ କରଜ
ଅର୍ଦ୍ଧବଧୂ ସୁମେରୁରେ ରାଜୀବ ଉରଜ ।। ୩ ।।
ଅଙ୍କେ ଆରୋହାଇ ମାଟ୍ରା କରନ୍ତେ ମୋକ୍ଷଣ
ଅପସରି ପିବ ମାନ ମନୁ ସେହୁକ୍ଷଣ ।। ୪ ।।
ଆମନ୍ତ୍ରନ କବରୀରେ କୋକନଦ କର
ଅରୁଣ କୁସୁମ ଗନ୍ଧ ପର ଶୋଭାକର ।। ୫ ।।
ଅନଙ୍ଗେ ପ୍ରମତ୍ତ ହେବେ ଓଷ୍ଠ ମଧୁ ପିଇ
ଅବଶେଷେ ରଦ ଚିହ୍ନ ମୁଦ୍ରା ଥିବେ ଦେଇ ।୬।
ଆସୁଚେ ରଖିବେ ହରି ଭୁଜ ବନ୍ଧନରେ
ଆସି ନ ପାରିବ ଥିବ ହରିଣୀ ଛନ୍ଦରେ ।। ୭ ।
ଆସ୍ୱାଦେ ଚକୋରୀ ଯଥା ଅମୃତ ମୟୂଖ
ଅନୁଭବ ସୁଖ ହେବ ଚୁମ୍ବି କାନ୍ତ ମୁଖ । ୮ ।।
ଆରବ କରନ୍ତେ କଟୀ କେଶରୀ କଙ୍କିଣି
ଅନଙ୍ଗ ମାତଙ୍ଗ ପଳାଇବ ତାହା ଶୁଣି । ୯ ।।
ଆଳାପ ଉତ୍କଣ୍ଠା କହୁ କୁଞ୍ଜ ଗୃହେ ମିଳେ
ଅନ୍ୱେଷଣା ହରି କହିବାରେ ଦୂତୀ ଚଳେ ।୧୦।

— ଗୀତ —

(ଧନାଶ୍ରୀ ରାଗେଣ ଗୀୟତେ)

ଅବଳା ମଣି କାନନ କୁଞ୍ଜବାସେ ପ୍ରବେଶ
ଆକଳ୍ପ କଳ୍ପନା କାନ୍ତ କୃତେ ଚିତ୍ତ ଆବେଶ ।ଘୋଷା।
ଅରଣ୍ୟ ପ୍ରିୟସ୍ୱର କଳ ମଧୁପର ଝଂକାର
ଅଧିକରେ ବାଧୁଅଛି ମଦନର ବିକାର ॥ ୧ ॥

—ବାସକସଜ୍ଜା ବୋଲି—

ଆଣି ଗଲି କୃଷ୍ଣଙ୍କୁ ସଂକେତ ସ୍ଥାନେ ଦୂତୀ
ଅଙ୍ଗନା ବାସକ ସଜ୍ଜା କୁଞ୍ଜଗୃହେ ସ୍ଥିତି ॥ ୧ ॥
ଅନଳ୍ପ ସୁବାସ ପୁଷ୍ପ ତଳ୍ପ ବିରଚିତ
ଅବିରତ ତରଳାଇ କାମ ବୀର ଚିତ୍ତ ॥ ୨ ॥
ଅତି ମୁକ୍ତ ଛୁରିକ କୁସୁମ ନାଗେଶ୍ୱର
ଆଣି ମାଳା ରଚେ ମଣ୍ଡନକୁ ଜୀବେଶ୍ୱର ॥ ୩ ॥
ଅମୃତକର ଶ୍ରୀଖଣ୍ଡ ପଙ୍କେ କରି ମର୍ଦ୍ଦି
ଅତି ପଳିତ ଲଳିତ ନାଗବଲ୍ଲୀ ଭଙ୍ଗି ॥ ୪ ॥
ଅମଣ୍ଡନେ ଥିଲେ ଯେ ରମଣୀ ମନୋରମା
ଆକଳ୍ପ ସଂକଳ୍ପରେ ସହଜେ ଅନୋପମା ॥ ୫ ॥
ଅରୁଣ ପଲାଶ ପୁଷ୍ପ ବିକାଶ କଳିକା
ଆଳମ୍ବ ମାଣିକ୍ୟରେ କି ମୁକୁତା ମାଳିକା ॥ ୬ ॥
ଅଧିକରେ ମକରନ୍ଦ ପନୀର ପତନ
ଅଳି କଳ କୋକିଳ ଚେତାଇ ପୁନଃ ପୁନ ॥ ୭ ॥
ଅନିଳ ସୁଗନ୍ଧ ମନ୍ଦ ଯମୁନା ପ୍ରାନ୍ତରେ
ଅଟେ ଦୂତ ଉତ୍ସାହ ଅନଙ୍ଗ ବିତତରେ ॥ ୮ ॥

ଅଛକାରକୁ ମାଧବ ରୂପ ପ୍ରାପ୍ତେ ଗଣି
ଆଲିଙ୍ଗନ ଭୁଜ ଟେକି କରଇ ରମଣୀ ॥ ୯ ॥

ଅଧରକୁ ଯୋଗ କରି କରେ ଚୁମ୍ବ ଦାନ
ଅନ୍ତରେ ବାହାରେ କୃଷ୍ଣ ମୁଖଚନ୍ଦ୍ର ଧ୍ୟାନ ॥୧୦॥

ଅନ୍ୟ କଣ୍ଠ ନାଦ ଶୁଣି ହରଷକୁ ପ୍ରାପ୍ତେ
ଅଚ୍ୟୁତ ଆଗତ ପଦନ୍ୟାସ ଧ୍ୱନି ପାପ୍ତେ ॥ ୧୧ ॥

ଆନନ୍ଦରେ ପଲ୍ଲବରେ ତାକୁ ଦେଖି କେତେ ଜଣ
ଅନାଗତ ଦୂତୀ ଜାଣି ବରଷ ମଣ୍ଡଣା ॥ ୧୨ ॥

ଅଧିକେ ଦମ ଲୋଡ଼ଇ କରେ ବସ୍ତ୍ରହରଣ
ଅନ୍ତେ ମନ ପୀରତ ନୋହିଲା ସୁମରଣା ॥ ୧୩ ॥

ଅନ୍ଧକାର ବନେ ପନ୍ଥ ନ ପାଇ ଭ୍ରମନ୍ତି
ଅଥବା ବସୁଧୀ ମେଳେ କୁଞ୍ଜକେ ରମନ୍ତି ॥୧୪॥

ଅମ୍ଭ ଛନ୍ଦ ଘଟ ପର ଭଜନା ଚରମ
ଆଜ ବଫଳ ହୋଉଛି ପ୍ରେମ ସୁବେଶ ଶ୍ରମ ॥୧୫॥

— ଗାହା —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନବଦ୍ଧ —

ଅଚ୍ୟୁତ ଗଲେ ଶଙ୍ଖଚୂଡ଼ଂ ମାତ୍ର ନ ଦେଖି ଦୁଃଖିତ ଦୂତୀ
ଅଚାନ୍ତ ନଗରେ କର ଧରି ମୁଁ ମେଲିଲି ବର ଯୁବତୀ ।
ଅଭ୍ର ପଟଳ ପର ଶଠ ବାଣୀ ସ୍ୱପନେ ନ ଥିଲି ଜାଣି
ଅଦୃଶ ଗୋବନ୍ଦ ହୋଇଲା ଛଣିକ ହେବ ମୀନ ଲକ୍ଷଣୀ ॥୧॥

— ଗୀତ —

( କେଦାର ରାଗେଣ ଗୀୟତେ )

ଆସେ ଦୂତୀ ପ୍ରେମାକନ୍ଦ ଜବସ ଲପଟେ
ଅବଲୋକ ରାଧା ବାଧା କହଇ କୋପଟେ ।

୧ । (ଗ) ଶଙ୍ଖଚୂଡ଼

ଏକରୁଣ ଶଠ ହୃଦ ନୃହଇ କଳଚ
ଅନାଗତ ଦୁଷ୍ଟ ପଦ କମ୍ପା ବ୍ୟାକୁଳତ ।। ଘୋଷା ।
ଅଳ ସଙ୍ଗୀ ବାମାଙ୍ଗୀ ନରମେ ଚମ୍ପକଠାର
ଅଷ୍ଟିର ଯେ ଚିନ୍ମେ ଆନ ସୁମନ ପ୍ରକରେ ।। ୧ ।।

## — ବିପ୍ରଲବ୍ଧା ବୋଲି —

ଅଶ୍ରୁ ବାର ଧାରେ କରେ ଉରଜ ମାଜଣା
ଅଚ୍ୟୁତ ନ ଥିବା ଦୁଷ୍ଟ ବକମ୍ବରୁ ଜଣା ।। ୧ ।।
ଆଶା ଚଞ୍ଚ ଭଗ୍ନ ରସ ଜଳଧି ମଧ୍ୟରେ
ଅବଲମ୍ବ ଧ୍ୟାନେ କୃଷ୍ଣ ଗୃହୁ ରୂପ ଧରେ ।। ୨ ।।
ଅନର୍ଣ୍ଣଧାର ବିଷପୂ କେ ଦେବ ଶରଣ
ଆବେଷ୍ଟ ଉପୃଦ ମୀନ ତର୍ଜି ଋଣ ଋଣ ।। ୩ ।।
ଅପରାଧ ବିନା ମମ ବଧରେ ପ୍ରବର୍ତ୍ତି
ଆନନ୍ଦରେ ରମୁଥିବେ ବରଜ ଯୁବତୀ ।। ୪ ।।
ଅଶେଷରେ ହୃଦେ ପୂର ସେ ସୁରତ ଭାବ
ଅବକାଶ ନାହିଁ ମୋ ବିଷୟୁ ଚର୍ବି ଲବ ।। ୫ ।।
ଆଲମ୍ବିତ ଝୁମ୍ପା ବେଣୀ ନଗୁଇବ ସେହ୍ନ
ଅନଙ୍ଗ ଅହି ଖେଳିଲ୍ଲ ପର ହେମ ମହି ।। ୬ ।।
ଆନ୍ଦୋଳନ କଟି ଚଳୁଥିବ ସେ ଜଘନ
ଆଧୂତ ପବନେ ହେମ ରମ୍ଭାର ଶୋଭନ ।। ୭ ।।
ଅଧିକ ସ୍ୱେଦ ବିନ୍ଦୁରେ ଶିଶିର ମୟୂଖ
ଆବେଷ୍ଟିତ ହିମ କଣ ପର ରୁଚ ମୁଖ ।। ୮ ।।
ଆନ୍ଦୋଳିତ ତାଟଙ୍କରେ ମାଜ ହୋଇ ଗଣ୍ଡ
ଅଦରଣ ଝଳ ଖଣ୍ଡେ ଦେଉଥିବ ଦଣ୍ଡ ।। ୯ ।।
ଅତନୁ ଆଗମ ପର ସେ ସୁରତ କୁଞ୍ଜ
ଅନେକ ବିଧ ଫୁଟିବ ପକ୍ଷୀଧ୍ୱନି ପୁଞ୍ଜ ।। ୧୦ ।।

ଅଧର ମଧୁର ଆସବରେ ହୋଇ ମତ୍ତ
ଅପହୃତ ଜ୍ଞାନ କରିଥିବେ ସେ ସମସ୍ତ ॥ ୧୧ ॥

ଅତ୍ୟନ୍ତ ବକ୍ଷରେ ଚଳୁଥିବ ମୋତି ହାର
ଅର୍କଜା ସ୍ରୋତରେ କରେ ହଂସାଳି ବିହାର ॥ ୧୨ ॥

ଆକାଶରେ ଯେହ୍ନେ ସମୟେ ଉଦେ ହରିଣାଙ୍କ
ଆଖଣ୍ଡଳ ଦନ୍ତୀକରେ ଖେଳେ ପୁଣ୍ଡରୀକ ॥ ୧୩ ॥

ଅଙ୍କ ବ୍ୟାଜେ ଲଗିଅଛି ପୁଷ୍କରରୁ ପଙ୍କ
ଅବଲୋକ ବରବର୍ଣ୍ଣୀ ରାଧିକା ଆତଙ୍କ ॥ ୧୪ ॥

ଶ୍ଳେଷ—

ଆରେ ମନ୍ଦାନିଳ ସେନ ଯେ ଶୁଚି ମୂର୍ତ୍ତିକ
ଅଙ୍ଗକୁ ତୋ ଦହୁ କେତେ ଲଭିବୁ କୀର୍ତ୍ତିକ ॥ ୧୫ ॥

ଅନୁଜା ସମର ଲୋଡ଼ୁ ମୋ ଜୀବନ ହରି
ଅଗାଧ ବୁଦ୍ଧି ବିଶେଷ ମନୋରଥ କରି ॥ ୧୬ ॥

ଆଗତ ଯେହ୍ନେ ମଧୁ କମ୍ପା ନୋହିବ ନିର୍ଦ୍ଦୟେ
ଅଶନ କରିବ ମୋତେ ଯେଣୁ ତା ଉଦୟେ ॥ ୧୭ ॥

ଆଭରଣ ହାର ଅଗ୍ନି କିଶଳୟ ତନ୍ତୁ
ଅଚ୍ୟୁତ ବିନା କ୍ଷଣଦା କ୍ଷଣ ହୋଏ କଳ୍ପ ॥ ୧୮ ॥

— ଗୀତ —

(କେଦାର ସ୍ୱରେଣ ଗୀୟତେ)

ଅନ୍ୱୟ—

ଆସିଥିବେ ରାଧା ସଙ୍କେତ କୁଞ୍ଜେ ଚାନ୍ଦ ହରି ଆବୃତ
ଆଳସରେ ଗୋପ ସଙ୍ଗରୁ ଉଠି ଅଭିସାର ସେ ତ୍ୱରିତ ॥ ୧ ॥

— ଗୀତ —

( ଧନାଶ୍ରୀ ରାଗେଣ ଗୀୟତେ )

ଆସି କୁଞ୍ଜେ ପ୍ରିୟା ତନୁ ସୁରଭି ନ ଲଭ
ଅନାଗତ କି କାରଣେ ମୋ ପ୍ରାଣ ବଲ୍ଲଭ ।। ଘୋଷା ।।
ଆଶାସ୍ୱୀ ଚାତକ ମତ ଯଥା ଘନ ରସେ
ଆଗତ ପଥରେ ଦୃଷ୍ଟି ତଥା ମନ ରସେ ।। ୧ ।।

— ଖଣ୍ଡିତା ବୋଲି —

ଅପହୃତ ମାନ ନୋହେ କି ଦୂଷ୍ଣ ବଚନେ
ଅନଳ ନ ଲିଭେ ଜଳ କୁଶାଗ୍ର ସେଚନେ ।। ୧ ।।
ଅଶନି ଘାତେ ଅଖଣ୍ଡ ଚାତକୀ ଯେମନ୍ତ
ଅଧିକରେ ମମ ପ୍ରୀତି ନୀଳସୀ ତେମନ୍ତ ।। ୨ ।।
ଅସିତ ବାସ ପଣନ୍ତ ପ୍ରିୟାରି ସେ ମଣି
ଅନ୍ଧକାରକୁ ଆତୁରେ ନବେଶନ୍ତ ପାଣି ।। ୩ ।।
ଆଳି ଚନ୍ଦ୍ରାବଳୀ ରଜେ ଥିଲେ ଅନୁସରି
ଅଭିସାର ଅଚ୍ୟୁତରି ସେ କାଳେ ପ୍ରସରି ।। ୪ ।।
ଅତି ବେଗେ ଯାଇଁ ନିଜ ସଖୀରେ ଜଣାଇ
ଅଛନ୍ତି ମାଧବ ତବ ଗମନ ଅନାଇଁ ।। ୫ ।।
ଆତୁର ଶୁଣି ସେ ହୋଇ ଅଭିସାରୀ ବେଶ
ଅଳଙ୍କାର ବିଭ୍ରମରେ ଭେଟିଲେ ଶ୍ରୀକେଶ ।। ୬ ।।
ଅନ୍ଧକାର ସେ କେ ହ୍ୱୋଣ୍ଟସୁରେ କାମ ତମ
ଅନୁଭବୀ ସୁ ରସିକେ କର ତାରତମ ।। ୭ ।।
ଆଳିଙ୍ଗନ କଲେ ଦେଖି ଅଚ୍ୟୁତ ସଂଭ୍ରମେ
ଅଭୀଷ୍ଟ ଉଭୟୁ ଜୟ ମଦନ ସଂଗ୍ରାମେ ।। ୮ ।।
ଅଙ୍ଗୁ ସଙ୍ଗୁ ଜଣା ନୋହେ ଅସିତ ବସନା
ଆସ୍ୱାଦି ଶକ୍ତିଇ ସ୍ୱାଦୁ ଯେମନ୍ତେ ରସନା ।। ୯ ।।

ଅନ୍ତରେ ଜାତ ବସ୍ତୁ କଲ କେତେ କର୍ମ
ଆରକୂଟ ଭ୍ରମରେ ତେଜିଲ ଶୁଦ୍ଧ ହେମ ॥ ୧୦ ॥

ଆଳପ୍ତୁ ଚନ୍ଦ୍ରାବଳୀ ପେଟେଣି ଲେଉଟି
ଅନ୍ୱେଷଣା କରି ବ.ସ ସଜ୍ଜା ରାଧା ଭେଟି ॥ ୧୧ ॥

ଆଳି ଦେଖି ଜାଗ୍ରତ କରାନ୍ତେ ଉଠି ବସି
ଅଞ୍ଜଳି ବନ୍ଧରେ ହରି ସ୍ତୁକତରେ ଭାଷି ॥ ୧୨ ॥

ଅଙ୍ଗନା ଗୁମ୍ଫୁକୁ କରି ଦୁଷ୍ଟାକ ପ୍ରେଷଣ
ଆଟମ୍ବ ଗଲୁ ଶୁଣି କୋପ କୁମାରୀ କଷଣ ॥ ୧୩ ॥

ଅନ୍ତକ ନବାସେ ଶଙ୍ଖଚୂଡ଼କୁ ପ୍ରେଷିତ
ଆସୁ ଆସୁ ପୂରେ ହେଲ ନଣା ବଶେଷିତ ॥ ୧୪ ॥

ଆଖିର ସଖିରୁ ମତ୍ତ ଚଞ୍ଚଳରେ ଆସି
ଆଗତ ପଥରେ ଦୃଷ୍ଟି ଦେଇ କୁଞ୍ଜେ ବସି ॥ ୧୫ ॥

ଅତି ବଳମ୍ବ ହେବାରୁଁ ପ୍ରଳମ୍ବ କୁନ୍ତଳେ
ଅନ୍ୱେଷଣା କରି ଭେଟି ବାସ ସଜ୍ଜା ତଳେ ॥ ୧୬ ॥

ଅଛୁ କ ମୋ ଦୋଷ ଭବ୍ୟ ଚିତ୍ତରେ ବଚାର
ଅନଙ୍ଗ ବ୍ୟାଧି କଟବ ରସ ଉପଚାର ॥ ୧୭ ॥

ଅବଳାମଣି ନ ଶୁଣି ଦେଖାଇ ଚରମ
ଆଦରଣ ଇନ୍ଦୁଲେଖା ସେତେବ ମନୋରମ ॥ ୧୮ ॥

ଅଚ୍ୟୁତର ରତି ଚିହ୍ନ ରୂପ ଆଦରଣେ
ଅନେକ ଉପମା ଦିଇ କୃତ ଆଦରଣେ ॥ ୧୯ ॥

ଅନୃତ ନ କହ ନେତ୍ର ଚିହ୍ନ ପ୍ରେତ୍ସ ରାଗ
ଆମ୍ଭରେ ବରାଗ ପ୍ରିୟ ରାମାରେ ସରାଗ ॥ ୨୦ ॥

ଆମୟୁ ତା ନେତ୍ର କଷାୟନେ ହରି ରସେ
ଆଧି ମାଇ ବ୍ୟାଧି ମମ ବଢ଼ାଅ ସରସେ ॥ ୨୧ ॥

ଅଞ୍ଜନରେ ରଦନ ବସନ ତନୁ ସାମ୍ୟ
ଅରୁଣ ରତ୍ନରେ ଇନ୍ଦ୍ରମାଳ ମୀନା ରମ୍ୟ ॥ ୨୨ ॥

ଅଲକ୍ତ ରଙ୍ଗରେ ବ୍ୟକ୍ତ ହୃଦସ୍ଥଳ ଘାତ
ଅର୍କଜା ଉଦରେ ସ୍ଫୁଟ କୋକନଦ ଭ୍ରାନ୍ତ ।୨୩।।

ଅଙ୍କିତ ଭ୍ରମର ପଦ୍ମ କେ ଶର ନକାୟୁ
ଅତ ସୁଷମ କୁଙ୍କୁମ ଯୋଗେ ତଥା କାୟୁ ।।୨୪।।

ଅସିତ ନଭେ ଉଦୟୁ ମିହ୍‌ ପରି ବକ୍ଷେ
ଅରୁଣ ସିନ୍ଦୂର ବନ୍ଦୁ ରହିଛି ଛତକ୍ଷେ ।।୨୫।।

ଆଖଣ୍ଡଳ ମାଳରେ ସୁନାଶ୍ୱ ଦଣ୍ଡ ଗାର
ଅଟେ ରତି ଜୟ ଲେଖ ସ୍ୱେ ଶୋଭା ଆଗାର ।୨୬।

ଅଙ୍ଗଦ ଚିହ୍ନେ ମର୍କତ ବପୁ ସୂଚକମ
ଅସ୍ତ୍ରବ୍ୟସ୍ତ ଗୃହ୍ଣୁ ଚୁଳ ଗଳିତ କୁସୁମ ।।୨୭।

ଅତ୍ରୁ ତାର ସେ କାମ ଦୁସ୍ତର ତରଙ୍ଗିଣୀ
ଆଶ୍ରୟ କରନ୍ତା କୋକ ସେ ରସ ରଙ୍ଗିଣୀ ।୨୮।

ଅଧୋମୁଖେ ରହି କୁଚ ଗୃହିଁ ସେ ମହିଳା
ଅସ୍ତାଚଳେ ବିଧୁ ପଣେ ସ୍ୱେ ଶୋଭା ବହିଲା ।୨୯।

ଅଶ୍ରୁ ନେତ୍ର ପଦ୍ମନଡ଼ ଅଷ୍ଟିଦ୍ରେ ବହିଲା
ଅବମା ବନତା ନଖ ଲେଖାରେ ଶୋହିଲା ।।୩୦।

ଆମ୍ରେଶ୍ୱର ବଶକୁ ମନ୍ତ୍ରଣା କର ମନ୍ତ
ଆଚରେ ବେଦନ ମନ୍ତ୍ର ବିଧାନ ବତନ୍ତ ।।୩୧।। *

ଅବାଣୀ ପ୍ରାବୃଟ ପିକ ପରି ବୃନ୍ଦା ଆଢ
ଅଗାରକୁ ଗଲେ ମାନ ସମ୍ପଦ୍‌ ସମ୍ବାଦ ।।୩୨।।

ଆନନ୍ଦ ହୃଦରେ ଚନ୍ଦ୍ରାବଳୀ ଆଣ୍ଡବର୍ଗ
ଅବିରତ ଖେଳ ଜାବଟେ ପରିବେଶ ବେଗ ।୩୩।

ଅକ୍ଷି କଷାୟିତ ଦର ମୁକୁଳ ସାରସ
ଆଜ ବୋଲେ ଉନଦ୍ରୁହଁ ଘୂର୍ଣ୍ଣିତ ସରସ ।।୩୪।

---

* ପ୍ରକ୍ତଂ ତ—
ରୁଦ୍ଧତଂ ମୁଦ୍ରତଂ ମନ୍ତ୍ରଂ ଯୋଷିତାମୁଗ୍ରଷିତ୍ମାଷ ମାଘେ ।।ପୋଥିପାଠ।।

ଅନଙ୍ଗ କେଳିରେ ଚନ୍ଦ୍ରାବଳୀ ସଙ୍ଗେ ହରି
ଆସକ୍ତ ବଚନ ବିଭ୍ରମରେ ନଶା ହରି ।।୩୫।।

ଆସ୍ତୁଁ ଅନୁଗତ ବୃଷ ଛର ସୁରଭିରେ
ଆମ୍ଭେ ନଦେଖିଲୁ ପ୍ରାତ ଗୃହ୍ନଁ ଲୋକଷ୍ଟ ରେ ।୩୬।

ଅଙ୍ଗୀକାର ବନା ସଖୀ ଦେଖାଇ ଉନ୍ନତ
ଅଳତା କପୋଳ୍ପଁ ଜାଣିଥିବ କୃଷ୍ଣ ନତ ।।୩୭।

ଅଳଙ୍କାର ମନ୍ଦ ଖ୍ୟାତ କରେ ସେ ସସ୍ମିତ
ଆଳସ୍ୟକୁ ଗତ ଶୁଣି ରାଧିକା ବସ୍ମିତ ।।୩୮।।

ଅଦ୍ଭୁତ ଦୃତ ସେ ମାନ ଭଙ୍ଗି ପ୍ରଜ୍ୱଳିତ
ଆଳିଙ୍କି ବୋଲନ୍ତି ହୃଦ କୃଷ୍ଣର କଳିତ ।।୩୯।।

ଆଜ ବାରେ କେହ୍ନ ନ କହ୍ନବ ସେ ଚରିତ
ଆନ ଦେଇ ମତ୍ତେ ରାମା ବରସ ହରିତ ।।୪୦।

ଅର୍କ ତିଥି ପ୍ତେ ଶ୍ୟାମସୁନ୍ଦର ଦେବ ଭାଷ
ଅଷ୍ଟ ଚତ୍ୱାରିଂଶ ଶତାଧିକ ପଦେ ଶେଷ ।।୪୧।।

---

## — ତୃତୀୟ କୁସୁମ —

### ॥ ଦ୍ୱିତୀୟ ବସ୍ତ୍ରଗ ବୋଲି ॥

— ଗାଥା —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନବଦ୍ଧ—

ଅଚ୍ୟୁତ ରାଧିକା ବିରହେ ଦୁଃଖୀ
ଆସି ଗୋଷ୍ଠେ ନର୍ମ ସଖାଙ୍କୁ ଦେଖି ।
ଅଧୀରେ ଉତ୍ପନ୍ନ ପ୍ରସ୍ତାବ କଲ୍ପ
ଆତୁର ନୁହଁ ବୋଧ କଲେକ ସେହ୍ନ ॥୧॥

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଆଖେଳସ୍ଥଳୁ ଆଗତ    ମାତା କ୍ଷୀର ସ୍ରବତ
ଦୁଃଖୀ କୃଷ୍ଣ କ୍ଷୀଣ ରୂପ ଗ୍ରହି
ଅଚ୍ଛତଂ ହେଲା ଅଶନ    ନାହିଁ ମୁଖେ ପରସନ
ମାନସରେ ହୀଡ଼େ ହଂସୀ ରହିଁ ॥୧॥

### — ମାନ ଭଙ୍ଗ ବୋଲି —

(ଗୋବର୍ଦ୍ଧନଚନ୍ଦ୍ର ବୋଲି ବାଣୀରେ)

ଆଣି ଗାବ ସଖାମେଳେ ପୁନ ଯମୁନା ପ୍ରାନ୍ତରେ
ଅଙ୍ଗ କାମାଗ୍ନିକ ଜାଳେ ଧୀର ବାତ ବଚତରେ ॥୧॥

---

୧ । (କ) ଆଚର

ଅଳଙ୍କାର ମାନ୍ତଶାସ୍ତ୍ର ସଖା ମେଳରେ ବିସ୍ତର
ଅଛି ଭେଦ କିମ୍ବା ସାମ ଦାନ ଉପାୟ ଚତ୍ୱାର ॥ ୨ ॥

ଆଳମାନଙ୍କୁ କରଣ ପ୍ରୀତି ସମ୍ପାଦିବା ଭେଦ
ଆଭରଣ ବ୍ୟାଜେ ଦାନ ସାମ ଛଳେ ନତି ପାଦ ॥ ୩ ॥

ଅହେତୁକ ସହେତୁକ ମାନ ଦ୍ୱିବିଧ ବିଧିରେ
ଅହେତୁକ ସ୍ୱୟମେବ ସାନ୍ୟ ଭଜେ ଖ୍ୟାତ ଧୀରେ ॥ ୪ ॥*

ଅଟେ ଯେ ଈର୍ଷ୍ୟା ମାନ ବୃଦ୍ଧି ଜାଣିମା ବିଷୟ
ଆସି ଦୂତୀକ ପୃଚ୍ଛୁ ସେ କହିଲ ଅତିଶୟ ॥ ୫ ॥

ଇଭମାନେ ରାଧା ଗେହେ ବାଧା ଲଭିଲେ ସରସ
ଅବନେକ ଥିଲେ କାନ୍ତ ମୁଖ ସାରସ ନିରସ ॥ ୬ ॥

ଅନୁଭାବ ଦୈବ ନିନ୍ଦା ଭୂମି ଶୟନ ରୋଦନ
ଅଙ୍ଗ ବୈବର୍ଣ୍ଣ ସ୍ତମ୍ଭ ଉଶ୍ୱାସ ନିଶ୍ୱାସ ଜନନ ॥ ୭ ॥

ଅପସ୍ମାର ମୋହ ବ୍ୟାଧି ଗ୍ଲାନି ତାପ ନିର୍ବେଦତା
ଅଧିହୃତି ଶ୍ରମ ବିଷାଦ ଉନ୍ମାଦ ଜଡ଼ ଚିନ୍ତା ॥ ୮ ॥

ଆଖ୍ୟା ବିପ୍ରଲମ୍ଭ ଶୃଙ୍ଗାର ଯେ ଶୋକ ସମାତୁରେ
ଅଟେ ରତି ପ୍ରାପ୍ତି ପୁନଃ ମତି ସମ୍ଭୋଗ ହେତୁରେ ॥ ୯ ॥

ଇଷ୍ଟ ସଙ୍ଗମକ ଜଗି କହ୍ନ ନିଜ ଇଚ୍ଛିତ
ଅବକାଶ ଦେଖି କରାଅ ମୋ ବିଷୟ ସମ୍ମତ ॥ ୧୦ ॥

ଆଦ୍ୟ ସଖୀ ବୋଲେ କୃତ ମଧ୍ୟ ଉର ଅମରଷ
ଅଛି ଅଚ୍ଛିଦ୍ରରେ ହୃଦେ ନ ସମ୍ଭାଇ ବାଣୀ ଲେଶ ॥ ୧୧ ॥

ଇଷ୍ଟେ ନ ଦେଖଇ ଯେତେ ମଣି ବର୍ଣ୍ଣରେ ସୁଷମ
ଅଜ ତାମ୍ବୁଳକୁ ଝଦର ଠେଲିଲୁ ଜାଣି ଶ୍ୟାମ ॥ ୧୨ ॥

---

ଟିପ୍ପ° ତ —

* ପତ୍ୟୁରନ୍ୟ ପ୍ରିୟା ସଙ୍ଗେ ଦୃଷ୍ଟେଽଥାନୁମିତେ ଶ୍ରୁତେ ।
ଈର୍ଷ୍ୟାମାନୋ ଭବେତ୍ସ୍ତ୍ରୀଣାଂ ତତ୍ର ତ୍ୱନୁମିତି ସ୍ତ୍ରିଧେତି ସାହିତ୍ୟ ରତ୍ନାକରେ ॥
॥ ପୋଥିପାଠ ॥

ଆଳି ବିଶାଖା କହେ କସ୍ତୁରୀ ଦେଖିଲେ ବିମୁଖ
ଅବଲୋକ ମାଳାମ୍ବର ଚିହ୍ନା ବୋଲେ ଅଧୋମୁଖ ।୧୩।

ଅତି ଦୂର ଶ୍ୟାମ ବୃମର କହେ ଚମ୍ପକ ଲତା
ଆଳି ଇନ୍ଦୁଲେଖା ବୋଲେ ନିଜ ରୂପ ମଞ୍ଜୁଲତା ।୧୪।

ଆଦରଣେ ନ ଦେଖଇ ତବ ରୂପ ଜାତ ମନେ
ଆପେ ତୁଙ୍ଗବିଦ୍ୟା ବୋଲେ ପରିବାଦମା ବାଦନେ ।୧୫।

ଆଳାପରେ କୃଷ୍ଣ ଘନ କାନ୍ତି କରନ୍ତେ ରୂପକ
ଆଣି ପାଣି କଣ୍ଠେ ଦେଇ ଚାପ ନିକଟେ ବ୍ୟାପକ ।୧୬।

ଆଜ ସଗେରଙ୍ଗଦେବୀ ବୋଲେ ତବ ନାମ ଧରୁ
ଇତି ବିମୁଖ ଜାଣି ଆସିଲି ପ୍ରେମ ଅପରାଧରୁ ।୧୭।

ଅମ୍ବୁ ଜମ୍ବୁନଦ ଝରରେ କାଳିନ୍ଦୀ ନୀର ସେବ
ଆଚମନ ଗୁଡ଼ିବ ମନ ସେ କହିଲେ ସୁ ଦେବୀ ।୧୮।

ଆଶା ଭଙ୍ଗ କରି ଅଭିସାରି ରତି ଲାଳସୀର
ଆସ ରତି ଚିହ୍ନ ଧରି ହେ ରସିକ ସୁନାସିର ।୧୯।

ଅଟେ ପ୍ରାଣ ସମା ଯଜିଁ ରମା ଟେକ ପାରେ ସନ୍ଧ
ଅନ୍ଧକାରେ କୃଷ୍ଣ ବୋଲେ ସବନ୍ଧଶେ ସେହି ସନ୍ଧ ।୨୦।

ଅମ୍ଭୋଜନୀ ଭ୍ରମେ ଅଳି କୋକନଦେ ନନ୍ଦ ରତି
ଅପରାଧ କ୍ଷମା କରଅ ନୋହିଲେ ନବ ରତି ।୨୧।

ଅଷ୍ଟ ସଖୀ ବୋଲେ ଅଦୃଷ୍ଟ କରିଛି ଦଇବ
ଆମ୍ଭେ ଉଦ୍ୟମ କାରଣି କର୍ମେ ଥିବ ଯା ହୋଇବ ।୨୨।

ଅନ୍ତ ଶେଷରେ ସକଳେ ଠାକୁରାଣୀ ପାଶୁଣରେ
ଅକ୍ଷିପଦ୍ମ ଅମୁଦ୍ରିତ ଚଣ୍ଡ ତାପ ପଶୁଷରେ ।୨୩।
ଅନ୍ତ୍ୟକରେ ସର୍ବ କାବ୍ୟ ଘଣ୍ଟ କଥା ପଟ୍ଟରେ
ଅତି ସୁଖ ପରକୀୟା ଭୋଗ ଶୃଙ୍ଗାର ରସରେ ।୨୪।
ଅମ୍ଭୋଜନୀ ପରକୀୟା ଲକ୍ଷୀ ତ ବିଧୁକରେ
ଅଧିକରେ ସୁଖ ରସେ ନେତ୍ର ମୁଦ୍ରିତକୁ କରେ ।୨୫।
ଅବାରିତ ବାତକୁଁ ଗବାକ୍ଷାନଳ ସୁଖ ଶୀତ
ଆଶା ଅବଲମ୍ବ କରିଥିବେ ପୁରୁଷ ପୋହିତ ।୨୬।

ଅନଙ୍ଗରେ ଉତ୍କଣ୍ଠ ତା ହୋଇଥିବେ ଦରଶନେ
ଅଭିସାର ଚୁମ୍ବ ଆଲିଙ୍ଗନ ମୁଖ ମରସନେ ॥ ୨୭ ॥

ଅଭି ମଦନ ଅ,ଙ୍କୁଁ କେ କାନ୍ତା ମାନିନୀ କାନ୍ତରେ
ଅନିଳ ଶୀତଳ ମନ୍ଦ ପିକ ଡାକ ପ୍ରେକାନ୍ତରେ । ୨୮ ॥

ଅପହୃତ ନିଜ ଦୋଷୀ କରେ ପ୍ରେ ଭର୍ତ୍ତୃ ନୃପତି
ଅନ୍ୟ ଅର୍ଥେ ଅଭିସାର ଅନ୍ଧ ନିଶିରେ ଦମ୍ପତି ॥ ୨୯ ॥

ଆସି ଭ୍ରମେ ମିଳେ କାମକ୍ରୋଧେ ଆରମ୍ଭିଲେ ରତି
ଆଳାପେ ଜଣା ସାହାସ ରତି ଗୋପନା ଭାରତି । ୩୦ ।

ଆଗତ ମୁଁ ହୋଇଥିଲି ତବ ସତ୍ତ ଜାଣିନାରେ
ଅନ ନାଥ ନ ସ୍ମରଣ ପରା ବଶ ହୋଇ ମାରେ । ୩୧ ।

ଆପେ ନିଜ ରସ ମୁଖ ମିଶି ପ୍ରବୃତ୍ତ ବଲ୍ଲଭା
ଆଦ୍ୟ ସଖୀ ବୋଲେ ଯଥା ଚନ୍ଦ୍ରାବଳୀ କୃଷ୍ଣ ଲଭି ।୩୨।

ଅଲଙ୍କାର କାବ୍ୟ ନାଟ୍ୟ ସତ୍ତ ସୁଧାକର କର
ଅପହୃତ ଶ୍ରୀ ରାଧିକା ମାନ ତ ମିଶ୍ର ପ୍ରକର ॥ ୩୩ ॥

ଆଳି ଭୃଙ୍ଗବଦ୍ୟା କନ୍ଦ ତ ଭାବମୟୀର କଥା
ଆଦ୍ୟେ ଶୁଣ ଅଷ୍ଟ ସଙ୍କେତମୟୀର ଯେ ବେବସ୍ଥା ।୩୪।

ଅଗ୍ରଜନ୍ମା କନ୍ୟା ଧନ୍ୟା ପ୍ରେକ ଅଟେ ପତିବ୍ରତା
ଅସମର୍ଥ ପତି ରୋଗୀ ପଙ୍ଗୁ ସେବନରେ ରତା । ୩୫ ॥

ଅବଲୋକେ ଗ୍ରାମେ ବାର ବିଳାସିନୀ ଶୋଭା ଧନେ
ଅନଙ୍ଗର ବାଣ ଗୁଣେ ଖିନ୍ନ ବଞ୍ଚେ ମନ ଧନେ ॥ ୩୬ ।

ଅଙ୍ଗନା ତା ଜାଣି ପତି ବ୍ୟଥା ହରଣେ ତତ୍ପର
ଅଳାରକୁ ପରିଷ୍କାର କରେ ଉଷାନ୍ତୁ ବେଶ୍ୟାର ॥ ୩୭ ।

ଅଦ୍ଭୁତ ଦେଖି ଧନେ ଜଗେ ପର୍ଯ୍ୟନ୍ତୁଁ ସେ ଭାଷି
ଆମ୍ଭେଶ୍ୱର ମୋର ତବ ଶୋଭା ଜଳଧିରେ ଭାସି ॥୩୮।

ଆବେଦାଇ କୋଳ କର ପାର ବୋଲନ୍ତେ ତରୁଣୀ
ଅନ ପତି ନଶ,ମୁକ୍ତେ ବେଶ୍ୟା ବୋଲେ ହେଲି ରାଣୀ ୩୯॥

ଆସେ ଶିରେ ଧରି ପତି ମୁଦେ ତମ ଲଗାବେଳେ
ଅଙ୍କୁ ଶୁଳେ ବସି ଋଷି ପୂର୍ବ ପାପ କର୍ମ ବଳେ । ୪୦ ॥
ଅଙ୍ଗେ ବାଜ ବ୍ୟଥା କହେ ପ୍ରାତେ ଛେଦ ହୃତାଶିର
ଅନ୍ତେ ଚନ୍ଦ୍ର ନାସ୍ୟ ବୋଲେ ଅନ୍ତ ନୋହୁ ପ୍ୟେ ଲଗିର । ୪୧ ॥
ଅତି ତୃପ୍ତି ମତି ପତି ରମୁ ଵାର ରମଣୀରେ
ଆନ ନୋହୁ ବାଣୀ ବେଗ ସପ୍ତଗ୍ରହ ଧରଣୀରେ ॥ ୪୨ ॥
ଅମରେ ତା ଜାଣି ପତି ସଦ୍ୟ ବସାଇଲେ ନାକ
ଅତି ଦୁଷ୍ଟ କ୍ରୁର ଚକ୍ଷୁବାକ ପାରୁଷ୍ୟ ନାସ୍ତକ ॥ ୪୩ ॥
ଅନ୍ତେ ସେ ଦୋଷ ନ ଯେନ ହେବ ସୁପ୍ରସନ୍ନମୁଖୀ
ଅଙ୍ଗନାଙ୍କ ମଧ୍ୟେ ଧର୍ମ ଭଜନରେ ତାକୁ ଲେଖି ॥ ୪୪ ।*
ଅତି ଲଜ୍ଜିତ ଜତ ଚନ୍ଦ୍ରମାମୁଖୀ ଶ୍ରବଣରେ
ଅଭିଳାଷ କୃଷ୍ଣେ କଳହାନ୍ତରିତା ଲକ୍ଷଣରେ । ୪୫ ॥

— ଗୀତ —

(ଶ୍ରୀ ଗଣେଶ ଗୀଯ୍ୟତେ)

ଅବଲମ୍ବେ ଗୋବନ ଶୋଭା ମୁଖାରବନ
କେହୁ କରାଇବ ଦରଶନ
ଆଗହୁଁ ମୁଁ ବୁଡ଼ିଲି ଚନ୍ଦ୍ରା ଜଳେ ବୁଡ଼ିଲି
କାନ୍ତରେ ନୋହିଲି ପରସନ । କଉରେ ସଜନ ।୧॥
ଅଜିଥିଲି କରମେ ଧାତା କର୍ମା ଭରମେ
ନ ହୁଡ଼ ଲେଖିଲା କପୋଳରେ
ଆଲୋକଲି ମଦନ କୃଷ୍ଣ ମୁଖ ନଳନ
ଗଲେ ପାଶୁଁ ଖେଦ ପ୍ରବଳରେ । କଉରେ ସଜନ ।୨।

---

* ଶ୍ଳୋକଃ—

ଅପ୍ରିୟ୍ୟାଣ୍ୟପିଯାଚୋକ୍ତା ଦୃଷ୍ଟା ବା କ୍ରୂର ଚକ୍ଷୁଷା ।
ସୁପ୍ରସନ୍ନମୁଖୀ ଭର୍ତ୍ତୁ ସା ନାସ୍ୟ ଧର୍ମଭାଜନା ॥
(ଇତି ଇତିହାସସମୁଚ୍ଚୟେ) ॥ପୋଥିପାଠ॥

## — କଳହାନ୍ତରିତା ବୋଲି —

ଆଳି ଆଳିରେ ବୋଲଇ ବାଳି କଲି କି କରମ
ସ୍ୱପନରେ ଶୟନରେ ଦେଖି ନ ଥିଲେ ଚରମ ॥ ୧ ॥

ଅତି ବିନତି କହନ୍ତେ ପତି ହେଲି ସେ ଭରମ
ଅନାଦରେ ପୃଷ୍ଠକୁ ଦେଖାଇଦେଲି ସେ ଶରମ ॥ ୨ ॥

ଆସ୍ୟ ଚନ୍ଦ୍ରକୁ ଚକୋର ପରି ହୋଇ ସେ ଆଶାୟୀ
ଆପ୍ୟାୟିତ କମ୍ପା ନ କଲି ଅଧରୁ ସୁଧା ଦେଇ ॥ ୩ ॥

ଆଲିଙ୍ଗନକୁ ବଢ଼ଇ ଥିଲେ କର ପେଲି ଦେଲି
ଅଣିମାଦ ଭୋଗ ଯୋଗ ଛାଡ଼ି କାମ ଦଶାରେ ବଞ୍ଚିଲି ॥ ୪ ॥

ଅଙ୍କେ ଆସନ କରିବା ସୁଖ କମ୍ପା ମୁଁ ଛାଡ଼ିଲି
ଅବମାରେ ବାସ ଅବଶେଷ ଶୟନେ ଜଡ଼ିଲି ॥ ୫ ॥

ଅଲକ୍ତରେ ବ୍ୟକ୍ତ କରିବ କହିଲେ ରାଗପଦ
ଅଟେ ମନ୍ଦଭାଗ୍ୟ ବାଣୀ ନ କହିଲି ରାଗପଦ ॥ ୬ ॥

ଆବେଷ୍ଟିତ କରିଥାନ୍ତି ପ୍ରିୟ ଗଳକୁ ଭୁଜରେ
ଝଷି ଦେଇ ଦର ବଦଳିତ ନୟନ କଞ୍ଜରେ ॥ ୭ ॥

ଅଳି ଅପାଙ୍ଗ ଚୁମ୍ବାଇ ଥିଲେ ତନୁ ଇନ୍ଦୀବରେ
ଅନୁଗ୍ରହ ଲଭ କାନ୍ତ ବେଶ ସେନେହ ପ୍ରକରେ ॥ ୮ ॥

ଅନୁରାଗୀରେ ବିରାଗୀ ହେବା ଫଳଲଭ ମତେ
ଅର୍କଭ୍ରମ ରଶ୍ମି ମଳୟଜ ସ୍ଫୁଲିଙ୍ଗ କେମନ୍ତେ ॥ ୯ ॥

ଅନୁଭବ ହେଲା ପ୍ରିୟ ଦ୍ୱେଷୀ ବୋଲି ବନପ୍ରିୟ
ଅଳି ଆଦି ଧୀର ସମୀରଣ ହୋଇଲେ ଅପ୍ରିୟ ॥୧୦॥

ଆଶିଦେବ କେଶର ସରସ ନଖ ଦେଲି ଛାଡ଼ି
ଅଟେ ଲେଖା ଯେଣୁ କାନ୍ତାରେ କାନ୍ତରେ ପ୍ରିୟ ପଡ଼ି ॥୧୧॥

ଆପେ ବାସରେ ବାସରେ ବାସରେ ଚୋଳ ଭୂଷଣେ
ଅଗୀର ଅମ୍ବର ଅବିରତ ପୂର୍ବ ବରଷଣେ ॥ ୧୨ ॥

ଆଳି ବୃନ୍ଦ ରସେ ହରଷେ ହରଷେ ଶମନରେ
ଆସେ ବହଗ ହର ହର ଅମ୍ବର ବଜନରେ ॥ ୧୩ ॥

— ଗାହା —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନୁବନ୍ଧ—

ଅର୍କସ୍ଥଳ ରାଧା ଚନ୍ଦ୍ରର ଖେଳରେ କୃଷ୍ଣଙ୍କୁ ଦେଖି ମାନସ
ଅବମା ଲେଖିବା ଦେଖି କୃଷ୍ଣ ଗୃହ କଲେ ସେ ଅଧୋଆନନା ।୧।

—ଗୀତ—

(ଛନ୍ଦ ମଞ୍ଜରୀ ରାଗେଣ ଗୀୟତେ)

ଅମରଷ ଅମରଷ କଳମୋହ୍ନଂ ତେଜ
ଅଛରରେ ଅଛରରେ ବନ୍ଧି ପାଶ ଭୁଜ ଗୋ ॥ ୧ ॥
ଆଶୀବିଷ ଅସି ବସମସ୍ତେ ପୁଲ୍କଶର
ଅନ୍ତକର ଅନ୍ତଃକରଣରେ ପଶେ ମୋର ଗୋ ॥ ୨ ॥
ଆନନରୁ ଆନ ନ ରୁଚଇ ବଦ ସୁଧା
ଅସନରେ ଆସ ନରେଶ ଯାହାର ବାଧା ଗୋ ॥ ୩ ॥
ଅନାରମ୍ଭ ଅନାରମ୍ଭ ଉନ୍ମନ ବେଶ
ଅସପଦ ଆସପଦ ମଣ୍ଡ ମୋ ଶିକ୍ଷ ଗୋ ॥ ୪ ॥
ଅମ୍ବରୁହ ଅମ୍ବରୁହ ବଣ ଅଶ୍ରୁମୁଖି
ଆସେଚନ ଆସେଚନକାଙ୍କୀ କୁଚେ ଦୁଃଖୀ ଗୋ ॥ ୫ ॥
ଆଜନମ ଆଜନମ ଯେବେ ସୁଖୀ ହୁଅ
ଅପସର ଅପସର କୁଚେ ଅଉଜାଅ ଗୋ ॥ ୬ ॥

୧ । (କ) କଳମୋଧ୍ୱନା

ଅନୁସର ଅନୁସରତରେ ଗଲି ଭାସି
ଆକରଷ ଆକର[1] ସମସ୍ତ ସୁଖ ରାଶି ଗୋ ॥ ୭ ॥

ଆଦରଣ ଆଦର ସଜନ ଦେଖ ଚନେବ
ଅନ୍ତରଙ୍ଗ ଅନ୍ତରଙ୍ଗ ଭେଦ ଅଛୁ ଗାବ ଗୋ ॥ ୮ ॥

ଆନକର ଆନ କରଜରେ ଲେଖୁଁ ମନ୍ତ୍ର
ଅବଗ୍ରହ ଅବଗ୍ରହ ରଙ୍ଗେ ଅଙ୍ଗେ ଲନ୍ତ୍ର ଗୋ ॥ ୯ ॥

ଅପସର ଅପସର ସୁତନୁ ଆଶ୍ରିତେ
ଅନିମିଷ ଅନିମିଷ ନେତ୍ରା କର ରତେ ଗୋ ॥ ୧୦ ॥

ଅଧରଷ ଅଧ ରସବନ୍ତ ହନ୍ତୁ ବୃଥା
ଅଗାରଭୂ ଅଗାର ଭୂଷଣି ଟେକ ମଥା ଗୋ ॥ ୧୧ ॥

— ମାନ ଗୃହ୍ଣ ବୋଲି —

ଅପରାଧୀ ହେଲି ଯେବେ କର ଚନ୍ଦ୍ରହାସ ଘାତ
ଅତ ରସ କୂପକୋପରେ ପକାଅ ଗୋ ସଂଘାତ ॥ ୧ ॥

ଅଟେ ଯୁକ୍ତ ନେତ୍ରୁ ଛବ ହର କୁଚ ଅଛୁ ଲୁଚ
ଅନୋଚତ ଚନ୍ଦ୍ରଜତ ମୁଖ ଲୁଗ୍ରଜ କ ପାଞ୍ଚ ॥ ୨ ॥

ଅମୃଦୁ ବା ମୃଦୁ ତବ ବାଣୀ ମୋ ସୁଖ ବର୍ଦ୍ଧନ
ଆପ ବର୍ଦ୍ଧି ବେନ ରୁଷେ ରଷ ପଞ୍ଚ ମୂଢ ଧନ ॥ ୩ ॥

ଅଙ୍କସ୍ଥାନ ବଧୂମୁଖ ଅଶ୍ରୁ ଅଞ୍ଜନ ମ୍ଲାନରେ
ଅନୁକମ୍ପା ବଧୂରେ ତା ସାମ୍ୟ ବସ୍ତୁ ଆନନରେ ॥ ୪ ॥

ଆଣି ରତି ଶ୍ରମ ସ୍ୱେଦ ନୀର ଭର କୁଚକୁମ୍ଭ
ଅନ୍ତେ ମଦନ ଅନଳ ଜଳେ ସେଚନ ଆରମ୍ଭ ॥ ୫ ॥

ଅମଣ୍ଡନେ ଅଛୁ ଚଢ଼ା ଦେଖ ହୋଇ ହରଷଣ
ଅଙ୍ଘ୍ରି ସ୍ଥଳ ସରସିଜ ଗଣ କର ଗୋ ଭୂଷଣ ॥ ୬ ॥

---

୨ । (କ) ଆକରଷ

ଆଗେ ପାଦକୁ ବଢ଼ାନ୍ତେ କର ଘୋଡ଼ାଇ ଅଞ୍ଚଳେ[1]
ଆଳି ବୋଲନ୍ତି ଦେଖ କୃଷ୍ଣଙ୍କୁ ନୟନ ଚଞ୍ଚଳେ ॥ ୭ ॥

ବିବ୍ବୋକ—

ଅନାଦର କରନ୍ତି ଉନ୍ମୋତ୍ତ ବନସ୍ତ୍ରୀ ବନମାଳୀ
ଆଣି ବାମ ଲୋଚନା ପଦକୁ ସାଇଁ କର ବାଳ ॥ ୮ ॥

ଔଦାର୍ଯ୍ୟ—

ଅଳଂକାର ଔଦାର୍ଯ୍ୟକୁ ରାମା କରଇ ପ୍ରକାଶ
ଅନୁତ୍ତମ କାମ ଦୂର ହାସ ବିଧୂ ସଂକାଶ ॥ ୯ ॥
ଆଳି ବୋଲନ୍ତି କୃଷ୍ଣଙ୍କୁ ଆଜ ସୁଖ ମନସାରେ
ଅଭିସାର ସାରସାକ୍ଷୀ ହେବ ଯେ ତ ନିଶାରେ ॥ ୧୦ ॥
ଅବଧି ଶୁଣି ଅବଧିରତ ଚନ୍ଦ୍ରମୁଖ ଗୃହଁ
ଆଳୟକୁ ଗଲେ ରାଧା କୃଷ୍ଣ ସଖା ମେଳେ ରହି ॥ ୧୧ ॥
ଆସେ ପ୍ରଦୋଷେ ସୁରଭି ବ୍ରଜେ ସୁରନଦୀ[2] ଧାର
ଅଙ୍କାଳରେ କୃଷ୍ଣ ବଚ୍ଛେଦାର ଲିବଇ[3] ରାଧାର ॥ ୧୨ ॥

ମୋଟ୍ଟାୟିତ[4] —

ଆଳି ସଂକେତ ପ୍ରସଙ୍ଗ କହୁଁ ରତେ ମୋଟ୍ଟାଇତ
ଅତ କୃଷ୍ଣା କର୍ଣ୍ଣକଣ୍ଡୂ ବପୁ ପୁଲକେ ପୂରିତ ॥ ୧୩ ॥
ଅନୋଦ ବଧି ଅନ୍ତେ କୃଷ୍ଣ ଗତ ଅନୁସାରେ
ଅମ୍ଭୋଜାକ୍ଷୀ ଆଳି ସଙ୍ଗେ ବନ ନିକୁଞ୍ଜ ବାସାରେ ॥ ୧୪ ॥

---

୧ । (କ) ଅଞ୍ଚଳେ

୨ । (କ) ସୁରଭି ସୁର ନଦୀ

୩ । ଲିବଇ = ଲିଭଇ

୪ । ମୋଟ୍ଟାଇତ (ପୋଥିପାଠ)

— ଗୀତ —

(ଗଉଡ଼ ରାଗେଣ ଗୀୟତେ )

ଅବଦେଖା ରାଧେ ହର ନିକୁଞ୍ଜ ପଲଙ୍କେ
ଅସିତ ମେଘେ ବିଜୁଳି ରାଜିତ ଅଙ୍କେ    ।। ଘୋଷା ।
ଅମାର ଉରଜ କମଳ ଭୁଜ କାମ କେଳି ମଇଦାନେ
ଅନଙ୍ଗର ଦାଉ କରଜର ଘାଉ ସୁମୁକୁଳିତାବସ ମୁନେ ।୧।
ଆପନା ଚରନ ବୈରି କଣ୍ଟକପୁ ପୁଞ୍ଜ
ଅଘାତ ଦଣ୍ଡରେ କରି ହରଷ ଭୁଞ୍ଜ    ।। ୨ ।।

— ସ୍ୱାଧୀନ ଭର୍ତ୍ତୃକା ବୋଲି —

ଶ୍ଳୋକଃ—

ଆଶ୍ଳେଷିତ ମୁ୍ବନଶଟେଣ୍ଡି ସ୍ୱମାଦଦାନୈ-
ପ୍ରେମୋତ୍ତରପ୍ରଣତକୋମଳମୁଗ୍ଧବାଗ୍‌ଭିଃ ।
ଯା ସର୍ବଦୈବ ସୁଖ ସଂଜନୟେତ୍ପ୍ରିୟସ୍ୟ
ସ୍ୱାଧୀନଭର୍ତ୍ତୃକ ପଦେ ପ୍ରକଟୀକୃତା ସା ।
(ଇତି ଭରତାଗୃଯେ)

ଆପେ ସ୍ୱାଧୀନ ଭର୍ତ୍ତୃକା ପ୍ରିୟ ଅନୁକୂଳ
ଅଙ୍କେ କୃଷ୍ଣର ବସାଇ ରାମା କହେ ସଖୀକୁଳ    ।। ୧ ।।
ଅମୃତାଂଶୁ ଯେଣୁ ବନ୍ଧୁ କୁମୁଦମାର ମୋଦନୀ
ଅଟେ କୁମୁଦମାର କେବଳ ବନ୍ଧୁ ସୁଖଦାମୀ    ।। ୨ ।।
ଅନ୍ୟର ସେ ପ୍ରେତେ କହ୍ନି କୃଷ୍ଣ ବୋଲେ ତେଜ ଦୋଷ
ଅନ୍ଧତମେ କାମତମେ ଭ୍ରମ ହେବାର ବଶେଷ    ।। ୩ ।।
ଅଣ୍ଡ ଅତୁର ଚତୁର ରତି ଆରମ୍ଭରେ ଭଡ଼
ଅମ୍ବୁରୁହ ମୁଖ ଶିଳୀ ମୁଖପରି ଚୁମ୍ବେ ଜଡ଼    ।। ୪ ।।

---

୧ । (ଖ) ଅଭସାନେ

ଅମରଷ ଶାନ୍ତିକ କାଳରେ କରେ ପଣ୍ଡଭବ
ଆବେଦନ ଉଦ୍ଧୃନରେ କହିଥାଚେ ସୁଖ ଭବ ॥ ୫ ॥
ଆନମିତ କତ କରେ ରଦ ନଖେ ଚନ୍ଦୁ ଭନ୍ତ
ଅଦ୍ରି କୁଚ ନଘା ହୃଦେ ଭୂଜ ବନ୍ଧନେ ଅଭନ୍ତ । ୬ ।
ଅଟେ କାମ ବାମଗତି ପର୍ଭବେ ହରଷିତ
ଅଙ୍ଗ ଅବଶ ନ ଚଳେ ଜଂଘ ସ୍ତମ୍ଭକଚ ଯୋଜିତ ॥ ୭ ॥
ଅବକାର ସ୍ୱରୁଷ ରସ କ ସିଦ୍ଧ ସାହାସରେ
ଆମ୍ରେଶ୍ୱର ପୁନ ମାତେ କାମ ସମର ରସରେ ॥ ୮ ॥
ଆଚରଣ କୃତ ପ୍ରିୟା ପରଭବରୁ ବଶେଷ
ଆଣ୍ଡ ସ୍ତନ ମର୍ଦ୍ଦନ ଦ୍ରଦନ ଘାତ ଧୃତ କେଶ ॥ ୯ ॥

## — କୁଟ୍ଟମିତ ଅଲଂକାର —

ଶ୍ଳୋକଃ—

କେଶସ୍ତନାଦ୍ୟଗ୍ରହଣେ ରତିହର୍ଷସଂଭ୍ରମୋପେତମ୍[୧]
କୁଟ୍ଟମିତେତି ବଜ୍ଞେୟଂ ସୁଖମପ୍ୟ ଦୁଃଖୋ ପଚ୍ଚାରେଣ[୨] ।୧।

ଅନ୍ତ ହୋନ୍ତେ ରତି ବାମ ପିଦ୍ଧେ ରମଣୀ ରତନ
ଅସ୍ତବ୍ୟସ୍ତ କେଶପାଶ ବେଶ ଭଙ୍ଗ ଅଯତନ ॥ ୧୦ ॥
ଅଙ୍କେ ବସି ପ୍ରିୟ ବକ୍ଷକୁ ଆଉଜ ସେ ଗେଲାଇ
ଆଜ ବେଶକର ବୋଲେ ମୁଖ ଚନ୍ଦ୍ରମା ହଲାଇ । ୧୧ ।
ଅଚ୍ୟୁତ ଯେ ରଚେ ଜୁଡ଼ା ପୁଷ୍ପ କରଣ ଗର୍ଭକ
ଅଞ୍ଜନକୁ ରଞ୍ଜ ସ୍ୱନପ୍ନ-ହରଣ ଅର୍ଭକ ॥ ୧୨ ॥
ଅନଙ୍ଗର କୁଞ୍ଜ ଲଞ୍ଜି କଳା ଘାତ ନସକ୍ଷଣି
ଅପେ ଶସ୍ତ୍ରକାର ବନ୍ଧ ଯଥା ଆୟୁଧ ନର୍ମାଣି ॥ ୧୩ ॥

---

୧ । ସଂଭ୍ରମୋତ୍ପନ୍ନମ୍ (ପୋଥିପାଠ)
୨ । ଦୁଷ୍ଟୋପଚ୍ଚାରେଣ (ପୋଥିପାଠ)

ଆଦରଣ ଖଣ୍ଡ ଗଣ୍ଡ ଚଞ୍ଚ କ ମର୍କତ ମୀନା
ଅଧିକରେ କରେ ସୀମନ୍ତମା ସୀମନ୍ତୀ ଶୋଭନା । ୧୪ ।

ଆପେ ମକରାଙ୍କ କର କର କୁମ୍ଭ[୧] ଉରଜରେ
ଆପୀଡ଼ିତ କରି କେତେବେଳେ ଲେଖି କରଜରେ ।୧୫।

ଅଳ୍ପ ହସି ଚମକାଇ ଅଙ୍ଗ ଅନଙ୍ଗ ରଙ୍ଗିଣୀ
ଆକଳ୍ପରେ ଚୋରି ଦେଖି ଚୁମ୍ବ ଚଦନୁ ରାଗିଣୀ । ୧୬ ।।

ଅତି ଚନ୍ଦ୍ରୋଜ୍ଜ୍ୱଳେ କରେ କର ଧରଣ ଭ୍ରମଣ
ଆଣି ପୁଷ୍ପ ଘରଟ୍ଟରେ ବେଶ ରମଣୀ ରମଣ ।। ୧୭ ।।

ଅଚ୍ଛି ଅଳଙ୍କାରେ କେଳି ବୁଧ ବୁଝି ପ୍ୟେ ସମୟେ
ଅକ୍ଷି ପରାଗେ ପୂରିତ ଦେଖି ବୋଲେ ରସମୟେ ।।୧୮।।

ଅଭଜାଇ ବକ୍ଷେ ଦେଖେ ପ୍ରିୟ ପ୍ରିୟାର ଲୋଚନ
ଅଙ୍ଘ୍ରି କଣ୍ଟକ ବହ୍ନିଲ ରନ୍ଧ୍ର କହି ପ୍ୟେ ବଚନ । ୧୯ ।

ଆଣି କଣ୍ଟକ ନିଷ୍କଣ୍ଟକ କଣ୍ଟକଶୋଧି ପଦ
ଆସି କୁଞ୍ଜମଧ୍ୟେ ନିଦ୍ରା ପୁନ ସୁଖ ଆସ୍ପଦ ।। ୨୦ ।।

ଅନଙ୍ଗର କେଳି ବନେ ହେମବଲ୍ଲୀ ପୁଷ୍ପବନ୍ତ
ଆସି କୁଞ୍ଜର ବାହାରେ ସେ କୁଞ୍ଜର ମତ୍ତ ଗତି । ୨୧ ।।
ଅପହୃତ ନିଦ୍ରାପ୍ରିୟ ପ୍ରିୟା ନ ଦେଖି ହସନ୍ତୁ
ଆଳସ୍ୟକୁ ଗଳେ ନ କହି କ କେମନ୍ତ ଆଶୟ । ୨୨ ।।
ଆତୁରରେ ଉଠି ଭେଟି ମଳ ନୟନ ଜଳନ[୨]
ଅତି ଗଉର ଧରଣୀ ଚନ୍ଦ୍ର କିରଣ ମଳନ ।। ୨୩ ।।
ଆଶ୍ଲେଷକୁ କର ଚେକ କହି ପ୍ରିୟେ ପ୍ୟେ କ ସତ୍ତ
ଅଳ୍ପ ହସି ପୁଲ୍ଲ ଚିଙ୍କୁ ବନ୍ଧ ବଧ ଅକରନ୍ତ । ୨୪ ।
ଅମ୍ଭୋଜନ୍ମ ପ୍ରେମ୍ବପର ଚୋଧେ ସେ କୃଷ୍ଣ ଭ୍ରମରେ
ଅଷ୍ଟନେତ୍ର ବଧୂ ବୋଧେ ରାମା ଲେଖା କରମରେ ।୨୫।

---

୧ । (କ) କର କୁମ୍ଭ
୨ । (କ) ମଳ ନଳନ

ଅଗାରକୁ ଗଲେ ବେନ ସବସ୍ବପ୍ନ ମାନସରେ
ଅନ୍ତେଃପୁରେ କାନ୍ତାକାନ୍ତ ହସି ହବସ ନ ସରେ । ୨୬ ॥

ଅଟ୍ଟାଗରେ ବଞ୍ଚେ ହର ଗମା ରମ୍ୟ ପଟ୍ଟ ଧର
ଆଳୟରେ ରନ୍ଧ୍ର ତଥା ବନ୍ଧେ ମନ୍ଦାର ଅଧର ॥ ୨୭ ॥

ଅତ ପ୍ରାତୁଁ ଉଠି ଶୁଦ୍ଧସ୍ନାନ ରଚ ଉତ୍ସାହରେ
ଅକ୍ଷି ଆଗତ ପଥରେ ଦେଇ ଗୋବନ୍ଦ ବନ୍ଦରେ ॥ ୨୮ ॥

ଆଶା ଚକୋରର ବଶ୍ୟପୂର ବୃନ୍ଦ ଦରଶନେ
ଆସେ ଯେବେ କାଳେ ଶ୍ରୀମଣ୍ଡ ତଥା ହାସ ପରସନେ ।୨୯।

ଅଛୁ ଘନ ପ୍ରଳମ୍ବ କୁନ୍ତଳ ଯୋଡ଼ାଇ ଚରମ
ଅଗ୍ରଭାଗେ ଗଣ୍ଠି ନଟମ୍ବକୁ ଜିଣି ମନୋରମ ॥ ୩୦ ॥

ଅଟେ ମାର ମାରକତ ଗଣ୍ଡି କୃଷ୍ଣ ନେତ୍ର ଲଭେ
ଅମୋଦ ଯେବେ ଘନରସ ବୃଷ୍ଟି ସବସ ସ୍ଥଲଭେ ॥ ୩୧ ॥

ଅଧିକରେ ଧଙ୍ଗ ହୋଇବାରୁ ସେ ବରବର୍ଣ୍ଣିନ
ଅଙ୍ଗ ରନ୍ଧାଣ ହେମକୁ ନନ୍ଦେ ଯେବେ ବରବର୍ଣ୍ଣିନ ॥ ୩୨ ॥

ଅଣ ପଦ୍ମରାଗର କାମର ବନ୍ଦୁ ସିନ୍ଦୁରର
ଅଭିନବାରୁ ତା ବାସ ବ୍ୟକ୍ତ ରାଗ ନାଗରର ॥ ୩୩ ॥

ଅକ୍ଷି ଅଞ୍ଜନେ ଶୋଭ ଚକ୍ଷୁଣେ କୃପା କନେକ
ଆଜ ଦେଇନାହିଁ ଭ୍ରୂରୁ ଦୃପେ ଲଞ୍ଜି ସିଞ୍ଜିନକ । ୩୪ ।

ଅଳଙ୍କାର ବନ୍ଧୁରି ଗୋବନ୍ଦ ଦେଖି କହେ ମୁଦେ
ଅଛୁ ପୁଷ୍ପାୟୁଧ ତବ ପୁଷ୍ପାୟୁଧ ଭେଦ ହୃଦେ ॥ ୩୫ ॥

ଆଲିଙ୍ଗନେ ଜଡ଼ ସସଂଭ୍ରମେ କଣୋର କଶୋରୀ
ଆସେ୍ୟ ଚୁମ୍ବ ଦେଇ ମାଗୁ ବୋଲେ ଦେଲନ ପାଶୋର ।୩୬।

ଅଭିଳାଷ ଯେବେ ଆସ୍ବନାହିଁ ଦେବ ମତେ ଶିକ୍ଷା
ଅମୃତର ସ୍ୱାଦୁ ଜଣୁଥିଲି କହ୍ମ ପକ୍ଷକାଷା ॥ ୩୭ ॥

ଅଷ୍ଟାବିଂଶ ଶତପଦେ ବେଦସଂଖ୍ୟା ବୋଲି ଶେଷ
ଅଟେ ଶ୍ରୀ ଶ୍ୟାମସୁନ୍ଦର ଦେବ ବର୍ଣ୍ଣନା ବିଶେଷ ॥୩୮॥

## — ଚତୁର୍ଥ କୁସୁମ —

### ॥ ପ୍ରଥମ ଛାନ୍ଦ ॥

# କାମପୂଜା

( ରାଗ – ବସନ୍ତ )

ଅସ୍ୟ ଲକ୍ଷଣଂ ଶ୍ଳୋକଃ—

ଶିଖଣ୍ଡିବର୍ହୋଚ୍ଚୟବଦ୍ଧ ଚୂଡ଼ଃ ପୁଷ୍ଣ ନ (ପିକ) ଚୂତ ଲତାଙ୍କୁରେଣ
ଭ୍ରମନ୍ ମୁଦାବାସମନଙ୍ଗମୂର୍ତ୍ତିମତୋମତଙ୍ଗସ୍ୟ ବସନ୍ତ ରାଗଃ ॥୧॥

— ଗୀତ —

ଅନଙ୍ଗ ତ୍ରୟୋଦଶୀର ପୂର୍ବ ଦିବସରେ
ଅଷ୍ଟଖୀ ଦେଖି ଜଣାନ୍ତି[1] ଅତି ହରଷରେ ଯେ ।
ଅଧିବାସ କୁମ୍ଭ ଆଜ ହୋଇବ ସ୍ଥାପନ
ଆଦ୍ୟେ କାମ ପୂଜ ପ୍ରାନ୍ତେ ଅଚ୍ଛବା ତପନ ଯେ ॥ ୧ ॥

ଆନନ ପ୍ରସନ୍ନ ଶୁଣି ପ୍ରସଙ୍ଗନୁ ଜେମା
ଅକ୍ଳାନ ଶରଦେ କ ଚନ୍ଦ୍ରମା ସୁଷମା ଯେ ।
ଅଛି କଳ୍ପତରୁ ମୂଳେ ହେମ ବେଦୀ ସମ
ଅଧିକ ମଣି କୁଟ୍ଟିମ ଯୋଗେ ମନୋରମ ଯେ ॥ ୨ ॥

ଆବାହନ ହେମ ଘଟେ କୃତ ନାନ୍ଦୀମୁଖୀ
ଆନକାଦି ବାଦ୍ୟ ହୁଳହୁଳି ଦେଇ ସଖୀ ଯେ ।

---

୧ । (ଖ) ଅଷ୍ଟବୀ ଜଣାନ୍ତି

ଆରବିନ୍ଦୁ ପ୍ରାକୃ ହୋଇ ବିଶେଷ ସୁବେଶ
ଆଳିଚୟ ମେଳେ ବୃନ୍ଦାବନେ ପରବେଶ ଯେ ।।୩।।

ଅଷ୍ଟସଖୀ ଯେ ରୂପ ମଞ୍ଜରୀ ଆଦି ଗଣ
ଅଛନ୍ତି ନିଜ ସେବନେ ସେ ବନେ ଶରଣ ଯେ ।
ଅର୍ଚ୍ଚିନ ମଦନ ବୀଜମନ୍ତ୍ରେ ନାନ୍ଦୀମୁଖୀ
ଅଗ୍ରଜନ୍ମା କନ୍ୟା ବନ୍ଦାପନା କରି ସୁଖୀ ଯେ ।।୪।।

ଅନଙ୍ଗ ଗାୟତ୍ରୀଂ କ ଉଚ୍ଚାରି ରସେଶ୍ୱରୀ
ଆପଣେ କୁସୁମାଞ୍ଜଳି ହସ୍ତ ଦାନ କରି ଯେ ।
ଆଦ୍ୟଂରେ କାମଦେବାସ୍ତ୍ର ବନ୍ଧୁ ହେ ସଂସ୍ଥିତ
ଅନ୍ତେ ପୁଷ୍ପ ବାଣାୟୁଧୀ ମନ୍ତ୍ରକ ବଦନ୍ତି ଯେ ।।୫।।

ଅନ୍ତେ ଛନ୍ଦୋନଙ୍ଗ ପ୍ରଦ୍ୟୋତସ୍ତାତ୍ତ୍ୱ ଉଚ୍ଚାରି
ଆଣିଦେଲେ ପରସାଦ ଭୂଦେବୀ କୁମାରୀ ଯେ ।
ଆଳି ପେଷି ବନମାଳୀ ଆଣି ପ୍ରେମ ସମସ୍ତେ
ଅଙ୍କରେ ଶ୍ରୀ ରାଧା ଦେବୀ ସୁବେଶେ ବିଜୟେ ଯେ ।।୬।।

ଅସମାନ ସୁଷମା ଲେଶକୁ କୋଟି ରତି
ଅତି ଶୋଭା ମନମଥ ମନ୍ମଥ ମୂରତି ଯେ ।
ଅନ୍ତ ନାଗର କୁସୁମ ଧନୁ ବୃନ୍ଦା ଦତ୍ତ
ଆଳି ପୃଷ୍ଠେ ବସି ରସେ ଅଭିଷେକ କୃତ ଯେ ।।୭।।

ଆତପତ୍ର ନାଗେଶ୍ୱର ଗାୟନ ପିକରେ
ଅଭିଷେକ ନାନ୍ଦୀମୁଖୀ ହେମ ଘଟେ କରେ ଯେ ।
ଅରଣ୍ୟେ ଦ୍ୱାଦଶ ଦେବୀ ଯୂଥେଶ୍ୱରୀମାନେ
ଆଗନ୍ତୁକ ଆଲୋକ ଉତ୍ସବ ବାଦ୍ୟମାନେ ଯେ ।।୮।।

ଅବିରତ ପୁଷ୍ପ ବୃଷ୍ଟି ବନ ପ୍ରସନ୍ନରେ
ଅଭିଷେକ କାମ ରତି ଜିଣି ଶୋଭନରେ ଯେ ।
ଆଜ୍ଞା ପାଇ ବୃନ୍ଦାର ସେ କାଳେ ପଢ଼େ ଶୁକ
ଅନଙ୍ଗ ନୃପ ଜିଣିଲେ ହରିତ ଅଂଶୁକ ଯେ ।।୯।।

---

୧ । (ଗ) ଗାଇଥ

ଅଙ୍କୁଟ ଭୂଲ୍ଲଟ ଜରଜରେ ଦେବେ କର
ଅବଳା ହୃଚ୍ଛତ ବାସେ ହୋଇବେ ଶଂକର ଯେ ।
ଅନୋଚିତ ନୋହେ କହେ ଶାରିକା ସ୍ୱରଣ
ଅଧିକ ସୁବର୍ଣ୍ଣରୁ ନରେଶ ନେବ ରତ୍ନ ଯେ ॥ ୧୦ ॥

ଆନନ୍ଦେ ବଧିତ କର ରମଣୀ ରମଣ
ଅମୋଦକୁ କୁସୁମ ବନ କରନ୍ତି ଭ୍ରମଣ ଯେ ।
ଅନା ଅନା ମୀନ ନୟନା ଯେବ ନାଗେଶ୍ୱର
ଅମ୍ବୁଭୁକ କୁଳକରେ ବଶିବ ସୁନ୍ଦର ଗୋ ॥ ୧୧ ॥

ଅତିମୁକ୍ତ ହସେ ଶିରଚ୍ଛଦ ବନ୍ଧ ବନ୍ଧିଁ
ଅଗର୍ବ ଦେବ ବନ୍ଦନ ମାଳେ କଲେ ସର୍ବ ଗୋ ।
ଅମ୍ଳାନ ଭୂଜ ଶୋଭନ ବର କନିଆର
ଅନେକ ପାଣି ଗ୍ରହଣ ବର କନିଆର ଗୋ ॥ ୧୨ ॥

ଅନଳ ବଦେଶୀ ଯେବ ଶ୍ରୀଖଣ୍ଡାଚଳୁ ଆସି
ଅଶୋକ ରମ୍ୟ ସୁଷମା ଦେଖି ବୃଷ୍ଟୁ ଭଣ୍ଡି ଗୋ ।
ଅଟେ ପୁଷ୍ପବନ୍ତ ରଙ୍ଗ ଚନ୍ଦ୍ର ଅଟ୍ଟ ବନ୍ଧ
ଅନୋଚିତ ଶିର ଗୃନ୍ଦ କରେ ନାହିଁ ନାହିଁ ଗୋ ॥ ୧୩ ।

ଅନୁରାଗୀ ସ୍ୱପ୍ନଂଦୁଷ୍ଟ କୁଶକ ଯେପାରେ
ଅରୁଣ କର ପଲ୍ଲବ ଗୃଳ ଦେଖ ପାରେ ଗୋ ।
ଅଟେ କୋବଦାର ଦାର ପିନ୍ଧି ପାଟ ରଙ୍ଗ
ଅନଳ ଆଲିଙ୍ଗନରେ କମ୍ପାଉଛି ଅଙ୍ଗ ଗୋ ॥ ୧୪ ॥

ଆଶ୍ଳେଷ ସପ୍ତଳାକଲଙ୍କାପ୍ରେ ଦ୍ରୁମେ ଦେଖ
ଅତି ସୁରସିକା ରତେ ରତେ ନଖ ଲେଖ ଗୋ ।
ଆବେଗେ ପୁରୁଷ ପରେ ମଣ୍ଡଳା ବ୍ରତତି
ଆନ୍ଦୋଳନ ବାତେ ଦେଖ ରତେ ଉପରତି ଗୋ ॥ ୧୫ ॥

---

୧ । (କ) ଅନାଙ୍ଗ

ଅନଳକାନ୍ତ ଚମ୍ପକ କାନ୍ତା ବାସ ହରି
ଆରମ୍ଭି ଲଟ ଉଲଟ ରତି ମାନଗ ଧରି ଗୋ
ଅଟେ ମଧ୍ୟାହ୍ନ ଜାଣଇଁ ନ ଜାଣଇଁ ବୋଲି
ଅଳପ ହାସରେ ଶିର ସ୍ତନ କମ୍ପେ ବାଳା ଗୋ ॥ ୧୬ ॥

ଆସେ ମଧୁଶଯ୍ୟାରୁ ସୁନାସା ରଚେ ହାରି
ଅନଶେ ମାଦ ମୁକୁଳ ଫିଟଇ ସେହୁଦାରୁ ଗୋ ।
ଅନଳରେ ଠଳ ଠଳ ଗମନ ଆଚରି
ଆବେଷ୍ଟିତ ପରିହାସ ଆଳି ସହଚରି ଗୋ ॥ ୧୭ ॥

ଅନାଚ୍ୟୁତ ବାରାଙ୍ଗନା କୋଳରେ ବସାଇ
ଅରଣ୍ୟପ୍ରିୟ ବଟକୁ ଆନନ୍ଦେ ରସାଇ ଗୋ ।
ଆସବ ମଧୁରେ ମତ୍ତ କଲା ତା ଚଖାଇ
ଆଲିଙ୍ଗିତ ହୋଇ କଳ ରାଗକୁ ଶିଖାଇ ଗୋ ॥ ୧୮ ॥

ଅନା ହେମ ଗଉରୀ କେତକୀ ପତିବ୍ରତା
ଅନଳ ସେ ଅଙ୍ଗ ସୁରଭିରେ ଅଭିରତା ଗୋ ।
ଅବକାଶ ନାହିଁ ଯାର ସୁମନ ଲଟରୁ
ଆସିଲେ କରଇ ପକ୍ଷ ସନ୍ଧିତେ ବଦାରୁ ଗୋ ॥ ୧୯ ॥

ଅବଲା ସଜଳା ସେ ମାନନୀ କୁଞ୍ଜିଲତା
ଅନୁରାଗୀ ଢେଙ୍କି ସ୍ଥଳ କଞ୍ଜ ମଞ୍ଜୁଳତା ଗୋ ।
ଅର୍ଦ୍ଧ ପ୍ରଣବଷାରକେମଲ (?) ବ୍ୟାକୁଳତା
ଆକର୍ଷୀ କେ ଗର୍ଭବତୀ ଯୁବତୀ ଭୂଳତା ଗୋ ॥ ୨୦ ॥

ଅମ୍ବ ଭୃଙ୍ଗିକ ବସନ୍ତ ପିକ ନାଗେଶ୍ୱର
ଆସବରେ ଛନ୍ନ ମନ ନାଗରୀ ନାଗର ଯେ ।
ଆଳସ୍ୟ ବଳରେ ରକ୍ଷ ନ ପାରି ନର୍ତ୍ତିତ
ଅରଣ୍ୟେ ମନ୍ଦ ପବନେ ଲୀଳା ଖେଳେ ରତ ଯେ ॥ ୨୧ ॥

ଆସେ ବୈଶାଖ ଦମ୍ପତି ପ୍ରେମ ନବମୀତ
ଅତନୁ ରସ ମନ୍ଥନେ କଲେ ସଜନୀତ ଯେ ।
ଅଳପ ହରଣ କଲା ଗ୍ରୀଷ୍ମ ବସନ୍ତରେ
ଆଶ୍ଲେଷ ଯେମନ୍ତେ ମାନ ନଭୀନା ସ୍ୱାନ୍ତରେ ଯେ ॥ ୨୨ ॥

ଅଛନ୍ତି ଖେତରେ ଗୋ ଦୋହନ ଥାଇଁ ବସି
ଅର୍ଜୁନ ପକ୍ଷ ମାଧବ ବନ୍ଧନ ଦ୍ୱାଦଶୀ ଯେ ।
ଅଗ୍ରଜ ସହ ଗୋବିନ୍ଦ ହୋଇ ହରଷିତ
ଆଭୁକ୍ତ ଦେଖିବାରେ ପ୍ରକ୍ଷିତ' ଯେ.ଷିତ ଯେ । ୨୩ ।

ଅଶୋକ ବନ ଶୀତଳ ଚରାନ୍ତି ସୁରଭି
ଅଛନ୍ତି ସୁ ସେବା ସେବ ସଖା ସୁଖ ଲଭି ଯେ ।
ଅଗ୍ରେ ନାସ୍ୟ ହାସରେ ସୁଭଦ୍ରସେନ ସେବେ
ଅଛି ପିଂହା ଧରି ଦେବ ପ୍ରସ୍ଥ ସେବା ଭାବେ ଯେ ।୨୪।

ଆରମ୍ଭେ ସୁବାହୁ ବାହୁ ଯୁଦ୍ଧ କୃଷ୍ଣ ସଙ୍ଗେ
ଆଦରଣ କାସବ ସୁଦାମ ସେବେ ରଙ୍ଗେ ଯେ ।
ଅଛନ୍ତି ଚଟକର୍ମରେ ବୃଷଭ ସୁଦାମ
ଅସ୍ତଭୂକ ପିଛ ସ୍ଥଳେ ବନ୍ଧୁଅପ ରମ୍ୟ ଯେ ।। ୨୫ ।।

ଅର୍ଜୁନ ସ୍ୱର୍ଣ୍ଣ ଝରରେ ସେବେ ବାସ ମାର
ଅଛି ମେଘ ମହାବଳ ମଞ୍ଜୁଳ ଭ୍ରମର ଯେ ।
ଅନୁରକ୍ତ କରେ ସ୍ତୋକ କୃଷ୍ଣ ସେ ଉଜ୍ଜ୍ୱଳ
ଅଟଇ ତାମ୍ବୁଳ ସେବା ବନ୍ୟ ପୁଷ୍ପମାଳ ଯେ ।। ୨୬ ।।

ଅଛି ବଂଶୀ ବେତ ଧରି ସେବାରେ ସୁବଳ
ଅତ ହାସ ରସେ ବଟୁ କଙ୍କଣି କେବଳ ଯେ ।
ଆନନ୍ଦିତ ବନଜାତେ ବଂଶୀ କଳ ଶୁଣି
ଅର୍କଜା ବନ୍ଦେ ପଯୂର ବନ୍ଦନ ଉଜାଣି ଯେ ।। ୨୭ ।।

ଅଟେ କାଳୀୟ ହ୍ରଦର ଉତ୍ତରେ ସେ ବନ
ଅଭକ ଗାବ ତୃଷିତେ କଲେ ଜଳ ପାନ ଯେ ।
ଅନ୍ନ ଲୋଡ଼ା କଲେ କ୍ଷୁଧା ବାଧନ୍ତେ ପ୍ରବଳେ
ଅସିଛନ୍ତି ନଣୀ ଥାଉ ପାଶୋର ସକଳେ ଯେ ।। ୨୮ ।।

---

୧ । (କ) ସ୍ଥିତ

ଆସେ ପ୍ରବାସୀ ପାଶୋର କଂଶୋଷ ବସନ
ଅଧ୍ୱରେ ଅଧୀର ଯଥା ମାରନ୍ତେ ମଦନ ଯେ ।
ଅନୁତାପ ଜାତ ତଥା ବାଳକ ନବଢେ
ଆମ୍ର ତାଳ ଖର୍ଜ୍ଜୁର କାନନ ସ୍ୱେଷ୍ଟ ନୋହେ ଯେ ।। ୨୯ ।

ଅଶନ କର ପ୍ରସନ୍ନ ହୁଅନ୍ତା ଜୀବନ
ଆନ ପ୍ରତିକାର ନାର୍ହି ହେ ଭୂତ ଭାବନ ଯେ ।
ଅର୍କଜା ନାଶୀଲ ତୃଷା ବହ୍ନିଲ ଉଜାଣି
ଅଦଭୁତେ ଅନ୍ନ ତଥା ଆସୁ କ୍ଷୁଧା ଜାଣି ଯେ ।। ୩୦ ।

ଅରୁଣ ଅଧରେ କୃଷ୍ଣ ଜାତ ମନ୍ଦହାସ
ଅର୍ଭକେ ଯାଗ ମହିମା ଯଶ କ ପ୍ରକାଶ ଯେ ।
ଆଜ୍ଞା ଦେଲେ ଗଚ୍ଛ ବେଗ ଯାଗଶାଳା ପାଖ
ଅଗ୍ରଜନ୍ମା ସ୍ୱର୍ଗକାମେ ଆରମ୍ଭନ୍ତି ମଖ ଯେ ।। ୩୧ ।।

ଅତିଥି ଆଗତେ ଅନ୍ନ ପ୍ରଦାନ ମେ ବିଧି
ଅବଶ୍ୟ ଅ.ମ୍ଭ ନାମରେ କହ ହେବ ସିଦ୍ଧି ଯେ ।
ଆଜ୍ଞାର କୁମାରେ ଶୁଣି ସେ ସ୍ଥାନେ ଗମନ
ଅରଣ୍ୟର ମନୋରମ କଲେ ଦରଶନ ଯେ ।। ୩୨ ।।

ଶ୍ଳେଷ—

ଆକାଙ୍‌କ୍ଷା ନାକଗଡରେ ଦ୍ୱିଜ କୋଳାହଳ
ଅଶନ କରେ ବରହ୍ନି ସର୍ପୀକ କେବଳ ଯେ ।
ଆମୋଦ ସୁମନ କୁଳ ବ୍ୟକ୍ତ ସ୍ତେକ ସ୍ତେକ
ଆସ୍ଥିତ ସମିଧ କୁଶ ସଫଳ ଅନେକ ଯେ ।। ୩୩ ।।

ଅଧୋକ୍ଷଜ ସଙ୍ଗ ସୁଖ ବିନାଶ ବିକୁଳ
ଆଗତ ଅଭିଷ୍ଟ ଖ୍ୟାତ କଲେ ଗୋପ ବାଳ ଯେ ।
ଅମ୍ବୁଦ ସୁନ୍ଦର ଧାଗ ଆନନ୍ଦ ଦ ପ୍ତିନ
ଆଖ୍ୟାତ ଶୁଣି ସେ ଦ୍ୱିଜ ପିକର ସମାନ ଯେ ।। ୩୪ ।।

ଆସି ନବଗଣେ ଜଣାଇଁ ଚେଷ୍ଟା ବିପ୍ରଙ୍କର
ଅଶୋକ ବନ ହରଣ ହୋଇଲ ଅକାର ଯେ ।

ଅମରଷ ଶୁଣି ରାମ ଅରୁଣ ଲୋଚନ
ଆଶ୍ୱାସି ଭାଷିଲେ ହରି ମଧୁର ବଚନ ଯେ ॥ ୩୫ ॥

ଆରୋହଣ ସ୍ୱର୍ଗ କାମନାରେ ଲୋକ ମତ୍ତ
ଅଛନ୍ତି କ କର୍ମକାଣ୍ଡରେ ଜ୍ଞାନଂ କାଣ୍ଡ ତ୍ୟକ୍ତ ଯେ ।
ଆମ୍ଭଙ୍କୁ ଜାଣନ୍ତି ଭଲେ ପଣ୍ଡିତ ଯୋଷିତ
ଅନ୍ୟ ଦେବେ ଅବଲମ୍ବେ ହୋଇ ହରଷିତ ଯେ ॥ ୩୬ ॥

ଆଜ୍ଞା ମାନି ଗଲେ ପର୍ଣ୍ଣଶାଳାକୁ କ୍ରମାରେ
ଆଲୋକଲେ ଅନନ୍ତ ବେଶ ସୁଷମାରେ ଯେ ।
ଅଦ୍ୱିକ୍ଷପ୍ତ ବେଣୁ କଞ୍ଜ ମଞ୍ଜୁଳର ଶିଖ
ଆଧାନ କୀର୍ତ୍ତନ ହରି ଗୁଣ କୀର୍ତ୍ତି କରି ଯେ ॥ ୩୭ ॥

ଅତୁଳ ଆନନ୍ଦ ଶୁଣି ଗୋବିନ୍ଦ ସନ୍ଦେଶ
ଅନ୍ନସ୍ଥାଳ ଧରଣ ଆସନ୍ତେ ବନଦେଶ ଯେ ।
ଅବନୀ ଅମର ଅମରଷରେ ନଷେଧି
ଅମ୍ବୁଧିଗାମୀ ଆପଗା ସିକତା କି ବାନ୍ଧି ଯେ ॥ ୩୮ ॥

ଅନବୁଝେ ଆସୁଁ ପ୍ରେକ ବପ୍ର ଦୁଷ୍ଟ ମନ୍ତ
ଆଗାରରେ ଧରି ଭରି ମୁଦିଲ ଯୁବତୀ ଯେ ।
ଆକୁଳେ ପୀଡ଼ ଦୁକୂଳେ ମାନସୀ କେ ଭେଟି
ଅନ୍ନ ଦେଇ ଅଙ୍ଗନ ସେ କରି ପାଦେ ଲୋଟି ଯେ ॥ ୩୯ ॥

ଆଣ୍ଠି ଶିଳେ ଶିର ମାରି ହେଲ ହତପ୍ରାଣ
ଅଚ୍ୟୁତ ଚରଣାରବିନ୍ଦେ ପ୍ରବେଶ ପେଷଣ ଯେ ।
ଅନ୍ୟା ବିପ୍ରକନ୍ୟା ନଦୀ ବେଗରେ ଗମନ
ଆଲୋକ କରୁଣାସିନ୍ଧୁ ଭାବେ ମଗ୍ନ ମନ ଯେ ॥ ୪୦ ॥

ଈଷି ପଷେ ଲାଖି ତୋଷ ଲାବଣ୍ୟ ଅମୃତ
ଆନନ୍ଦ ବୃନ୍ଦରେ ମନ ଦୂର ପତି ସୁତ ଯେ ।
ଅରଣ୍ୟର ପକ୍ଷି ମୃଗ ବଂଶୀ କଲେ ବଶ
ଆଦରେ ବୋଲନ୍ତି ଦେଖି ଆମ୍ଭ ଆସ ଆସ ଯେ ॥ ୪୧ ॥

---

୧ । (କ) କର୍ମଜ୍ଞାନ

ଅନ୍ନ ଦେଇ ତୋଷିଲ କ ବର୍ଣ୍ଣିବ କରନ୍ତ
ଆପେ ଦୁଃଖୀ ପରୋପକାରରେ ସାଧୁ ଖ୍ୟାତ ଗୋ ।
ଅଲଂଘ୍ୟ ପତ୍ତ ଅଦେଶ ନ ମାନ ଅଗତ
ଆସି ହେଲ ପୂର୍ଣ୍ଣାହୁତ ସମସ୍ତ ପ୍ରାପତ ଗୋ ॥ ୪୨ ॥

ଅବଗା ଦେବେ ତୁମ୍ଭଙ୍କୁ ଯେନ ସ୍ୱର୍ଗଗାମୀ
ଅବଳମ୍ବେ ଯାଇ ତୋଷ କର ନଜ ସ୍ୱାମୀ ଗୋ ।
ଅଙ୍ଗନା ବୋଲନ୍ତ ଅଛୁଁ ସବ ଆଶା ତେଜ
ଅନ୍ତକେ ନ ରଖି ଦଅ ସୁଖ ପୁଞ୍ଜ ଖଞ୍ଜି ହେ ॥ ୪୩ ॥

ଅଚ୍ୟୁତ ବୋଲନ୍ତ ଭକ୍ତଙ୍କୁ ମୁଁ ନୋହେ ଦୂର
ଅନ୍ତରେ ଚନ୍ତଲେ ଅଛି ଅନ୍ତକେ ତୁମ୍ଭର ଗୋ ।
ଅବଶିଷ୍ଟ ନାହିଁ ଭାବେ ବଶ କଲ ମତେ
ଆନନ୍ଦେ ଗମିଲେ ଷେପ୍ର ବିପ୍ରକନ୍ୟା ଯେତେ ଯେ ॥ ୪୪ ॥

ଅଗ୍ରଜନ୍ମା ଦେଖି କଳହାନ୍ତରିତା ପର
ଆମ୍ଭେ ନ ଚିହ୍ନିଲୁଁ ଯଜ୍ଞଭୁକ୍ତା ଦେବ ହରି ଯେ ।
ଅଳ୍ପ ଫଳକୁ ମହନ୍ତ ଶ୍ରମେ କରୁଁ ଯାଗ
ଅନାୟାସେ ଅଷ୍ଟଭୂତି ଲଭ କଲୁଁ ତ୍ୟାଗ ଯେ ॥ ୪୫ ॥

ଅତଥି ପୃଥକ ଜନ ଅନାଦର ଦୋଷ
ଅଭାଗ୍ୟ ଆମ୍ଭର ଦୃଷ୍ଟ ହୋଇଲେ ନବାଶ ଯେ ।
ଅସମ ନାସ୍ତ ଜ୍ଞାନକୁ ଶ୍ରୁତି ଜ୍ଞାତା ଦ୍ୱିଜ
ଅଦଭୁତ ସମସ୍ୟା ପୂରଣ ହେଲା ଆଜ ଯେ ॥ ୪୬ ॥

ଅଶ୍ଳିଷ୍ଟ କୃଷ୍ଣ ଦର୍ଶନ ଜାତ ହୋଇ ମ୍ଲାନ
ଅର୍ଭକ ବୈଧବ୍ୟ ଯଥା କୁଳାଙ୍ଗନା ସ୍ତନ ଯେ ।
ଅଚ୍ୟୁତ ଭୋଜନେ ବସି କଲେ ବାଳବୋଧ
ଅଛି ଚର୍ବ୍ୟ ଚଷ୍ୟ ଲେହ୍ୟ ପେୟ ଚତୁର୍ବିଧ ଯେ ॥ ୪୭ ॥

ଅହ ଶେଷେ ବ୍ରଜେ ଆସେ ସଖା ଗାବ ସଙ୍ଗ
ଆଖ୍ୟାତ କଲେ ବାଳକେ ଭୋଜନ ପ୍ରସଙ୍ଗ ଯେ ।
ଆଶ୍ଲେଷ ଚକୋର ନେତ୍ର ସୁଖକାଷ ସାଧୁ
ଆଶ୍ରୟ ଶ୍ୟାମସୁନ୍ଦର ଦେବ ରସେ ବିଧୁ ଯେ ॥ ୪୮ ॥

— ଚତୁର୍ଥ କୁସୁମ —

।। ଦ୍ୱିତୀୟ ଛାନ୍ଦ ।।

# ଗ୍ରୀଷ୍ମ ଋତୁ

( ରାଗ — ଧନାଶ୍ରୀ )

(କୋଇଁଲିଛା (?) ଗୁଣ୍ଡିଚ୍ଛ ବସନ୍ତ ବାଣୀରେ)

ଅରଣ୍ୟ ରମଣୀକି ମାଗି ମେଲଣି ବସନ୍ତ ଗଲା ବିଦେଶ
ଅରଣ୍ୟ ପ୍ରିୟ ବଚନ ଗଦଗଦ ସ୍ୱର ଭଙ୍ଗରେ ପ୍ରକାଶ ସେ
ଆଧି, ଅପହୃତ ସୁମନ ସମୂହ ସେ
ଅନାଦର ପତ୍ରାବଳି ବିଧି ସେ ।। ୧ ।

ଅନୁରାଗ ଛଳ ଶାଳ୍ମଳି ମୁକୁଳ ମକରନ୍ଦ ଅଶ୍ରୁ ବୃନ୍ଦ
ଅନବରତରେ ମଦନ ଦବରେ ଦହନ କରଇ ଦେହ ସେ
ଅତି, ଆସେ ପ୍ରଖର ବାତ ବିତତି ସେ
ଅଟେ ଶ୍ୱାସ ବିରହ ତପତ ସେ । ୨ ।

ଶ୍ଳେଷ—
ଅଧିକ ରଜନୀକର ଉପରାଗ ଶୁଷ୍କ ପଲ୍ଲବ ଶୟନ
ଆପଣା ନବମ ଦଶାରେ ରାଜଲେ କେବଳ ଶେଷ ଜୀବନ ସେ
ଅପି, ଅଛି ପୂର୍ବ ପଙ୍କ ତା ପ୍ରକାଶି ସେ
ଅରକ୍ଷଣ ଅନମିଷ ରାଶି ସେ ।। ୩ ।।

ଆଖଣ୍ଡଳ ହେଲା ମଧୁପ ଚୁମ୍ବିଲା ଇନ୍ଦ୍ରାଣୀ କୁସୁମବଣି
ପ୍ରଚଣ୍ଡ କାଳରେ ଅବନୀ ବନିତା ନବ ରଜବତୀ ଭାତି ସେ
ଆତପ, ଅନଳ ରଜ ଅମ୍ବର ସ୍ଥାପେ ସେ
ଅଛି ମୁଦ୍ରିତ ଅବଧି ତାପେ ସେ ।୪।

ଅଶଙ୍କିତ  ହେଲେଟଣ ଅଙ୍କଭୂକ ପିଛ ଗୁଇ ଚଳେ ଅଙ୍କ
ଅଭୁତ ଯାନବନ୍ଧ ପୀଡ଼ାନ୍ଧ ନଂଙ୍କ ଦେଇ ଦଣ୍ଡବୁଦ୍ଧି ବଙ୍କ ସେ
ଅର୍କ, ଆସି ତୁଳା ରଶ୍ମିରେ ବ୍ୟାପକ ସେ
ଅଦଭୂତ ହୋଇଲା ଆଲୋକ ସେ ॥ ୫ ॥

ଅଧିକାର ହେଲେ ଚପଳ ଜନର ମାଠ ଉଚ୍ଚ ପଦ ଲଭେ
ଆଶୁଗ ଖଣ୍ଡଭୂତ ହୋଚ୍ଛିଷ୍ଟ ପଦ ନେଇ ନାକେ ଶୋଭ ସେ
ଅନ୍ତ, ମଧ୍ୟେ ପ୍ରପାଦନ ରସ କ୍ଷାନ୍ତ ସେ
ଅନ୍ତୁ ବଙ୍କ ଗଣିକା ସମ୍ପତ୍ତି ସେ ॥ ୬ ॥

ଅସତ୍ୟ ବିଷୟ ବ୍ୟାପାରକୁ ସତ୍ୟ ଅଜ୍ଞାନୀ ମଣିଲା ପ୍ରାୟେ
ଅନ୍ୱେଷଣା କରେ ବଣେ ବଣେରେ ମୃତ ମୃଗତୃଷ୍ଣା ଜଳମୟେ ସେ
ଅର୍କ, ଅବିବେକ ନରେଶ ପ୍ରାୟେକ ସେ
ଅନ୍ତ କରପୀଡ଼ା ପ୍ରଦାୟକ ସେ ॥ ୭ ॥

ଏ ବସର ନାହିଁ ବାର ଗ୍ରାସ ମାବ ପର ରେ ତାଳ ବୃନ୍ତକୁ
ଅଙ୍ଘ୍ରି ଉପାନହ ଯାତକଲେ ନରେ ସରଣି ଦୁଷ୍ଟ ତାପକୁ ସେ
ଆନେ, ଅନ୍ତ ଦହିଲା ଅଙ୍ଗ ବଧ ନେ ସେ
ଅତାଡ଼ନ କଲେ ଯତିମାନେ ସେ ॥ ୮ ॥

ଆଜରେ ସ୍ୱର ହର ଜଣି ବସନ୍ତେ ଛଡ଼ାଇ ବୃଷଭାରୂଢ
ଅଙ୍କୁଶିତ ବଟୁ ପରଶୁ ପ୍ରେ ପରଶୁର ପାଣି ଯୋଗେ ଦାଢ଼ ସେ
ଅଦ୍ୟ, ଅଟ୍ଟେ ଡମରୁ ଟିଙ୍କାର ବାଦ୍ୟ ସେ
ଅଙ୍ଗପାଂଶୁ ଭୂଷଣରେ ବନ୍ଦ୍ୟ ସେ ॥ ୯ ॥

ଅବସ୍ଥିତ ସଖୀସ୍ଥାନେ ସ୍ଥାନବନ୍ତ ଚନ୍ଦ୍ରପକ୍ଷ ରଜନୀରେ
ଅଭିସାର ସାର ସାରସ ନୟନା ମେଳ ହୋଇ ସଜନୀଙ୍କ ସେ
ଆସି, ଅଧୋକ୍ଷଜରେ କେଳି ଲାଳସୀ ସେ
ଅର୍କ ତନୟା ତଟରେ ବିଳସି ସେ ॥ ୧୦ ॥

ଅଙ୍ଗେ ଧରି ପ୍ରେମ ମଲ୍ଲିକା କୁସୁମେ କବରୀ କଲେ ଶ୍ରୀହରି
ଅରଣ୍ୟଦେବୀ କଳ ତାଳ ବୃନ୍ତରେ ନାସାଗ୍ରମ ସ୍ୱେଦ ହରି ସେ
ଆଣି, ଆପେ ଚନ୍ଦନ ମୁରଲୀ ପାଣି ସେ
ଅନ୍ତୁ ମିଶି ଘନସାର ପୂର୍ଣ୍ଣ ସେ ॥ ୧୧ ॥

ଅମ୍ବର ଦୁର କଂଗ୍ର ବର ଉରଜେ କଲେ କାଞ୍ଚଳୀ ଆବୃତ୍ତ
ଅଙ୍ଗୀ ପର ପୁନ କାଞ୍ଚନ ଅଙ୍ଗରେ କୃଷ୍ଣ କୃଷ୍ଣ ବପୁ ଭ୍ରାନ୍ତ ସେ
ଅନ୍ତ, ଅନ୍ଧରେ ବେନ ବଳୋକନ୍ତି ସେ
ଆଣି ଉପମା ଲକ୍ଷ କରନ୍ତି ସେ ॥ ୧୨ ॥

ଅଟେ ବରବର୍ଣ୍ଣୀ ବକ୍ଷୋଜ ମଞ୍ଜୁଳ ଟଂଶ୍ୱଣ ଗିର ପ୍ରାସ୍ପେକ
ଅମରଙ୍କ ଊର୍ଦ୍ଧ୍ୱ କୁଜଟ୍ଟି ଆଚ୍ଛାଦ ଦଳୀ ଦନ୍ତ ସଂସୃଷ୍ଟକ ସେ
ଅଣି, ଅଙ୍ଗ କୃଷ୍ଣର ଲକ୍ଷେ ରମଣୀ ସେ
ଅର୍କଜାରେ ସୁର ତରଙ୍ଗିଣୀ ସେ ॥ ୧୩ ॥

ଅଧିନ ମନ୍ତ୍ରିଣି ନାବ ବୃନ୍ଦା ଜାଣି ଜର୍ମାନ୍ତି ହେବ ବହାର
ଅଚ୍ୟୁତ ରାଧା ଭୂଜ ଧର ଉଠିଲେ ତରଣୀରେ ଅଧ୍ୟାହାର ସେ
ଆସି, ଅଚ୍ଛୁ ସୁତା କେ କେ ତାତ ବସି ସେ
ଅଦଭୁତ ସମସ୍ୟା ପ୍ରେ ବଣି ସେ ॥ ୧୪ ॥

ଅରୁଣତର ହ୍ରଙ୍ଗୁଳ ଚନ୍ଦସାର ଲେଖନ କନ୍ଧ ପିତ୍ତୁଳା
ଅମଧ୍ୟ ହେମ ମଣ୍ଡପ ରନ୍ଧ୍ରେ ତୋଷ ତୋରଣ ମାଗଜ ମାଳା ସେ
ଆସି, ଅମ୍ବୁରୁହ ହେମ ପୀଠେ ବସି ସେ
ଅଙ୍ଗ ଝୁଳ ସରୁ ବାସେ ବଣି ସେ ॥ ୧୫ ॥

ଅପେ ତରଣ ମଣ୍ଡଳ ମଧ୍ୟବର୍ତ୍ତୀ ଶିଖି ସଚ୍ଚ କ ରଜତ
ଅଂଶୁ ଆଲେ ବଜଢ଼ ହୁଳା ମେଳା କନ୍ୟାଗ୍ରଣିରେ ସେବତ ସେ
ଆସି, ଅପସର ସର ଗୁରୁକେଶୀ ସେ
ଅଗ୍ରେ ଲାସ୍ୟ ବଳାସେ ଉଲ୍ଲାସି ସେ ॥ ୧୬ ॥

ଆନକ ଘନ ବାଞ୍ଛିକା ରାଗ ଗାନ ପୃଷ୍ଠରେ ଚଳତ ଧୀରେ
ଅଗାଧ ପ୍ରଭୁ କୂଳକୁ ପ୍ରବର୍ତ୍ତାଇ ତରସ୍ପେ ଅବ ବଧିରେ ସେ
ଆନ, ଆଳାପରେ ଶ୍ଳେଷ ଛଳ ମିଳ ସେ
ଅବଧାନ ରାଧା ବନମାଳୀ ସେ ॥ ୧୭ ॥

ଅର୍କ ସୁତା ଶ୍ୟାମ ବପୁ ପ୍ରେ ଶୃଙ୍ଗାର ମୂର୍ତ୍ତିବନ୍ତ ମଞ୍ଜୁଲତା
ଅଧିକ ଘନ ରସରେ ବଳାସିନୀ ରସିକା ଦେଖ ଚଳୁତା ପ୍ରେ
ଆଣି, ଆଦ୍ୟେ ରସିଲ ନାଗରମଣି ପ୍ରେ
ଅଟେ ତା ବଚ୍ଛେଦେ ବରବର୍ଣ୍ଣୀ ପ୍ରେ ॥ ୧୮ ॥

ଅବମା ବନ୍ଧତା ବେଣୀ ପିହାଣିଆ ଅମ୍ବୁଜ ଝୁମ୍ପା ଉତ୍ପଳ
ଆନର୍ତ୍ତିତ ହୋଏ ତରଙ୍ଗ ଭଙ୍ଗରେ ପୃଷ୍ଠସ୍ଥାପିତ ମଞ୍ଜୁଳ ଗୋ
ଆନ, ଆଳି ବୋଲେ କୋପୀନ ମଦନ ଗୋ
ଅନାହ୍ୱେବାଣ ଅଙ୍କେ ଭେଦନ ଗୋ । ୧୯ ।

ଅମୃତମୟୂଙ୍କୁ ସୁଧା ଦଧିନ୍ତ ସେ ମୀନ ରାଶିରେ ମଣ୍ଡନ
ଅଙ୍କିତ କମଳେ ହୋଇ କରୁଅଛୁ କୁମୁଦ ମୁଦ ବର୍ଦ୍ଧନ ଗୋ
ଆନ, ଆଳି ବୋଲେ ପୁଣ୍ଡରୀକ ସ୍ଥାନ ଗୋ
ଅଦଭୁତ କମଳ ବେଷ୍ଟନ ଗୋ ॥ ୨୦ ॥

ଅଧିକ କର ପ୍ରତାପ ନାଶ କରେ ଉଡୁ ତିଳକ ସମର
ଆଗତ ଗତ ଶିଳୀମୁଖ ମୁଖର ଜବନ୍ଧରେ ଭୟଙ୍କର ସେ
ଆଜ, ଆବେଷ୍ଟିତ ଯେ ବନୌକା ବ୍ରଜ ସେ
ଅନା ରଥାଙ୍ଗ ହେଉଛୁ ଧ୍ୱଜ ସେ ॥ ୨୧ ॥

ଅବରୋହ ତରୁ ସଚନ୍ଦନ ବାଞ୍ଛ ପିଠକା ଗୋପିକା ଖେଳ
ଅଙ୍ଗ ଛଟକରେ ବରଷା କ କରେ ଝଳ ବିଦ୍ୟୁ ଆବଳି ସେ
ଆଣି, ଆପେ ମାଧବ ମାରନ୍ତି ପୁଣି ସେ
ଅଦ୍ରି ଉରଜ ପ୍ରବାହ ଜାଣି ସେ । ୨୨ ॥

ଆଲୋକ ବୃନ୍ଦାବନ ଦ୍ରୁ ଶୋଭନ ଚନ୍ଦ୍ରଶିଳ କବା ଦ୍ରବେ
ଆନନ ବିମଳ କମଳ ଗର୍ଭରୁ ମକରନ୍ଦ ଧାର ସ୍ରବେ ସେ
ଅତ, ଅମ୍ବୁ ଯୁଦ୍ଧ ଅଚ୍ୟୁତ ହାରନ୍ତି ସେ
ଆସି ପ୍ରବଳ ଅବଳାଏନ୍ତି ସେ ॥ ୨୩ ॥

ଆରମ୍ଭି ବାଦନ ବଂଶୀ ବଶୀଭୂତେ ହସ୍ତରୁ ପାତ ପିଠକା
ଆମନ୍ତ୍ରଣ ହେଲେ ଅର୍କଜା ଉଦରେ ଦରେ କ ସବ ଗୋପିକା ସେ
ଆସି, ଅମ୍ବୁଦରେ କ ବିଦ୍ୟୁତ ମିଶି ସେ
ଆପଗା କ ପୀତାମ୍ବରେ ରସି ସେ ॥ ୨୪ ॥

ଅଟେ ସେ ଶମ୍ବର ଟମ୍ବର ପରର ଘର ବୁଡ଼ିଲା କେ ଛଳେ
ଅଧିକ ଶୋଭା ଆରମ୍ଭା ରମ୍ଭା ଜଂଘ କୁଚ ଚୁମ୍ବି ଅନା ବୋଲେ ସେ
ଆଶ୍ୟ, ଅବଲୋକ ସାରସ ବିରସ ସେ
ଅନାମୁଦ୍ରିତ କରୁଛୁ ଦୃଶ୍ୟ ସେ ॥ ୨୫ ॥

ଅତଳ ଉରସିଜ ପର କାହାକୁ ଚଉସ୍ଥାନ ପ୍ରବନେ ଦଂଶେ
ଅର୍ପିତ ଅମ୍ଳାନ ଚମ୍ପକମାଳା କି ଭୁଜ ଘାତ ବେନମିଷେ ସେ
ଅଙ୍ଗ, ଅଧୋକ୍ଷଜ ଭ୍ରମେ ଧରେ ଭଙ୍ଗ ସେ
ଅଚ୍ଛ ଚନ୍ଦ୍ରେ କେ ବାସ ପିଙ୍ଗେ ସେ ।। ୨୬ ।।

ଅନିମିଷ ପାଦ ଚୁମ୍ବିବାକୁଁ ଖଣ୍ଡୁ ମଣି ହୋଇ ଅଛି ଖଣ୍ଡୁ
ଅତ୍ୟୁତ ଅଙ୍ଗେ ଜଡ଼ ଭଡ଼ ନ ଘୁଂଡ଼େ ଗଜପଞ୍ଚେ ହେମ ଗଣ୍ଡୁ ସେ
ଅଟେ, ଅଳଙ୍କାର ଚକିତ ପ୍ରକଟେ ପ୍ରେ
ଆସି ପ୍ରବେଶ ହୋଇଲେ ତଟେ ପ୍ରେ ।। ୨୭ ।।

ଅମୃତ ପୃଷନ୍ତମ ଅଙ୍ଗେ ଘାତ ତୁଷାର ତମାଳ ଦଳେ
ଅଙ୍ଗନା କେତେ ମାରବନ୍ଧୁ ଛଦ୍ମଶେଷ ସୁବେଶ ହୋଇଲେ କୁଳେ ସେ
ଅସି, ଅଙ୍ଗେ ଚନ୍ଦନ କର୍ପୂର ଘଷି ସେ
ଅଭ୍ରେ ବଧୂ ଦେଖି କୃଷ୍ଣ ଭାଷି ସେ ।। ୨୮ ।।

ଅତନୁ ବସନ୍ତ ସଖା ଅଗ୍ରବେ ତ ବ୍ୟାକୁଳରେ ବଚ୍ଛସ୍ଥାନ
ଆଶ୍ୱାସିତ ବାତ ରନ୍ଧ୍ର ମାଳ ଉଚ୍ଚ ବୃଷଭକୁ ଦେଲା ଯାନ ସେ
ଅସି, ଅର୍ଦ୍ଧବଳ ଦେଲା ମିଶ ଶଶୀ ସେ
ଅବା ମାଧବ ଚତୁର ଦେଖୀ ସେ ।। ୨୯ ।

ଅବଳା ପଣ୍ଟରେ ଗ୍ରୀଷ୍ମ ଉପଶ୍ୱରେ କେଉଁ ରୁଚି ଚନ୍ଦ୍ରକର
ଅତନୁ ଅନଳେ ଯଥା କୃଷ୍ଣ ବୋଲେ ତବ ତନୁ ସୁଖାକର ସେ
ଆସି, ଅପହୃତ ହୋଇବାକୁଁ ନଶି ସେ
ଆଳପୁକୁ ଗମେ ବୃନ୍ଦକେଶୀ ସେ ।। ୩୦ ।।

ଅନ୍ତ ଆଗତରେ ଅର୍କ ପୂଜନରେ ରାଧା କୃଷ୍ଣେ ଦାବ କେଳି
ଆସି ଚନ୍ଦ କୁଞ୍ଜେ ଜଳଯନ୍ତ୍ର ପୁଞ୍ଜେ ସ୍ୱାଧ୍ୟା ସଙ୍ଗେ ପଶା ଖେଳି
ଅନ୍ତ, ଅବେଷ୍ଟିତେ ଦଶେ ମହା ଶୋଭ ସେ
ଅକାଳେ କି ବରଷା ଆରମ୍ଭ ସେ ।। ୩୧ ।।

ଆଳି ବେଢ଼ିହୋଡ଼ କରି ପଶା ଖେଳ ଖେଳନ୍ତେ ହାରିଲେ ହରି
ଅଙ୍ଗ ଆଭରଣ ଲଳିତା ହରଣ ଆନ କେ ମୁରଲୀ ହରି ସେ
ଆଳି, ଆନ୍ତ ମନ ପ୍ରେ ନାଦେ ବଜାଇ ସେ
ଅଙ୍ଗ ଶୂନ୍ୟ ଶୋଭା ବନମାଳୀ ସେ ।। ୩୨ ।।

ଅନୁକମ୍ପା କରି ବୋଲେ ଶମ୍ଭୁଗୋସାଇଁ ପ୍ରାଣନାଥ ଶୂନ୍ୟ ଦେହ
ଅମ୍ବର କରି ଆଭରଣ ଖଞ୍ଜି ଗୋ ବଦେହର ପ୍ରେ ବଦେହ ସେ
ଆଳି,[1] ଅଣି ଖଞ୍ଜିଲେ ଭୂଷଣ ମାଳ ସେ
ଆଜଠାରୁ ଅମ୍ବର କେ ଛଳ ସେ ॥ ୩୩ ॥

ଆଳିମାନେ ଚନ୍ଦ୍ରାବଳୀ ମାନେ ଆସି ଜଟିଳା ସମୀପେ ମିଳି
ଅଜ ବଧୂବର ଦଣ୍ଡ ଅମ୍ବର ସଙ୍ଗେ ରଙ୍ଗେ ପଶା ଖେଳି ସେ
ଆଳି, ଆଳାପରେ ଆସେ ବୃନ୍ଦା ଚଳି ସେ
ଅଗ୍ରେ ଅଛନ୍ତି ଯୁଗଳ ବାଳି ସେ ॥ ୩୪ ॥

ମଧ୍ୟରେ ନାନ୍ଦୀମୁଖୀର ନିଷେଧକୁ ନ ମାନି କରେ ଗମନ
ଆସେ ଜଟିଳା ଶୁକ ଶାରୀ ରହିଲ ଶୁଣି ଛନ୍ଦ ବୃନ୍ଦା ମନ ସେ
ଆସେ[2] ଅନ୍ତିକରେ ଥାଇ ମନ ଚାପେ ସେ
ଅଗ୍ନି ଡାକିଲେ ଧାନ କଳାପେ ସେ[3] ॥ ୩୫ ॥

ଆଜ୍ଞା ପାଇ ବନ ହୋଇଲ ଦହନ ଦେଖିଲେ ବୃନ୍ଦା ବ୍ୟାକୁଳ
ଅଗ୍ନି ନିବାରଣ ସତ୍ୟ ଉଚ୍ଚାରଣ ନାନ୍ଦୀମୁଖୀ ବେନି କୂଳ ସେ
ଅତି, ଅଟେ ଛବି ବଧୂ ଯେବେ ସତ୍ୟ ସେ
ଆରେ ବୃନ୍ଦା ବୋଲେ ସେହିମତ ସେ ॥ ୩୬ ॥

ଅରଣ୍ୟ ଦେଖି ଚଉବଣ୍ଡ ଡାକନ୍ତେ ସତ୍ୟ ଜାଣି ଅଗ୍ନି ଲିଭେ
ଆଶ୍ଚର୍ଯ୍ୟ ବୃନ୍ଦା ଅବାଧା ହେଲ ରାଧା ପ୍ରଶଂସାକୁ କଲ ଜବେ ସେ
ଆସେ, ଆଳୟକୁ ମାନସ ହରଷେ ସେ
ଅଜ ବଞ୍ଚିଲ ବଧୂ ବିଶ୍ୱାସେ ସେ ॥ ୩୭ ॥

ଅନେକ ଦେଖି ଉପାୟରେ ବହାଇ ଜଳାଇ ବନପ୍ରବର
ଅଷ୍ଟାଦଶ ଛନ୍ଦ ପଦ ଆସପଦ ଶ୍ୟାମସୁନ୍ଦର ଦେବର ସେ
ଅହ, ଅବସାନେ ରାଧା ମିଳେ ଗୃହ ସେ
ଅତି ବୃଦ୍ଧି ବୃନ୍ଦା ତୋଷ ବୃନ୍ଦ ସେ ॥ ୩୮ ॥

---

୧ । (କ) 'ଆଳି' ପରେ 'ଆଳାପରେ ଆସେ ବୃନ୍ଦା ଚଳି ସେ' ଅଛି ।
୨ । (କ) ଆସେ
୩ । (କ) ପୋଥିରେ ଏହି ଧାଡ଼ି ନାହିଁ ।

— ପଞ୍ଚମ କୁସୁମ —

# ଆଠ ଚଉପଦୀ ପୁଷ୍ପ ଲେଖନ

ଶ୍ଳୋକଃ—

ପ୍ରଣମ୍ୟେ ଚରଣାମେ ଚ ଗୀତକାବେଂଷ୍ଟୁ ଦର୍ଶିତେ
ସ୍ୱେକୈବ ନାୟିକା ଗୃପି ଦ୍ୱରମୂର୍ତ୍ତିରବାସ୍ଥଧା ॥୧॥
ବାସ୍ୱସଜ୍ଜା ସମୁତ୍କଣ୍ଠା ସ୍ୱାଧୀନଭର୍ତ୍ତୃକା ତଥା
କଳହାନ୍ତରିତାଗୃପି ବିପ୍ରଲବ୍ଧାଽଭିସାରିକା
ଖଣ୍ଡିତା ପ୍ରୋଷିତାଶ୍ଚୈବ ନାୟିକା ଶୁଦ୍ଧସମ୍ମତା ॥୨॥

(ଇତି ଭରତାଚାର୍ଯ୍ୟେ)

( ଏକ )

— ବାସକସଜ୍ଜା —

( ରାଗ — କେଦାରଗୌଡ଼ା )

॥ ତାଳ — ସଦ୍ଧମାନ ॥

ଅଳି କେଶୀ
ଆଳିରେ ଭଷି
ଅଧିକ ନଶି ॥ ପଦ ॥

ଅକ୍ଷି ଯଥା ଦୃଷ୍ଟି ତ
ଅଛ ଯାପ ତେମନ୍ତ
ଅବଧି ଦୂର ହୋଇ
ଆମ୍ଭେଶ୍ୱରର ବିଳମ୍ବ କମ୍ପାଇ
ଆଶା କର ଚେତମତେ କରତାଇ ।
ଅନ୍ଧାର ବନେ କ ପନ୍ଥ ନ ପାଇ
ଆସୁଥିବେକି ଦୂରେ ଦେଖ ଯାଇ ॥୧॥

ଅନ୍ତେ ମୋର ସ୍ମରସ
　ଆସୁ ମରଣ ଲେଶ
　　ଅଚ୍ଛନ୍ନ ସୁଖ ପାଇ
　　　ଅତି ପଳଙ୍କ ପାନ ଭଙ୍ଗି ଥୋଇ
　　　　ଅମର ପୁଷ୍ପ ପ୍ରେଳା ଚନ୍ଦ୍ର ଦେଇ
　　　　　ଅନନ୍ତ ସ୍ରକ ଚନ୍ଦନ ଦୁଇ
　　　　　　ଆମୋଦ ବିଶେଷରେ ଚହଟଇ ।୨।

ଆଣି ପୁଷ୍ପ ପାଖୁଡ଼ା
　ଅଛୁ ଶେଯ ସଜାଡ଼ି
　　ଅଟେର କର୍ପୂର ଧଳୀ
　　　ଆଭରଣ ମନ ମୋହିବା ଭଳି
　　　　ଅଙ୍ଗ କରିଅଛୁ ଅଧିକ ଝଳି
　　　　　ଅଳକରେ କେଶ ପ୍ରଷ୍ଟକ ସାମଳି
　　　　　　ଅତୁଲ ରସକୁ କସ୍ତୁରୀ ଦଳି ।୩।

ଅମ୍ବର ସରୁ ପିନ୍ଧି
　ଆଣେ ମାଳକ ବାନ୍ଧି
　　ଥାଜ ସେ ବୃଥା ପୁଣି
　　　ଅତି ଖରଶ୍ୱାସେ ରମଣୀମଣି
　　　　ଆସେ ଦ୍ୱାରକୁ କହୁ ଧ୍ୱନି ଶୁଣି
　　　　　ଅଟେ ସେ ବାସକସଜ୍ଜାର ବାଣୀ
　　　　　　ଆଣିଦେବ ଶ୍ୟାମସୁନ୍ଦର ଭଣି ।୪।



( ଦୁଇ )

— ଉତ୍କଣ୍ଠିତା —

( ରାଗ—କାନଡ଼ା ଗୌଡ଼ା )

॥ ତାଳ—ତ୍ରିପୁଟା ॥

ଆଳି ମୁଖ ଚୁମ୍ବି ନବ ବାଳି କହେ ପ୍ରେମରେ
ଆଜ ଦେଖିବେ ଯେ କାନ୍ତ ପଠୁ ଗୃହୁ ସ୍ତୋମରେ ॥ପଦ॥

ଅଳି କମଳିନୀ ପ୍ରୀତି ଭାବ ଜଣା ହେବ ରାତି
ସ୍ବଚ୍ଛ ଚୁମ୍ବି ଦେବାବେଳେ ମୁଖ ସୁଧା ଧାମରେ ॥୧॥

ଅଙ୍କେ କରାଇ ଆସନ ଫେଡ଼ିଲା ବେଳେ ବସନ
ଥିବ କି ମୋ ଦେହେ ଜ୍ଞାନ ବଶ ହୋଇ କାମରେ ॥୨॥

ଆକରଷଣେ କୁନ୍ତଳ ଫିଟି ଲୋଟିବ ଯେ ମାଳ
ଉରଜ ଶିବ ମଞ୍ଜୁଳ ହେବ ଅର୍ଦ୍ଧ ସୋମରେ ॥୩॥

ଅଛି ପୁଳକ ବଧାନ ଚଳିବ ପରା ମଦନ
ନଖ ଭାଲରେ ଜଘନ ଘାତ ରତି ସମରେ ॥୪॥

ଅନାୟତରେ କିଙ୍କିଣୀ ବଜାଇବ ନାଣାମଣି
ନାଟ ଭରତନ୍ତେ ବେଣୀ ଖେଳିବ ଚରମରେ ॥୫॥

ଆଖ୍ୟାତ ଉତ୍କଣ୍ଠା ଭାବ ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲେ ଅଧରେ ବୁଡ଼ିବ ଭୃଙ୍ଗାନ୍ତ ଯା ଅମରେ ॥୬॥

( ତିନି )

## — ସ୍ୱାଧୀନ ଭର୍ତ୍ତୃକା —

( ରାଗ – ଶଙ୍କରାଭରଣ )

॥ ଫେକତାଳ ॥

ଅଙ୍ଗନା ବର
ଅଳପ ହସି
ଅଞ୍ଚଳରେ କହଇ କାନ୍ତ ସୁବେଶୀ
ଅନା ଶିଳ୍ପକାର୍ଯ୍ୟ[1] ଠାରୁ
ଅଟେ କେଶ ବେଶ ଗୁରୁ
ଅଚ୍ୟୁତ ସାଜ ଅଳକ
ଆପେ ଲେଖିଲେ ତିଳକ ।ପଦ॥

ଅଳତା ରାଗରେ ପଦ ରଞ୍ଜିତ
ଅନୋଚିତ ଚନ୍ଦ୍ର କଳ୍ପ କାଞ୍ଚିତ
ଅଧିକ ପ୍ରୀତି ଭରଣ
ଆଷାଢ଼ କଲେ ଯେ ଘନ
ଅଟେ ପ୍ରେମ ସ୍ଥଳ ସାରସ
ଆମନ୍ତ୍ରଣ ମୋ ଶିରସ ॥ ୧ ॥

ଅଧିକରେ ମୁଁ ନୁହଇ ସୁବେଶ
ଅଛିର ତଥାପି ବନ୍ଧ[2] ଆବାସ
ଅଙ୍କର ବନାରେ ସେ ଯେ
ଆସନ ନ ଦେଲେ ଶେଯେ
ଆପଣା ଛନ୍ଦି ଶପୂନ
ଆଦରେ ନଶୀ ଶପୁନ ॥ ୨ ॥

---

୧ । (ଲ) ଶିଳ୍ପକାର୍ଯ୍ୟ
୨ । (ଗ) ବନ୍ଧ

ଆନନେ ପଡ଼ିଲେ ପୁଷ୍ପ ପରାଗ
ଅଙ୍ଗେ ପୋଛନ୍ତି କେତେ ସରାଗ
ଆତପେ ମୁଖ ନୀରସ
ଆଲୋକ ଆଣି ସାରସ
ଆପଣା ଶିରେ ଲଗାନ୍ତି
ଅଧୀର ହୋଇ ସେ ଅନ୍ତ ।୩।

ଏତେ ସ୍ୱାଧୀନଭର୍ତ୍ତା ବାଣୀ ଭବ
ଆଣି କହେ ଶ୍ୟାମସୁନ୍ଦର ଦେବ
ଅଧିକେ ନେହ ସମ୍ପତ୍ତି
ଆଦରେ କଲେ ଯେ ପତି
ଅଛନ୍ତି ଔଷଧି ପନ୍ତି
ଆନ ମୋ ନ ଜାଣେ ମନ୍ତ୍ର ।୪।

---

( ଗ୍ନୂର )

— କଳହାନ୍ତରିତା —

( ରାଗ—ଦେଶାକ୍ଷ )

॥ ତାଳ—ତ୍ରିପୁଟା ॥

ଅକାରଣେ ମୂଢ଼ପଣେ କାନ୍ତେ କମ୍ପା ରୁଷିଲି ।ପଦ।
ଅୟନେ ବଚନେ ଶୟନେ
ଦେଖି ନ ଥିଲେ ନୟନେ
ଭରମ ହୋଇ ଚରମ କରି ଯାହା ବସିଲି ॥୧॥

ଅନ୍ତରଙ୍ଗ ଶୋଭା ପୁଞ୍ଜ
ଦର ବିଦଳିତ କଞ୍ଜ
ନେହ ଯେବେ ହୋଏ ହେଳ
ଆଲୋକେ ନ ରସିଲି ॥ ୨ ॥

ଆପେ ଦଳିଲେ ଅଳକ୍ତ
ସ୍ବଠୁଶଳଚ ଅନୁରକ୍ତ
ଅନାଦର କର ବ୍ୟକ୍ତ
ସୁଖ ସୃଷ୍ଟି ନାଶିଲ ॥ ୩ ॥

ଅଶ୍ରୁ ଧାର କଲ ହାର
ଉତ୍ପଳ ମାଳ ନାହାର
ଭୁଜକୁ କର ବାହାର
ପରୁଷରେ ଭୂଷିଲ ॥ ୪ ॥

ଅନଙ୍ଗର ଶାନ୍ତି ଯୋଗ
ଭାଲ ଲେଖା ହେଲା ଭୋଗ
କାନ୍ତକୁ ସୁହାଇ ଆପେ
ସନ୍ଧ୍ୟ ପ୍ରେବେ ପୋଷିଲ ॥ ୫ ॥

ଆଣିବେ ତ ହାଙ୍କୁ ଦେବ
କଳହାନ୍ତରିତା ଭାବ
ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲେ ନଷ୍ଟେ ଭାସିଲ ॥ ୬ ॥

---

( ପାଞ୍ଚ )

— ବିପ୍ରଲବ୍ଧା —

( ରାଗ – ପୂରବୀ )

॥ ତାଳ – ଝଡ଼ତାଳ ॥

ଆଜ ନିଶିରେ,
ଆଜ ସମାରେ ରସିକ ରସିରେ ॥ ପଦ ॥

ଅଳପର ବଟ ମାତ    ଇଚ୍ଛେ ନବ ନବ ପ୍ରୀତି
ଅନୁଭବେ ଜାଣିଲ ଚରିତ ଯେ ॥ ୧ ॥
ଅଟେ ସ୍ଫଟିକ ଯେମନ୍ତ    ଯା ପାଶେ ଥାଇ ତେମନ୍ତ
ଅନୁରାଗରେ ହୋଇଛୁ ପୂରିତ ଯେ ॥ ୨ ॥
ଅବବାହାର ବୟସ    ପର ବୃଥା ନଶି ଶେଷ
ଆସି ସଂକେତକୁ ଶ୍ରମ ଲଭ ଗୋ ॥ ୩ ॥
ଅଶ୍ରୁ ମୋତି ଉଜ୍ଜ୍ୱଳରେ    ପୂରିତ ଭାଗ୍ୟ ବଳରେ
ଅଞ୍ଚୁଳରେ କୁଚ ହେମ କୁମ୍ଭ ଗୋ ॥ ୪ ॥
ଅଣସର ଶିଖିଧର    ପଣ୍ଡ ତା ଆନନ ମୋର
ଆଲ ନ କହିବ ତା ବଚସ୍ତ ଗୋ ॥ ୫ ॥
ଆଳାପ ଶ୍ୟାମସୁନ୍ଦର    ଦେବର ବପ୍ରଲବ୍ଧାର
ଆସେ ମ୍ଳାନ ମୁଖକୁ ସେ ଶପ୍ତନ ଗୋ ॥ ୬ ॥

---

( ଛଅ )

— ଅଭିସାରିକା —

( ରାଗ — କେଦାର )

॥ ତାଳ — ପଡ଼ତାଳ ॥

ଅବଳମ୍ବରେ ପ୍ରଲମ୍ବ କେଶୀ ଊଠ କ ନ ॥ ପଦ ॥
ଅସିତ ଚେଳ ନଚେଳ    ବପୁରେ କସ୍ତୁରୀ ବୋଳ
ମୋତି ଆଭର କଣ୍ଠେ ଦେ ନା ॥୧॥
ଅଚ୍ୟୁତର ତନୁ ଛବି    ଆଭରଣ ମାଳ ଛାଡ
ଆଲିଙ୍ଗନ କର ପ୍ରୀତି ଯେନା ॥୨॥

ଅତନୁ ତନୁରେ ଶର                    ପ୍ରହାରକୁ ଅଗ୍ରସରି
ସୁତନୁ ବନୁ କେ ହେବ ସେନା ।୩।।
ଅଭପ୍ତରେ ଚଳ ଶର                    ଧନୁ ଧର ପଞ୍ଚଶର
ସଙ୍ଗେ ଥିବା ଠାରେ ଡରପ୍ତେନା ।୪।
ଅଦ୍ଧ ଶିରେ ଜଳେ ମଣି                    ଆଲୋପ ଥରେ ଜାଣି
ପିବୁ ଡରାଇ କହ୍ଲେ କେ ନା ।୫।।
ଅଭିସାରିକାର ଭାବ                    ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲେ ସଖୀ ସଙ୍ଗେ ଥିବୁ ପିନା ।୬।।

---

( ସାଢ )

— ଖଣ୍ଡିତା —

( ରାଗ—ମାରୁଆ )

|| ତାଳ — ପଡ଼ତାଳ ||

ଅଚ୍ୟୁତ ସେ ତବ ମନୋହାରୀ ||
ଅନୁରାଗ ବଳେ                    ମନସିଜ ଖେଳେ
ଯାଂ ସଙ୍ଗେ ଅଛ ରଜନୀ ହରି || ପଦ ||
ଆଖଣ୍ଡଳ ଧନୁ                    ଶୋଭା ବଢେ ତନୁ
କୁଟିଳ ଗୁଣ ହିଁ ସେହୁପରି
ଅଙ୍ଗ ଲୁଚ ମାଳ                    କୁସୁମ ସମେଳ
ଅଳତା ରଙ୍ଗ ହୃଦରେ ଧରି ||୧||
ଅଧର ସୁରଙ୍ଗ                    ନେତ୍ରାଞ୍ଜନ ସଙ୍ଗ
ଗୁଞ୍ଜି ଛବି କରୁଅଛି ଗୌର
ଅରୁଣ ଉତ୍ପଳ                    ମଞ୍ଜୁ କରତଳ
କର୍ବୁରିତ ଧରି କୁଚ ଗିରି || ୨ ||

ଅଳିର ପ୍ରତୀକ          କୁସୁମ କଣ୍ଟକ
ଘାତ ସଚ୍ଚରର ନଖେ ଚରି
ଅଙ୍ଗ ତୋ ଚଞ୍ଚର          ଆଣିଛୁ କେୟୁର
ବଳୟୁ ସହିତେ ଯଞ୍ଜୀ ଶିଖା । ୩ ॥

ଅସତୀ ନୁହଇ          ସ୍ୱେକ ତନୁ ଦୁଇ
କଲୁଥାଅ ପ୍ରୀତି ଅନୁସରି
ଅଙ୍ଗେ ତବ କ୍ଷତ          ମୁଁ ଯେଣୁ ଚାପିତ
ଅନୁଭବେ ଜଣା ହେଲ ହରି । ୪ ।

ଅନୃତ ନ କହ          ମୋ ଆଗେ ନ ରହ
ତା ଅନୁରାଗ ନୟନେ ଭରି
ଆଣିଲି ଖଣ୍ଡିତା          ଭାବ ଗୁଭୁରିତା
ଶ୍ରୀ ଶ୍ୟାମସୁନ୍ଦର ଦେବ ସୁଖ ।୫।

---

( ଆଠ )

— ପ୍ରୋଷିତଭର୍ତ୍ତୃକା —

( ରାଗ—ଭୈରବ )

॥ ଏକତାଳି ॥

ଅସର ନଶୀ,
ଆମ୍ଭେଶ୍ୱର ହେଲେ ତହିଁ ପରବାସୀ
ଅଙ୍ଗ ଦହେ ଶଶୀ,
ଅନ୍ଧାର ନଶୀ ଗୋ ସଜନୀ ! ପିକ ଘୋଷି ॥ ୧ ॥

ଅଶନ ହୁ ବସ,
ଅନଳ ଚନ୍ଦନ ଚନ୍ଦ୍ର ଆଘ୍ରାଣ
ଆସିବେ ଜୀବେଶ । ନାହିଁ ଆଶ ॥ ୨ ॥

ଅଳି ସୁମନସ,
ଉପହତ ହେଲା ପଡି ଥିବା ଦେଶ
ଅନଙ୍ଗର ହାସ । ନୋହେ ଲେଶ ।। ୩ ।।

ଆନ ନାସ୍ତ ରସ,
ଆଣି ମଣି ମନ୍ତ୍ର କଲ୍ଲ କି ହରଷ
ଇଷ୍ଟ ସ୍ବସ୍ଥ ବେଶ । କଲା ବଶ ।। ୪ ।।

ଆଣେଲା ସନ୍ଦେଶ,
ଆଶୁଗ ପରି ଯାଇ କେ ସେହ୍ନ ଦେଶ
ଈଶ୍ବର ସଦୃଶ୍ୟ । ମୂର୍ଚ୍ଛେ ଶ୍ବାସ ।। ୫ ।

ଅଧିକ ହରସ,
ଆଳାପ ଶ୍ୟାମସୁନ୍ଦର ଦେବ ଭାଷ
ଅଟେ ପ୍ରୋଷିତେଶ । ସମା-ଶ୍ରାଶ ।। ୬ ।।



— ଷଷ୍ଠ କୁସୁମ —

# ଚଉତିଶା କୁସୁମ ଲେଖ୍ଣ

( ସ୍ୱଗ – କାଳ )

ଅଟେ କୋବଦ ସ୍ୱର ସର୍ବ ସୁହୃଦ ଜପାସିକ
ଆଦର କର ଯେ ଗୁଣାକର କାବ୍ୟରେ ସୁବଂଶିକ
ଅଚଳା ଜାଣ ଖଳ ଦୂଷଣ ହେବାକୁ ବୈୟ୍ୟାସିକ
ଆଟରେ ରସି ମୁହ ତୁଳସୀ ଶ୍ୱାନର ମାନସିକ ॥ ୧ ॥

ଆଖ୍ୟାତ ପୁଂସ ନାଶ ବଶେଷ ଲକ୍ଷଣ ଯଥା ସଙ୍ଖ୍ୟ
ଅଛୁ ସମ୍ଭୋଗ ଶୃଙ୍ଗାର ତୁଙ୍ଗ ପୁନ ବପ୍ରଲମ୍ଭାଖ୍ୟ
ଅସ୍ଥିତ ପୁଣ ଭବ ଲକ୍ଷଣ ସର୍ବତେ କର ମୁଖ୍ୟ
ଅଳଙ୍କାରକୁ କର ସାରକୁ ବୁଝିବ କୃତ ମୁଖ ॥ ୨ ॥

ନାୟିକା ସ୍ୱକୀୟା— ମଧ୍ୟା । ନାୟକ ଅନୁକୂଳ

ପ୍ରବାସାନ୍ତର ରସ । ସମ୍ଭୋଗ ଶୃଙ୍ଗାର

ହର୍ଷ ସଂଚ୍ଛର ଭବ । ରୂପକ ଅଳଂକାର

— ଗୀତ —

ଅଇ ଆତୁର କର୍ଡ଼ି ଚକ୍ତୁର ବଦେଶ କଳା ଭଙ୍ଗ
ଅସେ ବସନ୍ତେ ବହୁ ସନ୍ତତେ କୃତ ଅଚଳ ତୁଙ୍ଗ

ଅମ୍ବୁଦ ଆଗମକୁ ସାରଙ୍ଗ ଯେମନ୍ତ ଅନୁରାଗ
ଅନ୍ତରକର ଉଜର ସ୍ଥିତ ହେଲା ବଲ୍ଲଭ ବେଗ ॥ ୩ ॥

ଆଳି ଅବଲୋକ ଡାକେ ବାଳକ ନାଶ ନୟନ ଅନ୍ଧ
ଆସିଲେ କାନ୍ତ ହର ପ୍ରେକାନ୍ତ ମାର ବେଦନା ଓଘ
ଅକ୍ଷି ଚଞ୍ଚଳ ପାତ ଅଞ୍ଚଳ ନିଜସ୍ଥଳ ଅନ୍ତାର୍ଦ୍ଧ୍ୟ
ଅଶ୍ରୁ ଆନନ୍ଦ ଚପଳେ ପାଦ ଧୋଇଲା ସ୍ୱେଦ ଅର୍ଘ୍ୟ ॥ ୪ ॥

ଆଲମ୍ବ ବେଣୀ ସ୍ଥାପିତ ଆଣି ଉରଜ କୁମ୍ଭେ ପୁନ
ଆଚ୍ଛାଦ ନବ କର ପଲ୍ଲବ ରୁଚିର ବର୍ଦ୍ଧ୍ୟମାନ
ଅମ୍ଳାନ ଭାଳ କୁସୁମ ଫୁଲ ସୁହାସରେ ଶୋଭନ
ଅନୁରକ୍ତରେ ପରସ୍ପରରେ ରଚନ ସୁବଚନ ॥ ୫ ॥

ଅଟେ ସ୍ୱେ ଭାବ ଚନ୍ଦ୍ରିକ ଜବ ହର୍ଷ ସଂଗ୍ରହ ଉଚ
ଅବନା ମଧ୍ୟା ସ୍ୱକୀୟା ସିଦ୍ଧା ଅନ୍ତ୍ୟାନୁକୂଳ ପାଞ୍ଚ
ଅଳଙ୍କାର ସେ ରୂପକ ରାଜ ପ୍ରବାସାନ୍ତର ବାତ
ଆଖ୍ୟା ସଂଯୋଗ ଶୃଙ୍ଗାର ଯୋଗ କୋବଦ ସୁଖ ସଞ୍ଚ ॥ ୬ ॥

ନାୟିକା — ସ୍ୱକୀୟା ମଧ୍ୟା

ନାୟକ — ଶଠ

ଔତ୍ସୁକ୍ୟ ସଂଚାରୀ ଭାବ

ଆଳିରେ ଭଳି କହେ କେ ବାଳ ବଲ୍ଲଭ ମିତ ଭୁଞ୍ଜ
ଆଗତ ରତି ଚିହ୍ନ ମୂରତି ଭାଳେ ଅଳକା ସ୍ୱଚ୍ଛ
ଅବଲୋକନେ କୋପ ଜନନେ ଭାଷିଲି ଗଚ୍ଛ ଗଚ୍ଛ
ଆଜ ଯା ପାଶେ ସୁରତି ପାଶେ ବାନ୍ଧିଲା ଦେଇ ବସ୍ତ୍ର ॥ ୭ ॥

ଅବଲମ୍ବରେ ଗତ ସ୍ୱେ ଗିରେ ମୋ ପାଶ କରି ତ୍ୟାଜ
ଅମ୍ବର ଧରି ଦୁର୍ବଳ ପଶ୍ଚାତାପରେ ଯଥା ଆଜ୍ୟ
ଅବଲୋକନ ନ କରି ପୁନ ଗତ ସେ ଦେଇ ରୁଜ
ଆତୁର ଚେତେ ବେଳରୁଁ ଅନ୍ତେ ପୀଡ଼ଇ ମନସିଜ ॥ ୮ ॥

ଅଚିରେ କେହ୍ନ ଆସିବ ସେହ୍ନ ଗତି ତ୍ରୈଲୋକ ମାଝ
ଅଟେ ବାରଣ ମନ ବାରଣ ନୋହେ କଦାପି ବୁଝ

ଅନ୍ତର ବ୍ରୀଡ଼ା ଉତ୍ସାହ ତ୍ରୁଟା ବୋଲେ  ତା ହେବେ ରଙ୍ଗ
ଅଘାତ ପାଇ ଶସ୍ୟ ଭକ୍ଷଇ ପଶୁ ଯଥା ଅବୁଙ୍ଗ ॥ ୯ ॥
ଅଶନ ବସ ତାପେ ବିଶେଷ ଶ୍ରୀଖଣ୍ଡ ଚର୍ଚ୍ଚାମାନ
ଆଶା ଜୀବନେ ନାହିଁ ଭୁବନେ ଦହଇ ପବମାନ
ଅଙ୍ଗନା ମଧ୍ୟା ସ୍ୱକୀୟା ସିଦ୍ଧା ନାୟକ ଶଠ ପୁନ
ଅଟେ ଔତ୍ସୁକ୍ୟ ସଂଗୃହ ଟିକ ଭାବରେ ବର୍ଦ୍ଧମାନ ॥ ୧୦ ॥

ନାୟିକା-ପରକୀୟା ଅଭିସାରିକା

ଶଙ୍କା ସଂଗୃହ ଭାବ

ଆକ୍ଷେପାଳଂକାର

— ଗୀତ —

ଆଗତ କଣା ମୂଦ ମନସା କଣାଙ୍କ ପ୍ରେମୋତ୍କଣ୍ଠ
ଅଙ୍ଗେ କସ୍ତୁରୀ ଲେପି ତନୁସ୍ତ ପିନ୍ଧି ଅସିତ ପାଟ
ଅଭିସାର ସେ କରଇ ବସେ ନାହିଁ ନୂପୁର ରଟ
ଅଶା ନକରେ ପତନ କରେ ନେଶ ଉତ୍ପଳ ଘୁଟ ॥ ୧୧ ॥
ଆସଇ ଶିଳ୍ପୀକାଷକ କଳ୍ପି ବୋଲନ୍ତି ଥାଇ ପୃଷ୍ଟ
ଅଙ୍ଗନା ଚନ୍ଦ୍ର ନୋହ ଭୟାତ୍ତୁ ନଶି ଅନ୍ଧାର ଶ୍ରେଷ୍ଠ
ଅଭିସାରିକା ଅଟେ ସ୍ୱେ ଶଙ୍କା ସଂଗୃହ ଭାବ ପାଠ
ଅବଳା ପରକୀୟାଳଙ୍କାର ଆକ୍ଷେପ ବୁଝ ପଠ ॥ ୧୨ ॥

ନାୟିକା—ସ୍ୱକୀୟା ମଧ୍ୟା ମାନିନୀ

ନାୟକ—ଶଠ

ବିପ୍ରଲମ୍ଭ ଶୃଙ୍ଗାର

ଆକ୍ଷେପାଳଂକାର

— ଗୀତ —

ଅମରଷରେ ପ୍ରିୟା ଈଶରେ ଜାତ ଭାଷରେ ଜଡ଼
ଅଶ୍ରୁ ନିକରେ ଅଭିଷେକରେ ଚୋବଇ କୁଚ ମୂଢ଼

ଆଳି ବେଷ୍ଟିତ × × ✕ × ସେବନେ ମାନଛୋଡ଼
ଅନଙ୍ଗ ଦକ୍ଷ ଥାଉ ବିପକ୍ଷ ବଲ୍ଲଭ ଦୁଷ୍ଟ ଗୁଡ଼ ॥ ୧୩ ॥

ଅତି ପିଶୁନ ବାଣୀ ଲସୁନ ଗନ୍ଧ ଚଉରେ ଦୃଢ଼
ଅବଲା ଧବେ ଯେ ଦୁଃଖ ସହିବେ ନାଶନ୍ତି ହୋଇ ବେଢ଼ି
ଆକ୍ରାନ୍ତ ହୃଦହର ଦୁହୃଦ କଲେ ସାପୁକ ଦାଉ
ଅଧିକ ତପୀ ତେଜେ ଅଦ୍ୟାପି ଯେ ବ୍ରହ୍ମଧ୍ୟାନ ଗାଢ ॥ ୧୪ ॥

ଅମ୍ଳ ସ୍ୱଭାବ ଅଟଇ ଆମ୍ର ଅନ୍ତରେ ଖାଇ ଜାଣ
ଆନ କ ଶୁଣା ମୀନ ଈକ୍ଷଣା କଣ୍ଠରେ ସେ ନପୁଣ
[ଅହି ବେଷ୍ଟନ ହେଲେ ଚନ୍ଦନ ନ ଛାଡ଼େ ଶୀତ ଗୁଣ]²
ଅତି କଠିନ କରକା ପୁନ ମଧ୍ୟରେ ଦ୍ରବ ଶୁଣ ॥ ୧୫ ॥

ଆଦର ବିନା ପତି ନବୀନା ଗଲା ତା ପ୍ରେମ ଚ୍ୟୁତ
ଅବଧାରିତ ନ କଲୁ ହିତ ସେ ଫଳ ଅନୁଭୂତ
ଅଟେ ସ୍ୱକୀୟା ମଧ୍ୟା ଯେ ପ୍ରିୟା ମାନସୀ ଶଠ କାନ୍ତ
ଆକ୍ଷେପ ଅଳଙ୍କାର ଶୃଙ୍ଗାର ବିପ୍ରଲମ୍ଭରେ କାନ୍ତ । ୧୬ ।

ନାୟିକା-ଖଣ୍ଡିତା-ମଧ୍ୟା-ଧୀରା-ଅଧୀରା

ଈର୍ଷ୍ୟାମାନ – ସଞ୍ଚାରି ଭାବ

ନାୟକ – ଶଠ

ଅପହ୍ନବାଳଙ୍କାର

— ଗୀତ —

ଅଧର ମୁଖେ ପ୍ରିୟା ସମ୍ମୁଖେ ପ୍ରବେଶ ପ୍ରାଣନାଥ
ଅଙ୍ଗେ ନଖ ରଦନ ଲେଖ କେଶ ବସନ ଶ୍ଳଥ
ଉପଜମାନ ମାନସୀ ମାନ ସଂଭୂତ ହୃଦ ପଥ
ଆଳାପଚୟ ଯେ ରତି ଜୟ ଲେଖନ ଯଥା ଅର୍ଥ ॥ ୧୭ ॥

---

୧ । (କ) ଅମ୍ବ
(ଗ) ଅମ୍ବ
୨ । (କ) ପୋଥିରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।

ଅଳକ୍ତ ରାଗ ସେ ପ୍ରିୟାରାଗ ପୂର ଉତ୍କଣ୍ଠେ ହୃଦ
ଅନବକାଶ ମୋ ଭାବ ଲେଶ ହେବାକୁ ଆସପଦ,
ଅଙ୍ଗ ସରସ ନ କର ରସବଶର ହେବ ଖେଦ
ଅନ୍ତ ବନତ ଶୁଣି ତା ପତି ଧରେ ପଲ୍ଲବ ପାଦ ॥ ୧୮ ॥

ଅନ୍ତେ ବନସ୍ତ ଘେନ ସେ ନୟନାନ୍ତେ ଗୃହ୍ଣିଲ ବଧୂ
ଅନ୍ତର ମାନ ହୃଦ ସମ୍ମାନ ଯଥା ଶରଦ ବଧୂ
ଆସ୍ୱାଦକୁ ସେ ପେୟୁଡ଼େ ରଭସେ ମାନିନୀ ଓଷ୍ଠ ମଧୁ
ଅଜ୍ଞ ନ ଜାଣି ଭୁଲଇ ଆଣି ପିୟୂଷ ସ୍ୱାଦୁ ସାଧୁ ॥ ୧୯ ॥

ଅଳି ସେ ଦନ୍ତ ଚୁମ୍ବିଲା ଗଣ୍ଡ ସୁମଧୁକ ସୁଂନ
ଅଧର ସୁଧ ପାନରେ ବାଧା ହଣି ଦେଲା ସୁମନ
ଅଟେ ଖଣ୍ଡିତା ମଧ୍ୟା ବନତା ଧୀରା ଅଧୀରା ପୁନ
ଅପନ୍ନ ବାଳଙ୍କାର ପେଶଲ ଶଠ ଈରଷା ମାନ ॥ ୨୦ ॥

ନାୟିକା—କଳହାନ୍ତରିତା

ନାୟକ — ଶଠ । ବିପ୍ରଲମ୍ଭ ଶୃଙ୍ଗାର

ଦୈନ୍ୟ ସଞ୍ଚାରି ଭାବ । ଜାତି – ଉଲଙ୍କାର

—ଗୀତ—

ଅଙ୍କିତ ରତି ଚିହ୍ନରେ ପତି ଗୃହ୍ଣିଁ କର୍ପୂର ରୂପ
ଅଧୋମୁଖରେ ମଣ୍ଡୀ ନଖରେ ଚିରଇ ଲଭି ତାପ
ଅଙ୍ଘ୍ରିକ ବନ୍ଧ କଣ୍ଠଲା ବନୀ ପତ୍ରରେ ସୁପ୍ରଲାପ
ଅବଜ୍ଞା କରି ସ୍ୱଚ୍ଛନ୍ଦେ ନାରୀ ଛୁଡ଼ି ନ ଦେଲା କୋପ ॥ ୨୧ ॥
ଇତି ପରୁଷ କହିଲା ଭାଷ ଦୁଖାଇ ପାଦ ଗୁଳ୍ଫ
ଅଟେ ନବଟେ ଚମ୍ପକ ପାଶେ ଯାଇ କି ସେ ଦ୍ୱିରେଫ

୧ । (ଭ) ଘଷରେ

ଅନ୍ତର ପତି ହଜିଁ ଯୁବତୀ ଆକୁଳ ହୃଦ ଗୁମ୍ଫ
ଆପେ ହୁଡ଼ିଲା ନ ଦେଖାଇଲା ହାସ ସାଗର କଫ ॥ ୨୨ ॥

ଅହୋ ଦଇବ ବାଳଣ ଇବ କ ବୃଦ୍ଧ ନଣ୍ଡଲ୍ଲ ଭବ
ଅକର୍ଣ୍ଣ ଧାରେ ଖେଦ ସାଗରେ ବୁଡ଼ିଲା ସୁଖ ନାବ
ଆଳରେ ନନ୍ତ ହୋଯେ ଯୁବତୀ ଯେବେ କେ ଅଛି ଦୈବ
ଅଳକ ପୂରେ ଯିବାର ଖରେ ଦେହେ ଭିନ୍ନ ଗାବ ॥ ୨୩

ଅନୁତାପିତ ଯେ କଳହାନ୍ତରିତାର ଦୂର ଦମ୍ଭ
ଆମ୍ଭ ଈଶ୍ୱର ଶଠ ବେଶର ଶୃଙ୍ଗାର ବିପ୍ରଲମ୍ଭ
ଅଧିକ ଧନ୍ୟ କେବଳ ଦୈନ୍ୟ ସଂଗ୍ରହ ଭାବ ଶୁଭ
ଅଟେ ପ୍ରଖ୍ୟାତ ବୃଷ୍ଟି ଯେ ଜାତି ଅଳଙ୍କାରରେ ଶୋଭ ।୨୪ ।

ନାୟିକା – ମୁଗ୍ଧା ସ୍ୱକୀୟା । ନାୟକ-ଶଠ
ହର୍ଷ-ସଂଗ୍ରହ ଭାବ । ସୂଖାଲଂକାର

—ଗୀତ—

ଆନ ଯୁବତୀ ରମଇଁ ପତି ଘେନଇଁ ମନୋରମ
ଆଳରେ ବାଳ ରହରେ ଭାଳ ଲଭଇଁ ବାଧା ଶ୍ରମ
ଅନ୍ତକେ ପତି ଦେଖି ସଂସ୍ଥିତ ଉରଜେ ମୁଖ ସୋମ
ଆଲେକ ପାଦ ଅଙ୍ଗୁଳି ଷୋଦ ଲେଖଇ ଜାତ ଚମ ॥ ୨୫ ॥

ଆତୁରେ ପତି ବୃଷ୍ଟି ଭାରତୀ ଭାବଗର୍ଭ ବନୟ
ଅଙ୍ଗନା ପ୍ରେମ ହରଷ ହେମ ପନ । ନଭ କାୟ
ଅଳେ ଆନନ୍ଦ ଦ୍ୱିତୀୟା ସ୍ୱନ ସ୍ମିତ କଳ ଉଦୟ
ଅପାଙ୍ଗେ ଗୃହିଁ ସକମ୍ପ ଦେହ ମଣ୍ଡନରେ ଚନ୍ଦ୍ରୟ ॥ ୨୬ ॥

ଅଟେ ସ୍ୱକୀୟା ମୁଗ୍ଧା ଯେ ପ୍ରିୟା ଲକ୍ଷଣ କର ସାର
ଆମ୍ଭେଶ୍ୱରର ଶଠ ବେଶର ଯେ ସୂଖ ଅଳଙ୍କାର
ଅନ୍ତରେ ଭାବ ଅଟେ ଯେ ଭାବ ହର୍ଷ ସଂଗ୍ରହ କାର
ଅତି କୋବିଦ ଯେ ରସବିଦ କଣ୍ଠରେ ହେବ ହାର । ୨୭ ।

ନାୟିକା — ସ୍ୱକୀୟା-ପ୍ରଗଲ୍‌ଭା । ନାୟକ-ଅନୁକୂଳ

ସମ୍ଭୋଗ ଶୃଙ୍ଗାର । ଯୁକ୍ତି ଅଳଂକାର

—ଗୀତ—

ଉଷ୍ଣହାସରେ ପ୍ରିୟା ପାଶରେ କେ ପ୍ରିୟତମା ଲେଖି
ଆଳାପ ରସେ ରତି ରଭସେ ଶୃଙ୍ଗାର କୁତୂହଳ
ଆଲୋକ ଶୁକ ରଜାକୁ ଶୁକ ସେ ବାଣୀ ପାଠ ମୂଳ
ଅଦ୍ଧ ପ୍ରବେଶେ ସନ୍ତ ଭାଷେ ଗୁରୁଜନ ସଂକୁଳ ॥ ୨୮ ॥

ଅନ୍ତ ଆକୁଳ ବ୍ରୀଡ଼ାରେ କୁଳବଶର ଅନୁଭବ
ଆସ୍ୟରେ ଛନ୍ଦୁ ନବେଶେ ପଦ୍ମ ଖଗ ଚାଟଙ୍କ ଜବ
ଅଟେ ସ୍ୱକୀୟା ପ୍ରଗଲ୍‌ଭା ପ୍ରିୟା ଅନୁକୂଳ ସେ ଧବ
ଅଳଙ୍କାର ଯେ ଯୁକ୍ତ ନଷ୍ଟଯେ ଶୃଙ୍ଗାର ଭୋଗ ଭାବ ॥ ୨୯ ॥

ନାୟିକା — ସ୍ୱାଧୀନ ଭର୍ତ୍ତୃକା

ନାୟକ—ଅନୁକୂଳ

ପର୍ଜବାଳଙ୍କାର

— ଗୀତ —

ଅନଙ୍ଗ ବଶେ ପ୍ରଦୋଷ ଶେଷେ ରମଣୀ ଭାବେ ବଶ
ଅତୁରଚ୍ଛନ୍ନ କରଣ ମନ ପୂରେ ମିଳନ୍ତି ଛଶ
ଅଶି କାମର ଶ୍ରେଣୀ ଭ୍ରମର ବେଣୀକି କଳ୍ପ କେଶ
ଅଳତା ଆଦି ପ୍ରେମ ସଂପାଦ ଚରଣରେ କୃତ ବେଶ ॥ ୩୦ ॥

ଅତ୍ତ ବିଶ୍ରମ୍ଭ ବାଣୀ ଆରମ୍ଭ ଅଧରେ ତୋ ପିୟୂଷ
ଅଶନ ବନା ଆନନ ବନା ମଧୁର ଯେତେ ବିଷ
ଅପାଙ୍ଗ ଅନୁଗ୍ରହ ତୋ ମନୁ ନ ଚେଜବୁ ବିଶେଷ
ଅଶା ଅନେକ ଯଥା ସ୍ୱଚକ ତୋୟ ଦେଶ ଦରଷ ॥ ୩୧ ॥

ଅଳ ସଦୃଶ ଚମ୍ପେ ବଶେଷ ତା ମୁଖ ତାମରସ
ଆଶ୍ଳେଷ ପ୍ରେମେ ରତେ ସଂଭ୍ରମେ ଫୁଲ ସାପୁକ ରସ
ଅନେକ ବଧି ସୁରତ ସିଦ୍ଧି ଯେମନ୍ତେ ଇକ୍ଷୁ ରସ
ଅସମାନରେ ଆନ ଆନରେ ରସଦା ସେ ସରସ ॥ ୩୨ ॥

ଆପଣା ଗୁଣ ଚଳପ ଗତ ଆରମ୍ଭେ ବନ୍ଧ ବ୍ୟୂହ
ଆସି ବଚ୍ଛେଦେ କୂକ୍‌କୂଠ ନାଦେ ସେ ସୁଖ ମହାରୂଢ
ଆରମ୍ଭେ ସୁତ ମିସରେ ପ୍ରୀତି ଯେନ ଉଦସ୍ୱ ନୂଢ
ଅତୁର ପତ ପାଂଶୁଂ ଯୁବଣ ଉଠନ୍ତେ ବୋଲେ ରଢ ॥ ୩୩ ॥

ଅନକୂଳ ସେ ପତ ନ ଢପେ ଆନ ଗ୍ରାମାନ୍ତେ ବସ
ଅଟେ ସ୍ୱାଧୀନଭର୍ତ୍ତୃକା ମନ ମୋହ୍ୱମା ପରତନ୍ତ
ଅତ ଗୃଭୂର୍ଷି ବୁଝ ସେ ପର୍ଜ ବାଳକାରଙ୍କୁ ଦକ୍ଷ
ଅନଘ କର ଶ୍ୟାମସୁନ୍ଦର ଦେବକୁ ପଦ୍ମ ଅକ୍ଷ ॥ ୩୪ ॥



— ସପ୍ତମ କୁସୁମ —

# ଛଗ କୁସୁମ ଲେଖନ

( ଦଣ୍ଡକ ବୃତ୍ତେ )

ଆଗତ ପ୍ରାତ
ରଜନୀ ପ୍ରାନ୍ତ
ଅର୍କ ହୋଇଥିଲା ସାଗରେ ପାତ
ଆଣେ ଉଦ୍ଧର
କରକୁ ଧର
ଅନୁରାଗେ ଅଙ୍ଗ ବନ୍ଧ ଅଧର ॥ ୧ ॥

ଟଶ ଷ —
ଅଧିକ କର
ପ୍ରତାପ କର
ଅପ୍ରଷ୍ଟ ତୁଷ ତୁଷ ନାପୁକର
ଆମ୍ଭେଟି କଳ-
ଭୃଙ୍ଗ କାକ ବୋଲି
ଆନନ୍ଦେ ହସେ ସୁମନ ଆବଳୀ ॥ ୨ ॥

ଅମ୍ବୁଜ ନଳ
ଭ୍ରମର ଗୁଞ୍ଜ
ଅଂଶୁ ବଲ୍ଲବସ୍ତୁ ଜାମୁ କା ଫଳ
ଅନଙ୍ଗ ଧାଇଁ
ଦେଲା ଫୁଟାଇ
ଅଧିକେ X ଶକୁ ଧ୍ୱନ ଫୁ ରଇ ॥ ୩ ॥

ଅଧ୍ୱେ ପ୍ରବାସୀ
ଚମକ ଇସି
ଅପହୃତ ନଦ୍ରା ହୋଇଣ ଖିଷି
ଅବଳା ସ୍ତନ-
ଯୁଗ ଈଶାନ
ଅଙ୍କେ ଶରଣ ଗଲ୍ଲ ନୋହ୍ଲେ ସାନ ॥୩॥

ଆଦ୍ଧଚ୍ଛ୍ୟ ହର
ନର ପୂର୍ବେ କର
ଅନ୍ଧ ହିରଣ୍ୟକଶିପୁ ବଦାର୍ଣ୍ଣ
ଆଲେକ ଖେଦ
ନଶାଚର ବୃନ୍ଦ
ଅଶେଷେ ବସ୍ତାରେ କମଳାନନ୍ଦ ॥ ୫ ॥

ଅର୍କ ବାମନ
ବଳ ଛାପନ
ଅଙ୍ଗୁ ବି ବସ୍ତୁ ପ୍ରଦ ବ୍ୟାପି ଶୋଭନ
ଆରମ୍ଭେ ସ୍ମୃତ
ଦ୍ୱିଜ ବଚନ
ଅଧିକ କୋଳାହଳ ଛଳେ ଘୃତ ॥ ୬ ॥

ଅଟେ ସମ୍ରାଟ
ପ୍ରଭାତ ସ୍ଫୁଟ
ଅତେଜ ପ୍ରଦୀପ ସାମାନ୍ୟ ଘଟ
ଆପଦ ବଦ
ଚନ୍ଦ୍ର ବଚ୍ଛେଦ
ଆମପ୍ରବୁ ହର ଦେଲ୍ଲ ପ୍ରମୋଦ ॥ ୭ ॥

ଆତୁର ମତ
କେ ପ୍ରୋଷିତା ସତ
ଅବଧି ଗାର ଗଣିଲ୍ଲ ଝୁଟିତ

ଅଛୁ ବନ୍ଧୁତ
ଚନ୍ଦ୍ର ବର୍ଣ୍ଣିତ
ଅଗାର କେଉଁ ହେବ ପାଞ୍ଚ ଦଉ ।୮।।

ଆନ ରାମାର୍
ପୂଜେ ଗାର
ଆନନ୍ଦ ସଂଭ୍ରମେ ବେଶ ଚପୂର
ଆନ କେ ବାଳ
ସଂଶୟ ଭାଳ
ଆଣି ବଳଭୂକେ ଦଅଇ ବଳ ।। ୯ ।।

ଅଟେ ନୂତନ
କେ ରମା ରତନେ
ଆମ୍ଭେଶ୍ୱର ନ ଶୁଣିଛୁ ବଚନ
ଆରମ୍ଭେ ଗୃହୁଁ
ବଚନ ପିଠୁଁ
ଅରଣ୍ୟ ପ୍ରିୟର ହରଷ ଭୂଠୁଁ ।। ୧୦ ।।

ଅସଇ ଜଟେ
କେ ଜବାଓଷ୍ଠୀ
ଅବସାରେ ଯହିଁ ପଦ୍ମେ ଲେଟି
ଆଣିଛୁ ଲୁଟି
କଷଯ୍ୟ ଦୃଷ୍ଟି
ଅଶେଷେ କୋକନଦ ଶୋଭା ସୃଷ୍ଟି ।।୧୧।।

ଅଳନ୍ଦେ ବସି
କଉଁ ବଦେଶୀ
ଆପଣା ପ୍ରିୟା ଶୋଭା ନେବ ଦଶୀ
ଅଗାଧ ଚାପ

---

୧ । (କ) ଭଣା (?)

ସାଗର ଆପ
ଅନ୍ତେ ବୁଡ଼ାଇ ତା ଛବି କଳାପ ॥ ୧୨ ॥

ଅଭେଠ ଦବା
କେ ସ୍ୱାଧୀନ ଧବା
ଆକଣ୍ଠ ଗୁରୁଜନ ସଂକୁଳ ବା
ଅବଧ୍ୟ ସ୍ଥାନ
ସେ କଜ୍ୱଲ ଧନ
ଆସିବୁ ଦେଖିବ ଚନ୍ଦ୍ରବଦନ ॥ ୧୩ ॥

ଆସ୍ୟ ଚୁମ୍ବଇ
କେ ବ୍ୟାକୁଳ ହୋଇ
ଅନ୍ତିକ ତେଜିବାର ଇଚ୍ଛା ନୁହଇ
ଅବ୍ଧିରେ ଡେଡ଼ି
ନ ମରେ ବୁଡ଼ି
ଅର୍କ ବାଡ଼ବରେ ନ ଯାଇ ପୋଡ଼ି ॥୧୪॥

ଅକୂଳ ମତି
କେ ଉପପତି
ଅଗେ କହେ ସୀମା ରହ ନିବର୍ତ୍ତି
ଆଖ୍ୟାତ ଖ୍ୟାତି
ଜନେ କମ୍ବଦନ୍ତୀ
ଆଗତ ଗତରେ ହେଉଛି ଖ୍ୟାତି ॥ ୧୫ ॥

ଆଳାପେ ଛଳ
ରୋ ଦଶ ମଣ୍ଡଳ
ଅପହୃତ ହରଣରୁଁ ମୈଥିଳୀ
ଅଚଳା ଶିର
ଦ୍ୱେକ ପିବାର
ଆବେଗୀ ସୁଧାକୁମ୍ଭ ପୟୋଧର ॥୧୬॥

ଆଜ କେ ଯନ୍ତ
ପୁରେ ଯୁବଣ୍ଠ
ଅନକୂଳ କର ଯିବା ପାହାନ୍ତ
ଆଦ୍ୟରୁଁ ପ୍ରୀତି
ଯେ ଉପପତି
ଅଶ୍ରୁଧାରେ ସେ ବେନ ଉର ତନ୍ତ ।୧୭।

ଅଳପ ରାତି
ଯାଙ୍କ ଅରାତି
ଅଭେଟରୁଁ ହୃଦ ହୋସ୍ତେ କରନ୍ତି
ଆସି ବିପଦ
ପ୍ରୀତି ବିଚ୍ଛେଦ
ଅଧିକ ସେଥିଁ ନୋହେ ଶିରଚ୍ଛେଦ ।୧୮।

ଅଜର ପଣ-
ସ୍ୱାରବୈ କର
ଆଲୋକ ସେବା ସ୍ୱଂସେ ଅନୁସର
ଅଳି ଚମ୍ପକ
ଆଶା ଅନେକ
ଅକରୁଣାରୁଁ ନ ଛୁଟେଁ ପ୍ରଣକ । ୧୯ ।।

ଅଙ୍ଗନା କନ୍ତ
ଶୂଳେକ ଚକ୍ଷୁଁ
ଅଛନ୍ତି ଶଖାମାନେ ଜଗି ରକ୍ଷ
ଅବକାଶ କି
ଅଛି ଅଳକ
ଅଙ୍ଗ ଭିନ୍ନ ହେବ କଲେ ପ୍ରୀତିକ ।୨୦।।

ଆପଗା ଖର,
କେ ଜଗି ଚତୁର
ଅଙ୍ଗନାରେ କହେ ଦୁଃଖ ବିସ୍ତର

ଆଜ ରଜନୀ
ଗୋ ଜଗି ସଜନୀ
ଅଭେଟରୁଁ ବାଧା ମଦନ ଜନ । ୨୧ ।

ଆନ କେ ସବୁ
ପ୍ରଭାରେ ଉଭୁ
ଅଖିଷ୍ଟ ରମଣୀ ପୁରତେ କବୁ
ଅନୁଶରଣ
ଗୋ ସ୍ୱେଦ୍ଦ କାରଣ
ଅଳତା ଲେଖିବ ରଙ୍ଗ ଚରଣ । ୨୨ ।।

ଅବଳା ଶୁଣି
ଅନୁରଜିଣୀ
ଅପାଙ୍ଗେ ଚୃହୁଁ ସ୍ମିତ ଜାତ ପୁଣି
ଅଣିମା ଆଢ଼ଂ
ସୁଖ ସମ୍ବାଦ
ଅବଚନେ ଦେଇଲେ ସମ୍ବାଦ ।। ୨୩ ।।

ଅନୁସର କେ
କହେ ଆତଙ୍କେ
ଅନଦେ କହଇ ଦୂତ ଅନ୍ତକେ
ଅଭାଗ୍ୟ ସବୁ
ସେ କହେ କ ନାହୁଁ
ଅନୁଗ୍ରହ କବା ବନ୍ଧୁର ନୋହୁ । ୨୪ ।

ଅଟେ ବାମିନୀ
କଉଁ କାମିନୀ
ଅବଚନେ ପୁଚ୍ଛାଇଲେ ଯାମିନୀ

---

୧ । (ଗ) ସମ୍ପଦ

ଅଧୀର ଈଶ
ବୋଲେ ନାଗ୍ରଶ
ଅନୁସରିଣୀ ଦେଖ ପୂର୍ବ ଦିଶ ।। ୧୫ ।।

ଆନ ଉଚିତ
ଘଗ କଞ୍ଚିତ
ଅବଳା ଉଦୟ ନ କରେ ଚଉ
ଅଧିକ ରଟ
ରଟେ କୁକ୍‌କୁଟ
ଅବାଣୀ ବୀଣା ବାଣୀର ପ୍ରକଟ ।୧୬।।

ଅକ୍ଷୀଣ ମାନ
ହେଲ୍ଲ ଅମାନ
ଅଶେଷେ ନଶା କ୍ଷୀଣ ବଦ୍ୟମାନ
ଆସ୍ୟ କମଳ
ନୋହେ ବିମଳ
ଅମ୍ବୁଜ ବିକଶିତ ପରିମଳ ।। ୧୭ ।।

ଅଗାରୁଁ ଜାର
କେ ହଉଁ ବାହାର
ଆସି ଧୃତ ରାଜପୁରୁଷ ଦ୍ୱାର
ଏସି ବିକୋଷ
ଦେଖାନ୍ତେ ତ୍ରାସ
ଅନ୍ତେ ସ୍ମରେ ରମାର ଅନ୍ତବେଶ ।୧୮।

ଅଦ୍ୟାପି ସେଷ୍ଟ
ସ୍ମରଣା ସଷ୍ଟ
ଅମୁକ୍ତ କୁନ୍ତଳ ପୃଷ୍ଠରେ ଶୋଷ୍ଟ
ଅନଙ୍ଗ ଇଷ୍ଟି
କୁନ୍ଦନ ଯଷ୍ଟି
ଅସିତ ଭ୍ରମର ଲୋଳ ପ୍ରେ ଦୃଷ୍ଟି ।୧୯।।

ଅଧିକେ ଝଳ
ଚାଟଙ୍କ ଚଳ
ଆସ୍ଫିତ ଗୁଚ୍ଛ କବ ହେମ ଦୋଳ
ଆସ୍ୟରେ ସ୍ୱେଦ
ବନ୍ଦ ମହିରନ୍ଦ
ଅଳି ନେଇ ମୋହେ ସେ ଅରବିନ୍ଦ ॥୩୦॥

ଅଦ୍ୟାପି ପୁନ
ସ୍ମରଣା ମନ
ଅଟେ ହେମ ରମ୍ଭା! ଶୋଭା ଜଘନ
ଅଚଳୁ ବାଢେ
କମ୍ପେ ନରଢେ
ଆଚରନ୍ତେ ମତ୍ତେ ପୁରୁଷ ରତେ ॥୩୧॥

ଆସେ କେ ସମା
× × ×
ଅଭଙ୍ଗ ବେଶ ଅକ୍ଷତ ସୁଷମା
ଅଭ୍ରୁତ ସ୍ଥାମା
ବେଢ଼ି ସଜମା
ଅଳି ଚୁମ୍ବି ନାହିଁ ଫୁଟ ପଦ୍ମମା ॥୩୨॥

ଆମ୍ରେଶ୍ୱର କ
ଅଟଇ କେକୀ
ଅଥବା ମାନସୀ ହେଲୁ ବଲୋକ
ଅବଳା କଣ୍ଠ
ପ୍ରେମନ୍ତ ନୋହ୍ୱ
ଅନ୍ତ ଚଟକ ଛଟକ ସେହ୍ୱ ॥୩୩॥

ଅଛୁ ବଶେଷ
ଉସନା ଦୋଷ
ଆଲୋକ ଭୁଲା କୋମଳା ନବାସ

ଉତ୍ତ ଅସ୍ଥିର
କଳା ସଂସ୍ପର
ଅନାଦର ଯେଣୁ କନ୍ୟା ବସ୍ପର || ୩୪ ||

ଆସେ କେ ମଧୂ-
ଶସ୍ତନୁ ବଧୂ
ଅସ୍ୱାଦନ୍ତି ପ୍ରିୟ ଅଧର ମଧୁ
ଅନନ୍ତ ପୂରତ
ସେବ୍ୱ ଚଚିତ
ଆମଜ୍ଜନ ହୋଇ ଶ୍ରବ ସରିତ || ୩୫ ||

ଆଲୋକେ ଦଶ
ଦଶଇ ଈଶ
ଅଷ୍ଟି ଦ୍ରୁତମା ଦଶନ୍ତି ବିଶେଷ
ଆସି ବପୁଷୀ
ବେଢ଼ିଲେ ହସି
ଅଦ୍ରି କୁଣ୍ଡଳ ପାଣିରେ ଭାସି || ୩୬ ||

ଅମେ କେ ପୁଂସ
ଶିରେ ବିଶେଷ
ଉଲକ୍ତ ଦେଖି ପରିହାସି ହାସ
ଅରୁଣ ଜାଳ
ସ୍ଥଳ କମଳ
ଆମନ୍ତ୍ରନ ଗନ୍ଧ ଚୂଳ ମଞ୍ଜୁଳ || ୩୭ ||

ଅଙ୍କିତ ରତି
ଚିହ୍ନ ମୂରତି
ଆସନ୍ତି ଯେ ବୃନ୍ଦାବନୁ ଦମ୍ପତି
ଅଭ୍ର ଶରୀର
ବିଦ୍ୟୁ ରୁଚିର
ଆଧ୍ୟାନ ଶ୍ୟାମସୁନ୍ଦର ଦେବର । ୩୮ ।

---

— ଅଷ୍ଟମ କୁସୁମ —

# ସାଢ଼ି ମନାସ ଲେଖନ

( ରାଗ – କେଦାର )

ଅଛୁ ଜଗନ୍ନାଥ ପଡ଼
ଅଧିକ ବସନ୍ତ ଧଡ଼
ଅଛନ୍ତୁ ମଞ୍ଜୁଳ ନକ୍ଷତ୍ର ଭୂଷଣ ଯେ,
ଚନ୍ଦ୍ରୋଦୟ ପଡ଼ ସାଢ଼ ॥ ୦ ॥

ଅମ୍ବର ଯେ ଚାରବଳ
ଅଛି ଦିବ୍ୟ ହଂସାବଳି
ଅଧିକ ସୁନ୍ଦର ସୁନ୍ଦର ମଣି ଯେ,
ହର ଗଜଘରେ ଝୁଲ । । ୦ ।

ଅଛି ରମ୍ୟ ଫୁଲ ପଡ଼
ଅମ୍ବର ଯେ କାହ୍ନୁ ଛଡ଼
ଅବଳା ମୋହର ଭ୍ରମର ମାଳା ଯେ
ସଂଖ୍ୟା ଏକାଦଶ ସାଢ଼ ॥ ୧ ॥

ଅଛି କଳା ବଡ଼ ଧଡ଼
ଅମ୍ବର ନରେନ୍ଦ୍ର ଛଡ଼
ଅଛି କଳାମେଘି ମନ୍ଦାର ଧଡ଼ି[୧] ଯେ
ଚାରବଳ ଫୁଲ ଛଡ଼ ॥ ୦ ॥

ଅମୂଲ୍ୟ ବସନ୍ତ ଧଡ଼
ଅଛି ଦିବ୍ୟ କାହ୍ନୁ ପଡ଼

---

୧ । (ଗ) ଧୋଡ

ଅତୁଳ୍ୟ ଅମୂଲ୍ୟ କଳା ଟେମିର ଯେ,
ନକ୍ଷତ୍ର ଭୂଷଣ ସାଢ଼ି ॥ ୦ ॥

ଅଛୁ ବିଦ୍ୟାଧର ପଢ଼ି
ଅସମ କ୍ଷୀରୋଦ୍ର ପଢ଼ି
ଅମ୍ବର ଚୂଡ଼ର ଭ୍ରମର ମାଳା ଯେ
ଦୋମୁଖୀ ସୁଝୀନ ସାଢ଼ି ॥ ୨ ॥

ଅଛୁ ସାଢ଼ି ସୁନା ଜରି
ଅମୂଲ୍ୟ ରଙ୍ଗ ଟେମିଶ
ଅଛୁ କଳାମେଘି ନକ୍ଷତ୍ର ଭୂଷଣ ଯେ
କ୍ଷୀରୋଦ୍ର ପଢ଼ି ଚୁନେର ॥ ୦ ॥
ଅମୂଲ୍ୟ ଦୋମୁଖୀ ସାଢ଼ି[୧]
ଅଛୁ ବୀରଭଦ୍ର ପଢ଼ି
ଅତୁଳ ଅମ୍ବର ଚନ୍ଦ୍ର ଉଦୟ ଯେ
ଦିବ୍ୟ ରୁପା ଜରି ସାଢ଼ି ॥ ୦ ॥

ଅଛୁ ସାଢ଼ି କାନ୍ତି ପଢ଼ି
ଅଟେ ବିଦ୍ୟାଧର ପଢ଼ି
ଅଧିକ ରମ୍ୟ ରାମଚନ୍ଦ୍ର ପଢ଼ି ଯେ,
ତ୍ରୟୋଦଶ ସଂଖ୍ୟା ସାଢ଼ି ॥ ୩ ॥

ଅମ୍ବର ଯେ ତାରାବଳି
ଅଛୁ ଦିବ୍ୟ ହଂସାବଳି
ଅଦୂଷଣ ବାସ ନକ୍ଷତ୍ର ଭୂଷଣ ଯେ,
ବ୍ରହ୍ମକାମୀ ପଦ୍ମାବଳି ॥ ୦ ॥

ଅମୂଲ୍ୟ ନରେନ୍ଦ୍ର ପଢ଼ି
ଅଛୁ ରୁପା ଜରି ସାଢ଼ି
ଅଧିକ ରମ୍ୟ ରାମଚନ୍ଦ୍ର ପଢ଼ି ଯେ,
ଉଜ୍ଜ୍ୱଳ କ୍ଷୀରୋଦ୍ର ପଢ଼ି ॥ ୦ ॥

---

୧ । (କ) ଏହୁ ଧାଡ଼ି ନାହିଁ

